ଅନ୍ତର୍ଭାରତୀୟ ପୁସ୍ତକମାଳା

# ଗୋପୀନାଥ ମହାନ୍ତିଙ୍କ
# କ୍ଷୁଦ୍ରଗଳ୍ପ

ସଂପାଦକ

ସୀତାକାନ୍ତ ମହାପାତ୍ର



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ସୂଚୀପତ୍ର

# ମୁଖବନ୍ଧ

ପରଜା,ଅମୃତର ସନ୍ତାନ,ଦାନାପାଣି, ମାଟିମଟାଳ ଓ ଲୟବିଲୟର ସ୍ରଷ୍ଟା ଗୋପୀନାଥ ମହାନ୍ତି ଓଡିଆ ଉପନ୍ୟାସ ଜଗତରେ ଏକ ବିରଳ ପ୍ରତିଭା । ଫକୀରମୋହନଙ୍କ ପରେ ଆଧୁନିକ ଓଡିଆ ଉପନ୍ୟାସ ପାଇଁ ସେ ସର୍ବଭାରତୀୟ ସ୍ୱୀକୃତି ଆଣି ଦେଇଛନ୍ତି । କିନ୍ତୁ କେବଳ ଉପନ୍ୟାସ ନୁହେଁ ତାଙ୍କର କ୍ଷୁଦ୍ରଗଳ୍ପ ଆଧୁନିକ ଓଡିଆ ସାହିତ୍ୟର ଅମୂଲ୍ୟ ସଂପଦ । ସେ ପ୍ରାୟ ଦୁଇଶହ ଗଳ୍ପ ଲେଖିଛନ୍ତି । 1951ରେ ତାଙ୍କର ଯୋଡିଏ ଗଳ୍ପ ସଂକଳନ ପ୍ରକାଶିତ ହୋଇଥିଲା । ସେ ଦୁଇଟି ହେଲା 'ଘାସର ଫୁଲ' ଓ 'ପୋଡାକପାଳ' । 1989ରେ ତାଙ୍କର ଦଶମ ଓ ତାଙ୍କ ଜୀବନକାଳ ଭିତରେ ଶେଷ ଗଳ୍ପ ସଂକଳନ 'ସାତପାଞ୍ଚ' ପ୍ରକାଶିତ ହୋଇଥିଲା । 'ସାତପାଞ୍ଚ' ଓ 1979ରେ ପ୍ରକାଶିତ 'ମନର ନିଆଁ' ଛଡା ଅନ୍ୟ ଆଠୋଟି ସଂକଳନ ବଜାରରେ ଲଭ୍ୟ ନୁହେଁ, ତାଙ୍କ ମୃତ୍ୟୁ ପରେ ତାଙ୍କର ଚାରୋଟି ଗଳ୍ପ ସଂକଳନ(ଶରଶଯ୍ୟା, ଛାଇଆଲୁଅ,ତିନିକାଳ ଓ ବଘେଇ) ପ୍ରକାଶିତ ହୋଇଅଛି । ଏ ଚଉଦଗୋଟି ସଂକଳନରେ ଯେତିକି ଗଳ୍ପ ପ୍ରକାଶିତ, ତା' ବାହାରେ ବହି ଆକାରରେ ପ୍ରକାଶିତ ହୋଇ ନଥିବା ପ୍ରାୟ ଆଉ ପଚାଶଟି ଗଳ୍ପ ଅଛି । ସେଥିରୁ ବାରଟି ଗଳ୍ପ କେବଳ ପାଣ୍ଡୁଲିପି ଆକାରରେ ଥିଲା । ନା ବହିରେ, ନା ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ଏବେ ନବରବି ମାସିକ ସାହିତ୍ୟ ପତ୍ରିକାରେ ସେଥିରୁ କେତୋଟି ପ୍ରକାଶିତ ହେଲାଣି ।

ଏହି ପରିପ୍ରେକ୍ଷୀରେ ସାଧାରଣ ପାଠକଙ୍କ ପାଇଁ ତାଙ୍କ ଗଳ୍ପର ଏକ ନିର୍ବାଚିତ ସଂକଳନର ଆବଶ୍ୟକତା ଥିଲା । ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ସେପରି ଗୋଟିଏ ସଂକଳନର ପ୍ରକାଶ ଦାୟିତ୍ୱ ନେବା ଅତ୍ୟନ୍ତ ଆନନ୍ଦର କଥା ।

ଏଇ ସଂକଳନରେ ଗୋପୀନାଥ ମହାନ୍ତିଙ୍କ କ୍ଷୁଦ୍ରଗଳ୍ପମାନଙ୍କ ମଧ୍ୟରୁ ମାତ୍ର ସତରଟି ଗଳ୍ପ ସ୍ଥାନିତ ହୋଇଛି । ଗଳ୍ପ ନିର୍ବାଚନ ବେଳେ ତାଙ୍କର ସୁଦୀର୍ଘ ଗାଳ୍ପିକ ଜୀବନର ବିଭିନ୍ନ ସମୟର ଗଳ୍ପ,ବିଭିନ୍ନ ଶୈଳୀ, ଚରିତ୍ରଚିତ୍ରଣ ଓ ସାମଗ୍ରିକ ଆବେଗ, ଏ ସବୁକୁ ଆଖିଆଗରେ ରଖିବାକୁ ପଡିଛି । ସଂକ୍ଷେପରେ କହିଲେ, ଗୋପୀନାଥଙ୍କ ଗଳ୍ପ-ଜଗତର ବିବିଧ ବୈଚିତ୍ର୍ୟକୁ ପାଠକଙ୍କ ଆଗରେ ଥୋଇବାପାଇଁ ପ୍ରଚେଷ୍ଟା ହୋଇଛି । ଗୋପୀନାଥଙ୍କ ସବୁ ଗଳ୍ପର ଚରିତ୍ର କେହି ନା କେହି ନିର୍ଦ୍ଦିଷ୍ଟ ରକ୍ତମାଂସର ମଣିଷ ଯାହାକୁ ସେ ଭେଟିଛନ୍ତି, ନିରେଖିଛନ୍ତି, ଯାହାର ଜୀବନଚର୍ଯ୍ୟାକୁ ବୁଝିଛନ୍ତି । ସବୁ ଗଳ୍ପ କୌଣସି ନା କୌଣସି ବାସ୍ତବ ଅନୁଭବ ଓ ଘଟଣା ଉପରେ ଆଧାରିତ । ବହୁଦିନ ତଳେ ଗୋଟିଏ ସାକ୍ଷାତ୍କାରରେ ସେ ଏହିକଥା କହିଥିଲେ ଯେ, ତାଙ୍କ ଗଳ୍ପର ସବୁ କଳ୍ପନା ବିଳାସ ପଛରେ ଏକ ବାସ୍ତବ ପୃଥିବୀ ସଦା-ବର୍ତ୍ତମାନ । ଏକଥା ମଧ୍ୟ ଅନେକତ୍ର ଲକ୍ଷଣୀୟ ଯେ, ସେ ଚରିତ୍ର ହୁଏତ ନିଜେ ଲେଖକ । ନିଜ ବ୍ୟକ୍ତିତ୍ୱର କୌଣସି ଏକ ବିଶେଷ ଅଂଶ, ଅଭିରୁଚି ବା ଆଭିମୁଖ୍ୟ ଗଳ୍ପର ଚରିତ୍ର ମାଧ୍ୟମରେ ପ୍ରକାଶିତ । ଯେମିତି 'ସମାଧାନ' ଗଳ୍ପର ଦଧିବାମନ । ପଚସ୍ତରି ଟଙ୍କା ଦରମାରେ

ପରିବାରଟିଏ ମହରଗ ଯୁଗରେ ଚଳୋଉଥିବା ଦଧିବାମନ ବଡସାହେବଙ୍କ ଠୁଁ କୈଫିୟତ୍ ପରେ କୈଫିୟତ୍ କାଗଜ ପାଇ ମ୍ରିୟମାଣ । କୈଫିୟତ୍ ମଗା ଯାଇଥିବା କାଗଜଟି ତାଙ୍କ ଛେଳି ବେଟ୍ରୁ ଚଳୁ କରିଦେଲା ପରେ ଦଧିବାମନ ବେଟ୍ରୁକୁ ଅଫିସ୍ ନେଇ ନିର୍ବିଘ୍ନରେ ପଡିରହିଥିବା ଫାଇଲ୍‌ର କାଗଜ ଖାଇବାକୁ ସୁଯୋଗ ଦେଲେ । ଏପରିକି ''ଜରୁରୀ ମାର୍କା'' ସାହେବଙ୍କ ଟେବୁଲର ଫାଇଲ୍ ବି । ଦଧିବାମନ ବେଟ୍ରୁର ଏଇ ତ୍ୱରାନ୍ୱିତ 'ଡିସ୍‌ପୋଜାଲ' କାର୍ଯ୍ୟ ଓ ଭୋଜିଦିନର ଉତ୍ସବ ଦେଖି ମନେମନେ ନ ହସି ରହିପାରନ୍ତି ନାହିଁ । ଦୀର୍ଘକାଳ ସରକାରୀ ଦପ୍ତରରେ କାମକରି ବେଳେବେଳେ ହୁଏତ ଲେଖକଙ୍କୁ ଲାଗିଥିବ ଏହି ଟନ୍ ଟନ୍ କାଗଜଲେଖାର କି ମୂଲ୍ୟ, ଯା ପଛରେ କି ଅନୁଭବ, କି କରୁଣା, କି ଉନ୍ନୟନ ବା କି ମାନବିକତା ବୋଧ ଅଛି ! ଏହା ନୁହେଁ ଯେ ସେ ଫାଇଲ୍ ଓ କାଗଜର ସୁଦୀର୍ଘ ପରମ୍ପରା କଥା ଅନବଗତ ଥିଲେ । କିନ୍ତୁ ତା'ର ମୌଳିକ ନିରର୍ଥକତା ଅନେକ ସମୟରେ ଦରଦୀ ମଣିଷଟିକୁ ନିଶ୍ଚୟ କାଟିଥିବ ।

ସେମିତି ପିମ୍ପୁଡି ଗପରେ ନୂଆ ଓ ଅଳ୍ପ ବୟସର ଅଫିସର୍ ରମେଶ । କନ୍ଧ ଅଞ୍ଚଳରେ ହାଟରୁ ସୀମାନ୍ତ ବାଟେ ଓଡିଶାର ଚାଉଳ ବେନିୟମ ଚାଲାଣ ବନ୍ଦ କରିବାକୁ ସେ ସଦଳବଳେ ଆସିଛନ୍ତି । ବାଟରେ କନ୍ଧ ଜୀବନ, ଗାଁ, ମଣିଷଙ୍କ ସହ କିଛି ପରିମାଣରେ ଆତ୍ମିକ ପରିଚୟ । ସେଇ ସବୁ ଗାଁ ଓ ଦୁଃଖୀ ମଣିଷମାନଙ୍କର ଆତିଥେୟତା, ସରଳତା ଓ ନିରୀହତା ସେ ଲକ୍ଷ୍ୟ କରିଛନ୍ତି । ସେ ବି ଲକ୍ଷ୍ୟ କରିଛନ୍ତି ଚରମ ଦାରିଦ୍ର୍ୟର ସ୍ୱରୂପ, ଯାହାର ଚିତ୍ରସ୍ୱରୂପ ସେଇ ଦୁଃଖୀ ଆଦିବାସୀମାନେ ମୁଣ୍ଡବୋଝରେ ଅଳ୍ପ କିଛି ଚାଉଳ ଚୋରା ଚାଲାଣ କରି ମହାଜନମାନଙ୍କଠୁଁ ଦୁଇପଇସା ରୋଜଗାର କରିଥାନ୍ତି । ଏ ସବୁ ଯେମିତି ତାଙ୍କ ମନକୁ ଉଦାସୀ ଆଲୋଡନରେ ଭରିଦେଇଛି, ଯେଉଁ ପରିପ୍ରେକ୍ଷୀରେ ନିଜ ପ୍ରଦେଶ, ନିଜ ଅଞ୍ଚଳରୁ ଚୋରା ଚାଲାଣ ଧରିବାରେ ଆଉ ତାଙ୍କର ଆଗ୍ରହ ରହିପାରିନି । ବୃହତ୍ତର ଏକ ସତ୍ୟ ଓ ମାର୍ମିକ ଅନୁଭବର ସାମ୍ନା କଲାପରେ ଅଫିସର୍-ମଣିଷଟିର ଭିତରେ ଆଉ ଏକ ସତ୍ତା ଆପଣାକୁ ଜାହିର କରିଛି । ସବୁ ମଣିଷ ଦୃଶିଛନ୍ତି ଯେମିତି ପିମ୍ପୁଡି । ଚୋର ଧରିବା ମୁହୂର୍ତ୍ତରେ ତେଣୁ ସେ ସେଇ ଦୁଃଖୀଙ୍କୁ ଛାଡିଦେଇଛି । ''ରମେଶ ଠିଆ ହୋଇରହିଲା, ତା'ର ଚେତନା ଆଗରେ ଇତିହାସ ନ ଥିଲା, କପିଳେନ୍ଦ୍ର ନାହାନ୍ତି, ପୁରୁଷୋତ୍ତମ ନାହାନ୍ତି, କୋଣାରକ ନାହିଁ, ଦେଶ ଓ ଜାତିର ପିଞ୍ଜର ଗଢା ମଣିଷର ନିର୍ଦ୍ଦିଷ୍ଟ ରୂପ ନାହିଁ, ଇତିହାସର ଅର୍ଥନାହିଁ, କିଛି ନାହିଁ, ଚାରିଆଡ଼େ ଖାଲି ପିମ୍ପୁଡ଼ି, ପିମ୍ପୁଡ଼ି, ଭୋକିଲା ପିମ୍ପୁଡ଼ି ବଞ୍ଚିବା ପାଇଁ ଆଧାର ବୋହି ନେଉଛନ୍ତି । ଆଉ ପିମ୍ପୁଡ଼ି ଧାର ଏକାଠି ହୋଇ ମନ୍ଦା ବାନ୍ଧୁଛି ନୂଆ ଅଭିଯାନ ପାଇଁ - ସେ ବଞ୍ଚିବାକୁ ଚାହେଁ ।''

ରମେଶ ଦେଖିପାରିଛି- ମଣିଷ ଆସିଛନ୍ତି, ମଣିଷ ଯାଇଛନ୍ତି; ଯଦିଚ ଦେଖିଲେ ଲାଗୁଛି ଏ ଅନ୍ଧାରି ବଣ ସବୁଦିନ ଏହିପରି ଅନ୍ଧାରୁଆ । ସାମାଜିକତା, ତାତ୍କାଳିକ ନିର୍ଦ୍ଦିଷ୍ଟ ଦାୟିତ୍ୱ ବାହାରେ ଏକ ବୃହତ୍ତର ସତ୍ୟକୁ ଭେଟିଥିବା ରମେଶ ନିଜେ ଗୋପୀନାଥ । ନିଜ ସରକାରୀ ଚାକିରୀ ଜୀବନରେ ସେ ଅନେକବାର ନିଶ୍ଚୟ ଏଇ ପରସ୍ପର ବିରୋଧୀ ଦ୍ୱୈତ ଅନୁଭବର ମୁହାମୁହିଁ ହୋଇଥିବେ- ଯେଉଁଠି ମାନବିକତା ଓ କର୍ମଚାରୀର ଦାୟିତ୍ୱ ଦୁଇପଟେ ଭିନ୍ନଭିନ୍ନ ଦିଗରେ ଟାଣି ଧରିଥିବ, କ୍ଳାନ୍ତି ଆଣିଦେଇଥିବ ।

ହୁଏତ ଗୋପୀନାଥଙ୍କ ସାଧାରଣ ଦୃଷ୍ଟିରେ''ଅସଫଳ'' ସରକାରୀ- କର୍ମଚାରୀ କ୍ୟାରିଅରକୁ ତାଙ୍କ ଉପରିକ ଓ ସହକର୍ମୀମାନେ ସେଇପରି ଅନେଇଥିବେ, ବିଚାରିଥିବେ, ଯେମିତି ରମେଶର ସହକର୍ମୀ ଓ ଚପରାସୀମାନେ ବିଚାରିଛନ୍ତି । ''ଏଇଟା ନୁହେଁ ଅଧିକାରୀ, ପ୍ରକୃତ ଅଧିକାରୀ ବାଘ ପରି ମଣିଷ । ଇଏ ସଂସ୍କାରକୁ ଚିହ୍ନେ ନାହିଁ, ନରମ ପୁଚ୍ ପୁଚ୍ ମନ ।'' ଅଧିକାରୀ ଗୋପୀନାଥ ଓ ସୃଜନଶିଳ୍ପୀ- ଏ ଦୁହିଁଙ୍କ ମଧରେ ଦ୍ୱନ୍ଦ ନିଶ୍ଚୟ ଲାଗିରହିଥିବ । ସେଇ ଦ୍ୱନ୍ଦ ଓ ବିରୋଧାଭାସର

ଆଉ ଏକ ନିଖୁଣ ଚିତ୍ର ଗଳ୍ପ 'ଟଡ଼ପା'ରେ । ଆଦିବାସୀ କନ୍ଧ ଅଞ୍ଚଳର ଉନ୍ନୟନ ପାଇଁ ସେଇ ଅଞ୍ଚଳର ପାହାଡ ଜଙ୍ଗଲରେ ବୁଲୁଥିବା ଅଧିକାରୀ, ନୃତତ୍ୱବିଦ୍‌ଙ୍କ ସହ କନ୍ଧ ଯୁବକ ଟଡ୍‌ପାର ଆକସ୍ମିକ ସାକ୍ଷାତ ଅଶିଣ ମାସ ରାତିରେ । ଦୃଷ୍ଟିଭଂଗୀ, ଜୀବନ-ଚର୍ଯ୍ୟା, ମନସ୍ତତ୍ତ୍ୱ- ସବୁ ସ୍ତରରେ ଟଡ୍‌ପା ଓ ଉନ୍ନୟନ ଅଧିକାରୀଙ୍କ ଭିତରେ ଆକାଶ-ପାତାଳ ପାର୍ଥକ୍ୟ । ଟଡ଼ପାର ନାରୀ (ଧାଙ୍ଗଡା, ମାଆ ଧରତନୀ) ପ୍ରତି ଦୃଷ୍ଟିଭଙ୍ଗୀ, ପ୍ରକୃତି (ଜଙ୍ଗଲ, ପାହାଡ, ବଣଜନ୍ତୁ) ପ୍ରତି ଦୃଷ୍ଟିଭଙ୍ଗୀ, ନିଜେ ଦେଇଥିବା ପ୍ରତିଶ୍ରୁତି ପ୍ରତି ଦୃଷ୍ଟିଭଙ୍ଗୀ, ସରଳ ଅମାୟିକ ଜୀବନର ଝଲକ ଓ ତା ସାମ୍ନାରେ ଧୂସର ଧାରଣା ସମୁଚ୍ଚୟର ଆପେକ୍ଷିକ ଅର୍ଥହୀନତା- ଏସବୁକୁ ନେଇ ଟଡ୍‌ପା ଏକ ଅସାଧାରଣ ଗଳ୍ପ । ଏ ଗଳ୍ପରେ ଔପନ୍ୟାସିକ ଗୋପୀନାଥ ଆଦିବାସୀ ଗାଁରେ । କନ୍ଧ ଘରେ ଅତିଥି ହୋଇ କନ୍ଧ ସମାଜର ''ଜଣେ'' ହୋଇଯାଇଥିବା ଗୋପୀନାଥଙ୍କର ସାକ୍ଷାତକାର ଅଧିକାରୀ ଗୋପୀନାଥଙ୍କ ସହ । ଟଡ଼ପାର ଭାଷା ତାଙ୍କ ନିଜ ହୃଦୟର କଥା । ସବୁ ସରଳତା, ସକଳ ନିରୀହତା ପଛରେ ଏକ ଅଦ୍‌ଭୂତ ଅଦମନୀୟ ବ୍ୟକ୍ତି ଥାଏ, ଯାହାର ଜୀବନ ଏ ପୃଥିବୀକୁ ଫଳବତୀ କରେ । ଟଡ଼ପା କଥା ପଛରେ ସେଇ ବ୍ୟକ୍ତିର ଆଭାସ ଗଳ୍ପରେ ସୁସ୍ପଷ୍ଟ । ଯେଉଁ ବ୍ୟକ୍ତିର ଆବାହନ କରିଆସିଛି ପ୍ରାଚୀନ ମଣିଷ, ଆଦିବାସୀ । ଆଜଟେକ ମାୟା ସମାଜରେ ରାଗିଯାଇଥିବା ମଣିଷକୁ ଚାଷକାମରେ ମାଟି ଛୁଇଁବା ମନା ଥିଲା । ସେ ଯେ ମାଟିର ଉର୍ବରତାକୁ ଧ୍ୱଂସ କରିଦେବ ! ମଞ୍ଜି ବୁଣିଲାବେଳେ ସେମାନେ ବିଲ ଦାଢରେ କୁନି ପିଲାଙ୍କୁ ହସ ଖେଳରେ ମାତିବା ପାଇଁ ସାଙ୍ଗରେ ନେଇ ଯାଉଥିଲେ । ତାଙ୍କରି ହସ ଓ କୌତୁକ ଫଳରେ ଅଧିକରୁ ଅଧିକ ଫସଲ ଫଳିବ, ଏଇଆ ଥିଲା ବିଶ୍ୱାସ । ଆଉ ଟଡ୍‌ପା ପାହାଡ଼ ଜଙ୍ଗଲ ଡେଇଁ, ଏକୁଟିଆ ଯାଉଛି ଧାଙ୍ଗଡ଼ୀ ଦେଣ୍ଟକୁ । ଦୂର ଗାଁ ପେନୁବାଲିକୁ ଓ ଧାଙ୍ଗଡ଼ୀ କୋଳରେ ଧାଙ୍ଗଡ଼ା ବସେ ତାଙ୍କ ସମାଜରେ, କାରଣ ମା' କୋଳରେ ତ ପିଲା ବସିବା କଥା, ଏମିତିକି ମୃତ୍ୟୁ ପରେ ଧରତନୀ ମା' କୋଳରେ ପିଲା ବିଶ୍ରାମ ନେବା କଥା । ଏସବୁକୁ ବୁଝିବା ଆମ ସମାଜରେ ସମ୍ଭବ ତ ? ଔପନ୍ୟାସିକଙ୍କ ଚରିତ୍ର ଟଡ଼୍‌ପା ତେଣୁ ଏକ ଚେତାବନୀ - ଏକ ଆହ୍ୱାନ, ଆମ ପାଇଁ । ଜୀବନର ସ୍ମୃତି ଓ ବିସ୍ମୃତିର ଲୁଚକାଳି ଖେଳକୁ ନେଇ ଗୋପୀନାଥ ଅନେକ ଅନବଦ୍ୟ ଗଳ୍ପ ସୃଷ୍ଟି କରିଛନ୍ତି । ଏହି ସଙ୍କଳନରେ 'ନାଁ ମନେ ନାହିଁ' ଓ 'ବୁଡ଼ି' ସେଥିରୁ ଯୋଡ଼ିଏ । ସ୍ମୃତି ଜୀବନର ଏକ ଅଲିଖିତ ଇତିହାସ ଯାହା ହୃଦୟ ଓ ମନକୁ ସବୁବେଳେ ଛୁଉଁଥାଏ । ଗଲାକାଲିର ଇତିହାସ, ଆଜି ଓ ଆସନ୍ତା କାଲିର ସ୍ୱପ୍ନକୁ ଯୋଡୁଥାଏ । ସେଇ ପରିପ୍ରେକ୍ଷୀରେ ଯେତେବେଳେ ଚରିତ୍ର ନିଜେ ବୁଝିପାରେ ତା'ର ସ୍ମୃତି ନିଖୁଣ ଭାବରେ କାମ କରୁନାହିଁ, ନାନା ବିଭ୍ରମ ଘଟାଉଛି, ସେ ହତୋତ୍ସାହ ହୋଇପଡ଼େ । ଏପରିକି ଜୀବନ ପ୍ରତି ବୀତସ୍ପୃହ ହୋଇପଡ଼େ । ତା'ର ସକଳ ସରାଗ, ସ୍ନେହ, ଉତ୍ସାହ, ଉଦ୍ଦୀପନା ମଉଳି ଆସେ । 'ନାଁ ମନେ ନାହିଁ' ଗଳ୍ପର ନାୟକଙ୍କର ସେଇଆ ଘଟିଛି । ସେ ଯେତେ ଅଣ୍ଡାଳିଲେ ମଧ ବିସ୍ମୃତି ଗର୍ଭରେ ମିଶିଯାଉଥିବା ନାଁ, ଘଟଣା, ସମୟକୁ ଆଉ ଧରି ରଖିପାରୁ ନାହାନ୍ତି । ସେ ଅନୁଭବ ଅତଡ଼ା ଦାଢ଼ରେ ନଈକୂଳରେ ଛିଡ଼ା ହୋଇ ପାଣିର ଭଉଁରିକୁ ଅନାଇବା ପରି ନିଶ୍ଚୟ ହୋଇଥିବ । ତାଠୁଁ ଆଉ କେଇପାଦ ଆଗେଇ ଗଲେ ବିସ୍ମୃତିର ଲହଡ଼ିରେ ସତ୍ତା ଓ ଚେତନା ବୁଡ଼ିଯାଏ । ସବୁ ଅନ୍ଧାରି ମୂଳକ ହୋଇଯାଏ । 'ବୁଡ଼ି' ଅତି ଛୋଟ ଗପଟିଏ । କିନ୍ତୁ ଡ଼ଙ୍ଗା ଓ ଲହରୀକୁ ପ୍ରତୀକ ଭାବେ ନେଇ ନାୟକଙ୍କ ବିସ୍ମୃତି- ପାରାବାରରେ ନିମଜ୍ଜନର ଏକ ଶକ୍ତିଶାଳୀ ଚିତ୍ର ଆଙ୍କିଛନ୍ତି ଗୋପୀନାଥ । 'ନାଁ ମନେ ନାହିଁ' ଗଳ୍ପରେ ଭ୍ରାନ୍ତି ବେଳେବେଳେ ପାଠକପାଇଁ ହାସ୍ୟୋଦ୍ଦୀପକ- କିନ୍ତୁ 'ବୁଡ଼ି' ଗଳ୍ପରେ ପାଠକ ନିଶ୍ଚୁପ ହୋଇ ସେଇ ଦୁର୍ଘଟଣାର ସାକ୍ଷୀ ହୁଏ । ଏ ଦୁଇଟି ଗଳ୍ପରେ ସମୟର ପ୍ରବାହ, ଘଟଣାର ସ୍ରୋତ ଓ ବିସ୍ମୃତିର ତାଡ଼ନାରେ ହସ, ଅସ୍ୱସ୍ତି ଓ ଦୁଃଖ ପାଠକକୁ ଯୁଗପଦ୍ ଅଭିଭୂତ କରେ । ହସ ଓ ଦୁଃଖ

ଏକାଠି ପେଣ୍ଟି ହୋଇଯାଆନ୍ତି । ଦୁଇଟିଯାକ ଗଳ୍ପ ବ୍ୟକ୍ତି ମନସ୍ତତ୍ତ୍ୱର ଗଭୀର ଇଲାକାର ସୁନ୍ଦର ଅନୁଧ୍ୟାନ ।

କୁହାଯାଏ, ସବୁ ସୃଜନଶୀଳ ଶିଳ୍ପୀ ସଦାକାଳ ଇତିହାସ ବିରୋଧୀ । ସୁପ୍ରସିଦ୍ଧ ଫରାସୀ କବି ରେନେ ସାର୍ କହିଥିଲେ, "ଫସଲ ପାଇଁ ଦାରୁଣ କାମନା ଓ ଇତିହାସ ପ୍ରତି ଔଦାସୀନ୍ୟ ମୋ ଧନୁର ଦୁଇଟି ଗୁଣ ।" 'ଦୁଇ ବୀର' ଗଳ୍ପରେ ଗୁମ୍ପାସ୍ୱାମୀ ଓ ଜଗୁ ପରିଡ଼ା କେଡ଼େ ଅନ୍ତରଙ୍ଗ ବନ୍ଧୁ- କିନ୍ତୁ ଆଜିର ପ୍ରାତ୍ୟହିକତାକୁ ଛାଡ଼ି ଯେତେବେଳେ ଦୁହେଁ ଇତିହାସର ଚାଟୁକାର ହୋଇଯାଆନ୍ତି, ଯେତେବେଳେ ପ୍ରତାପରୁଦ୍ର ଓ କୃଷ୍ଣଦେବ ରାଏ ତାଙ୍କ ପାଇଁ ହୋଇଯାଆନ୍ତି ସ୍ୱାଭିମାନର ମୂର୍ତ୍ତିମନ୍ତ ପ୍ରତୀକ । ସେମାନଙ୍କୁ ବର୍ତ୍ତମାନର ବାସ୍ତବତାକୁ ଫେରାଇ ଆଣେ ଗୁମ୍ପାସ୍ୱାମୀର ସ୍ତ୍ରୀ ଓ ତା'ର ଭୂମିସଂଲଗ୍ନ ଉଚ୍ଚାରଣ ଓ ଆବେଗ । ତା' ପାଇଁ ଏସବୁ କାହାଣୀ ବିଷୟରେ 'ଯୋଗୀ ଗୀତ ବୋଲନ୍ତି' ଗୁମ୍ପାସ୍ୱାମୀର ଉତ୍ତର- 'ଏ ଇତିହାସ' ପ୍ରତି ସ୍ତ୍ରୀର ପ୍ରତ୍ୟୁତ୍ତର; "ରଖ ତମର ଇତିହାସ । ମହାଭାରତ ପଢ଼ିଲେ ସେଦିନ ଘରେ କଳିଲାଗେ ବୋଲି ଲୋକେ କହନ୍ତି । ତୁମ କୃଷ୍ଣଦେବ ରାଏଲୁ ଥିଲେ ତୁମକୁ ସେ ମନ୍ତ୍ରୀ କରିଥାନ୍ତେ ଭାବିଚ, ନାଁ' ପ୍ରତାପରୁଦ୍ର ପୁରୁଷୋତ୍ତମ ଥିଲେ ଏ ଭଦ୍ରଲୋକ ହୋଇଥାନ୍ତେ ତାଙ୍କ ଅମାତ୍ୟ । ଗରିବ ଲୋକେ ସେତେବେଳେ ବି ପେଟ ପାଇଁ କାମ କରୁଥିଲେ... ତୁମ କୃଷ୍ଣଦେବ ରାଏ, ପ୍ରତାପରୁଦ୍ରଙ୍କ ଯୁଦ୍ଧର ପାହାର ସେଇ ଗରିବଙ୍କ ମୁଣ୍ଡ ଉପରେ, ଘର ଉପରେ କି ହାଣ୍ଡି ଉପରେ ବି ପଡ଼ିଥିବ, ମୁଣ୍ଡ କୁଢ଼ ଉପରେ ତୋଳା ହୋଇଥିବ ବିଜୟ ସ୍ତମ୍ଭ ।" ଇତିହାସର ଅର୍ଥହୀନ ମଶାଣିରୁ ସେମାନେ ଫେରି ଆସିଛନ୍ତି ସ୍ନେହ ଓ ଆବେଗର ଆଜିକୁ, ମୁହୂର୍ତ୍ତକୁ, ସହଜ ଆବେଗକୁ । ଜଗୁ ପରିଡ଼ା ନିମନ୍ତ୍ରଣ କରେ ଗୁମ୍ପାସ୍ୱାମୀକୁ, "କାଲି ସଞ୍ଜରେ ସପରିବାର ଆମ ଘରେ ।"

ଇତିହାସ ସେମିତି ପାଶୋରି ପକାଏ ଶଗଡ଼ିଆ ସାହିର ଜଗା ପଲେଇ ପହିଲ୍‌ମାନକୁ । ଯେତେବେଳ ଯାଏ ସେ ନିଜ ଉଦ୍ୟମରେ କୁସ୍ତି କରୁଥିଲା, ଜିତୁଥିଲା, ସେତେବେଳ ଯାଏ ତା'ର ଜୟ ଜୟକାର, ଉଦ୍‌ଘୋଷଣ ଯେ ସେ ଓଡ଼ିଶାର ଗୌରବ । କିନ୍ତୁ ଗଡ଼ି ଚାଲିଥିବା ବୟସ, ଉପଯୁକ୍ତ ଖାଦ୍ୟର ଅଭାବ ଯୋଗୁଁ ଯୋଉଦିନ ସେ କୁସ୍ତିରେ ହାରିଯାଏ, ଇତିହାସ ତାକୁ ଅଳିଆ ଗଦାକୁ ଏତେ ଟିକିଏ ବି ମନଉଣା ନକରି, ଦୀର୍ଘଶ୍ୱାସ ନପକେଇ ଉଦାସୀନ ଭାବରେ ଫିଙ୍ଗିଦିଏ ।

ମଣିଷ ଜୀବନରେ ସ୍ନେହର ଏକ ବିଶେଷ ସ୍ଥାନ ଥାଏ । ବସ୍ତୁତଃ ବିନା ସ୍ନେହରେ ବଞ୍ଚିବା ବେଳେବେଳେ ଅସମ୍ଭବ ମନେହୁଏ । ସମୟର ପ୍ରବାହ, ସୁଖ ଦୁଃଖର, ହସକାନ୍ଦର ସୁଦୀର୍ଘ ଇତିହାସ- ଏ ସବୁକୁ ସହିବାକୁ ସ୍ନେହ ଶକ୍ତିଦିଏ, ଆଶ୍ୱାସନା ଦିଏ, ଧୈର୍ଯ୍ୟ ଦିଏ । କିନ୍ତୁ ବେଳ ଆସେ, ଜୈବିକ ସ୍ଥିତି ଓ ତା'ର ପ୍ରାତ୍ୟହିକ ସାଧାରଣ ଦାବି ସାମ୍ନାରେ ସ୍ନେହ ନିଷ୍ପ୍ରଭ ହୋଇଯାଏ । 'ଶରଶଯ୍ୟା' ଗଳ୍ପର ନାୟିକା ସତେଯେମିତି ଭୀଷ୍ମ ପିତାମହଙ୍କ ପରି ଜୀବନର ଶରଶଯ୍ୟାରେ । ଖାଲି ସୂର୍ଯ୍ୟଙ୍କ ଦକ୍ଷିଣାୟନ, ଅବଶ୍ୟମ୍ଭାବୀ ପାଇଁ ଅପେକ୍ଷା, ଯିଏ ସବୁ ଦୁଃଖ କ୍ଳେଶ, ସକଳ ଶାରୀରିକ ଓ ମାନସିକ ଯନ୍ତ୍ରଣାରୁ ଦେବ ମୁକ୍ତି । ମୁହଁରେ ହସ ଫୁଟାଇ କଥା କହିବାକୁ ଚେଷ୍ଟା କରନ୍ତି ସ୍ୱାମୀ । କିନ୍ତୁ ରକ୍ତ ମାଂସର ଆହ୍ୱାନ ମଧ୍ୟ ସେ ଶୁଣୁଥାନ୍ତି । ସେଥିପ୍ରତି ଯଥୋଚିତ ଧ୍ୟାନ ବି ଦିଅନ୍ତି । ସେ ଧ୍ୟାନଦେବା ଶଯ୍ୟାଶାୟିନୀ କମଳାର ଅନ୍ତଃଚକ୍ଷୁରୁ ଦୂରେଇ ରହି ପାରେନି । ସ୍ୱାମୀଙ୍କ ଦେହର ଅତର ବାସ୍ନା ପରି, ଅତୀତର ଅନ୍ତରଙ୍ଗ ସ୍ମୃତି ପରି ହୃଦୟ ଭିତରେ କ'ଣ କିଛି ଆନ୍ଦୋଳିତ ହୁଏ । ସବୁ ସରାଗ ଭିତରେ ଭିତରେ ଜଳିପୋଡ଼ି ମରିଯାଏ । ଶରଶଯ୍ୟାର ଯନ୍ତ୍ରଣା ହିଁ ଅବଶେଷରେ ହୁଏ ଏକାନ୍ତ ସତ୍ୟ ଯାହାଠୁଁ ମୃତ୍ୟୁ ମୁକ୍ତି ଦିଏ । ସ୍ନେହ ଯେତେ ଶକ୍ତିଶାଳୀ ହେଲେ ବି ବ୍ୟକ୍ତିର ନିର୍ଜନତା ଓ କ୍ଳେଶଠୁଁ କେବେ ବ୍ୟକ୍ତିକୁ ବଞ୍ଚେଇ ପାରେନା । ଏହି ଦାରୁଣ ସତ୍ୟର ଏକ ଚମତ୍କାର ରୂପାୟନ 'ଶରଶଯ୍ୟା' ।

ନିଜର ସୁଦୀର୍ଘ ଚାକିରୀ ଜୀବନରେ ଗୋପୀନାଥ ଅନେକ କର୍ମଚାରୀ ବନ୍ଧୁଙ୍କର ଘର ଖୋଜା ଦୁଃଖ ନିଜେ ଦେଖିଥିବେ । ପିଲାଛୁଆଙ୍କୁ ଧରି ଦୂର ଜାଗାକୁ ବଦଳି ଏବଂ କେଉଁଠି ରହିବାର ଅନିଶ୍ଚୟତା ଅନେକ ସରକାରୀ କର୍ମଚାରୀଙ୍କର ଆପଣାର ଅନୁଭବ । ପିଲେ ସ୍କୁଲରେ ପଢୁଥିବେ, ବଦଳି ହୋଇଥିବା ଜାଗାରେ ହୁଏତ ଠିକଣା ସ୍କୁଲ ନଥିବ, ବୁଢ଼ା ବାପା ମାଆ କି ନିଜ ସ୍ତ୍ରୀ ବେମାରିଆ ହୋଇଥିବେ, ଡ଼ାକ୍ତରଖାନା ନଥିବ । ତା' ସାଙ୍ଗକୁ ଯଦି କେଉଁଠି ମୁଣ୍ଡ ଗୁଞ୍ଜିବ ତା'ର ବ୍ୟବସ୍ଥା ନଥାଏ ତେବେ ଡ଼ାକ୍ତରଖାନା ବାରଣ୍ଡାରେ ସାରା ପରିବାର ସ୍ଥାନିତ ହୋଇ ନବଜାତକଟିକୁ ସ୍ୱାଗତ କରିବେ । 'ଘର' ଗଳ୍ପଟି ଏଇ ବାସ୍ତବତାର ଏକ ନିଖୁଣ ଚିତ୍ର ।

ବୁଢ଼ା ବୟସରେ ବେଳେବେଳେ ଅନେକ ପିଲାଳିଆମି, ଛୋଟ ଦୁଷ୍ଟାମି ସାମ୍ନାକୁ ଆସେ । ଯେମିତି 'ଚକ୍ରପାଣି' ଗଳ୍ପରେ ଚକ୍ରପାଣି ନାତି ଟୋକାଠୁଁ ବିସ୍କୁଟ ଖାଇବାଠୁଁ ଧୀରେ ଧୀରେ ଆଗେଇ ଯାଇଛନ୍ତି ଚିକେନ୍ ତରକାରୀ ଯାଏ । ଏକଥା ଗାଁର, ପରିବାରର ଲୋକେ ସହଜରେ ବୁଝିପାରି ନାହାନ୍ତି । ଭାବିଛନ୍ତି, ବୋଧହୁଏ ଏଇଥିପାଇଁ କୁହାଯାଏ, ମଲା ଆଗରୁ ଲୋକ ପ୍ରକୃତିଛଡ଼ା ହୋଇଯାଏ, ଯାହା ଜୀବନରେ କରିନି, ଚାହିଁନି, ସେମିତି କିଛି କରିବସେ କି ଚାହେଁ । ଚକ୍ରପାଣିଙ୍କ ବ୍ୟବହାରରେ, ଚଳଣିରେ ପରିବର୍ତ୍ତନ କେଡ଼େ ସ୍ୱାଭାବିକ, କେଡ଼େ ଛୋଟପିଲା ସୁଲଭ ମନେହେବ ଗୋପୀନାଥଙ୍କ ଚିତ୍ରଣରେ । ମୋର ବ୍ୟକ୍ତିଗତ ମତ 'ଟଡ଼୍ପା' ଓ 'ପିମ୍ପୁଡ଼ି' ପରି 'ଚକ୍ରପାଣି' ତାଙ୍କର ଅନ୍ୟତମ ସବୁଠୁଁ ସଫଳ ଗଳ୍ପ ।

ଗୋପୀନାଥ ଏକ ସାକ୍ଷାତକାରରେ ଏକଦା କହିଥିଲେ ଯେ, ଆତ୍ମଜୀବନୀ ଲେଖା ନସରିଲେ ତାଙ୍କର କିଛି ଦୁଃଖ ନାହିଁ । କାରଣ ନିଜକଥା, ନିଜ ଜୀବନ ସେ ତ ତାଙ୍କ ଚରିତ୍ରମାନଙ୍କ ମାଧମରେ କହିଚାଲିଛନ୍ତି । ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣର ପୂର୍ବ ଓ ପର ଅବସ୍ଥା ଓ ମନସ୍ଥିତି 'ଘରବାହୁଡ଼ା', 'ଚଢ଼େଇ' ଏବଂ 'ଗୋପାଳ ଡ଼ାକୁଛି'- ଏ ତିନୋଟିଯାକ ଗଳ୍ପରେ ଚିତ୍ରିତ । ଗଛ ଡ଼ାଳର ଗହଳପତ୍ର ଭିତରେ ଲୁଚୁଥିବା, ଦିଶିଯାଉଥିବା ଚଢ଼େଇ ଯେମିତି ନିଜର ଅତୀତ, ସେଇ ଅତୀତର ସକଳ ସ୍ମୃତି । ସ୍ମୃତିଚାରଣ ପରିଣତ ବୟସର ଏକ ଅବଶ୍ୟମ୍ଭାବୀ ବାସ୍ତବତା । ଚଢ଼େଇ ଦେଖିବା ପରି ଗାଡ଼ିରେ ଘରକୁ ଫେରିବା ବେଳେ ଅନେକ 'ପୂର୍ବଦିନ' ମନେ ପକେଇଛନ୍ତି ବିଶ୍ୱମୂର୍ତ୍ତି ବାବୁ । ତାଙ୍କର ଅବସର ଗ୍ରହଣ ସମୟ ପାଖେଇ ଆସୁଛି । ଭବିଷ୍ୟତ ଓ ଅତୀତ ଛିଡ଼ା ହୋଇଛନ୍ତି ଦୁଇପଟେ ଅନ୍ଧାରୀ ରୂପ ନେଇ, ମଝିରେ ସେ । ଯେମିତି ଅବସରପ୍ରାପ୍ତ ଜଗବନ୍ଧୁ ଗାଁର ନିଜ ଘର, ସ୍ତ୍ରୀ ସୁଲକ୍ଷଣାଙ୍କୁ ଛାଡ଼ି ଦିନୁଟେ ପାଇଁ ସହରକୁ, ଆପଣାର ଭାଇ ଓ ତା' ପିଲାମାନଙ୍କ ପାଖକୁ ଆସିଛନ୍ତି । କିନ୍ତୁ ସହରରେ ଭାଇ ଘରେ ପହୁଞ୍ଚିବା ପରେ ଲାଗିଛି ସେ ପୁରୁଣା ଅନ୍ତରଙ୍ଗ ଭାବ ଯେମିତି ଆଉ ମିଳିବନି, ଯେମିତି ଆପଣାର ଭାଇ ଘରେ ବି କୁଣିଆଟିଏ, ତା' କଥା ବୁଝିବାକୁ ସଭିଏଁ ଆଗଭର, କିନ୍ତୁ ସେ ଏକା ଏକା । ତେଣୁ ଗାଁକୁ ଫେରିଯିବା ପାଇଁ ଜଗବନ୍ଧୁଙ୍କ ତର ସହିନାହିଁ ।

ଆମ ଦେଶର 'ଇମର୍ଜେନ୍ସି' ସମୟର ଆପଣା ମନସ୍ତତ୍ତ୍ୱକୁ ନେଇ 'ବଘେଇ' ଗଳ୍ପ ଲେଖିଥିଲେ ଗୋପୀନାଥ । କୋରାପୁଟର ଆଦିବାସୀ- ଅଧ୍ୟୁଷିତ ମାଳ ଅଞ୍ଚଳରେ ବାଘ କି ବାଘୁଣୀ ମାତିବା ଓ ଚାରିଆଡ଼େ କୋକୁଆ ଭୟ ମାଡ଼ିଯିବା, ଘରମାନଙ୍କରେ ତାଟି କବାଟ ପଡ଼ିଯିବା ଚିତ୍ରକୁ ସେ ସମାନ୍ତର ଭାବେ ଦେଖିଛନ୍ତି ଦେଶରେ ଗଣତନ୍ତ୍ର ହତ୍ୟାଭାବେ । ଯେମିତି ପରିବେଶ ଭିନ୍ନ ହେଲେ ବି 'ମାତିବା' ସମାନ, ଭୟ କାତର ଜନସାଧାରଣ ସମାନ । ଦୁଷ୍ଟ ରାଜନୀତି, ମାତିଥିବା ବାଘୁଣୀ ସମାନ ।

ଗୋପୀନାଥଙ୍କ ଗଳ୍ପରେ ଚରିତ୍ରମାନେ ନିଜକୁ ଭେଟନ୍ତି କେତେ ବାଗରେ । ଗାଁରୁ ଦିନ

କେଇଟା ପାଇଁ ସହରକୁ ଆସି ଫୁଟ୍‌ବଲ ଖେଳ ଦେଖୁ ଦେଖୁ କାହା ସାଙ୍ଗରେ କଳି କରିଥିବା ନଟବର ବାବୁ ନିଜକୁ, ନିଜର ବ୍ୟକ୍ତିସତ୍ତାକୁ ହଠାତ୍ ସାମ୍ନା କରିଛନ୍ତି । ସେ କେବେ ଫୁଟ୍‌ବଲ ଖେଳପ୍ରିୟ ନଥିଲେ । କିନ୍ତୁ କେଉଁ ପରିସ୍ଥିତିରେ ଖେଳ ଦେଖିବା ଭିତରେ ଗୋଟିଏ ଦଳକୁ ଉତ୍ସାହିତ କରିବାରେ ଏ ଝଗଡ଼ା । ସେ ଆପଣାକୁ ବୁଝିପାରି ନାହାନ୍ତି । କିନ୍ତୁ ନିଜର ଏକ ସ୍ୱତନ୍ତ୍ର ସତ୍ତା ଓ ତା'ର ଅକ୍ଷମତା ସମ୍ପର୍କରେ ହଠାତ୍ ସଚେତନ ହୋଇଛନ୍ତି 'ଅନନୁଭୂତି' ଗଳ୍ପରେ । ଆଉ ଭାଷଣ ପ୍ରବଣ ଦେଶର ପ୍ରକୃତ ପ୍ରତିନିଧି ଦଧି ସାହୁ ଲିଫ୍‌ଟ ବନ୍ଦ ହୋଇଗଲା ପରବର୍ତ୍ତୀ ଅନ୍ଧାର ଓ ଶୂନ୍ୟ ନିରବତା ଭିତରେ ହଠାତ୍ ନିଜକୁ ଭେଟିଛନ୍ତି । ସେଇ ସାକ୍ଷାତ୍‌କାରରେ ଆପଣା ଭିତରର ସମୁଦ୍ର-ଉତ୍ତାଳ ଶବ୍ଦମାନେ ହଠାତ୍ ମରିଯାଇଛନ୍ତି । ବାକୀ ରହିଛି କେବଳ ଅସହାୟତା, ନିଃଶବ୍ଦ, ଆପଣାତ୍ୱ ଓ ନିଜ ଘରକୁ ଫେରିଯିବା ପାଇଁ ଉଦ୍‌ବେଗ । ତା' ସହିତ ଆଖିର ଲୁହ ବନ୍ୟା ।

ଗୋପୀନାଥଙ୍କ କ୍ଷୁଦ୍ରଗଳ୍ପରେ ବ୍ୟକ୍ତିସତ୍ତା ଯେତିକି ଗୁରୁତ୍ୱପୂର୍ଣ୍ଣ, ସାମାଜିକ ପରିବେଶ ବି ସେତିକି ଗାରିମାମୟ । ଏଇ ସଙ୍କଳନରେ ଉଭୟବିଧ ଚିତ୍ରଣର ସ୍ୱରୂପ ଯେମିତି ପାଠକମାନେ ଆସ୍ୱାଦନ କରିପାରିବେ, ସଂପାଦନା କଲାବେଳେ ମୁଁ ସେତିକି ମନରେ ରଖିଛି । ତାଙ୍କର ଭଲ ଗଳ୍ପ ଅନେକ, ସେଥିରୁ ମାତ୍ର ଏଇ କେତୋଟି ପାଠକଙ୍କ ପାଇଁ ଏକତ୍ରିତ କରାଗଲା ଓ ଆଶା ଏଥିରେ ଗୋପୀନାଥଙ୍କ ଚରିତ୍ର ଚିତ୍ରଣର ବୈଶିଷ୍ଟ୍ୟ, ଭାଷାର ସ୍ଥିତିସ୍ଥାପକତା ଓ ଆନ୍ତରିକତା, ଏବଂ ସର୍ବୋପରି ସୂକ୍ଷ୍ମ ତଥା ଜଟିଳ ମନସ୍ଥିତିର ତୀକ୍ଷ୍ଣ ରୂପାୟନ ପାଠକମାନେ ଲକ୍ଷ୍ୟ କରିପାରିବେ, ଆସ୍ୱାଦନ କରିପାରିବେ ।

**ସୀତାକାନ୍ତ ମହାପାତ୍ର**

# ପିମ୍ପୁଡ଼ି

ଧୀରେ, ଧୀରେ, ଧୀରେ- ସବା ଉପରେ ପହଞ୍ଚିବାକୁ ଆଉ ବାର ହାତ ବାକି ଅଛି, ଗୋଟାକ ପଛେ ଗୋଟାଏ ହୋଇ ଉପରକୁ ଉପରକୁ ଚାଲିଛି ପାଦ ଦି'ଟା, ଗୋଡର ପେଣ୍ଡା ଓ ଜଙ୍ଘ ଯେପରିକି ଫାଟି ପଡ଼ିଲାଣି । ଛାତି ଭିତରେ ଧୁଡ଼ମୁଣ୍ଡ ଚାଲିଛି । ମୁଣ୍ଡର ଟୋପି ଫାନ୍ଦରେ ଝାଳଗୁଡ଼ାକ ଝୁଲୁଛି ଓଳିରୁ ବର୍ଷାପାଣି ପରି, ହାଫ୍‌ପ୍ୟାଣ୍ଟ ହାଫ୍‌କାମିଜ ଓଦା ସର ସର, ତଥାପି ଟେକି ହେଲାପରି ଚାଲିଛି ଦେହଟା, ଲାଗୁଛି ସତେକି ପବନରେ ଆଉଜିଛି । ପର୍ବତର ମହୁଡ଼ ହୋଇଗଲା, ରମେଶ ଅଟକିଲା ।

ବଡ଼ ଗଛର ବଣ କାହିଁ ତଳେ ରହିଲାଣି,ଉପରୁ ଦିଶୁଛି କଳାଘୁମର, ଯେପରିକି ପାତାଳକୁ ଓହ୍ଲେଇଯାଇଛି ଅଗନାଗ୍ନି ବନସ୍ତ । କିନ୍ତୁ ଉପରେ ଲଣ୍ଡା ଚଟାଣ, କରେ କରେ ଘାସ, ଚାରିପାଖେ ଆକାଶ ।

ପର୍ବତ ଚଢ଼ିବା ଖୁବ୍ କଷ୍ଟ । ସେ ଆପଣା ପାଖେ ସ୍ୱୀକାର କଲା,ଦଳର ଅନ୍ୟମାନଙ୍କ ଆଗରେ ସେ କଥା କହିବାକୁ ଲାଜମାଡ଼େ । ବୟସରେ ସେହି ତ ଟୋକା, ସେମାନେ ବୁଢ଼ା ବା ଦରବୁଢ଼ା, ତା'ଛଡ଼ା ସେ କର୍ମଚାରୀ ଅଧିକାରୀ ଲୋକ, ଯେତେ କଷ୍ଟପାଉ ତଳି ଓଠରେ ଦାନ୍ତ ମାଡ଼ିଦେଇ କାଠପରି ରହିବା ତା'ର କର୍ତ୍ତବ୍ୟ । ଓଲଟି ସେମାନଙ୍କୁ କହେ, ''କଣ ତୁମେ ଏତିକିରେ ଥକିଗଲ ?'' ସରୁଆ ନହକା ଭେଣ୍ଡିଆ ଲୋକ, ଯୋତା ମଡ଼ା ପାଦରେ ଦାଢୁଆ ଗୋଜିଆ ପଥର ଉପରେ ଖଟ୍ ଖାଟ୍ ଡ଼େଇଁ ଆଗେ ଆଗେ ଚାଲିଯାଏ ।

ଇଞ୍ଜିନ୍ ପରି ସଁ ସଁ ହୋଇ ଉପରକୁ ଉଠି ଆସୁଛି ଚପରାସୀ ବିନୁ, ଓଡ଼ିଆ ରମେଶ ଉପରେ ଠିଆହୋଇ ଅପେକ୍ଷା କଲା । ବିନୁର ପ୍ରକାଣ୍ଡ ଠେକା ଧିରେ ଧିରେ ବଡ଼ ହୋଇ ହୋଇ ଉପରକୁ ଉଠୁଛି, ଯେପରିକି ଗୋଟାଏ ମାଟିଆ  ବର୍ଣ୍ଣର ଅତିକାୟ ଛତୁ । ତା'ତଳେ କଳା ମିଶ୍ ମିଶ୍ ଗେଟମ ଗାଟମ୍ ଲୋକଟି । ନାକରେ କାନରେ ସୁନାନୋଳି, ଦେହରେ କୋଟ ପ୍ୟାଣ୍ଟ, ବନ୍ଧୁକ ବୋହିଛି ଓ ପିଠିରେ ଫ୍ଲାସ୍କ୍ ଝୁଲେଇଛି । ବିନୁ ଉପରେ ଆସି ଠିଆହୋଇ ହାଁ ହାଁ ହେଲା । ପାଟିକଲା- ''ଏଇ ତେରେବେରେ ଓ୍ୱାଦୁଡ଼େ ।'' ରମେଶ ପଛଆଡ଼େ ତା'ର ସାଇନ୍‌ବୋଡ଼ ପରି ଠିଆ ହୋଇ ରହିଲା ଚପରାସୀ ।

ତଳୁ ସମସ୍ୱରରେ ଗୀତ ଶୁଭୁଛି, ଗୀତର ଗହଳି ଘୋଷା ଲହରେଇ ଉଠୁଛି, ''ବାଇଲେ- ବାଇଲେ- ।''

ଆଗ ଜଣେ, ତା'ପରେ ଦି ଜଣ, ତା'ପରେ ଏକାଠି ଆଠଜଣ ଭାରୁଆଙ୍କ ଚେହେରା ଫୁଟି ବାହାରିଲା ଢ଼େଙ୍ଗା ଘାସ ଉହାଡ଼ରୁ କୌପୀନ ପିନ୍ଧା କନ୍ଧ ଲୋକ, ଖାଲି ଦେହ । ଗୀତ ବନ୍ଦ

ହେଲା । ବିନୁ ପାଟିକଲା, ''ଖାଲି ଅଳସୁଆ ଗୁଡ଼ାକ, ଯେତେ ଗାଳିଦେଲେ ଖାଲି ପଛରେ ପଡ଼ିଥିବେ ।'' ''ବୁଢ଼ା ହୋଇଗଲୁଁ ବେ ଆଜ୍ଞା !'' ଜଣେ କିଏ ଉତ୍ତର ଦେଲା, ଲାଗିଲା ତାଙ୍କର ହସ, ସେମାନେ ଖଣ୍ଡେ ଛାଡ଼ି ବସିପଡ଼ି ପିକା ଲଗାଇଲେ ।

ବିନୁ ଫ୍ଲାସ୍କ ଖୋଲି ଚା' ଦେଲା । ଗୋଟିକିଆ ଅଁଳା ଗଛତଳେ ବସିପଡ଼ି ରମେଶ ଚା' ପିଉ ପିଉ ପଚାରିଲା, ''ଆଉ କେବେ ଏବାଟେ ଆସିଥିଲୁ ବିନୁ ?''

''ଆଉ ଥରେ ଆସିଥିଲି ଦି'ବର୍ଷ ତଳେ, ତା ଆଗରୁ ତ ଅନେକଥର ।''

''ଆଉ କେହି ଅଧିକାରୀ ଏବାଟେ ଚାଲି ଚାଲି ଆସିଥିଲେ ?''

''କେବେ ଆସିଥିଲେ ଆଜ୍ଞା ! ଏ ତ ହାଟକୁ ଯିବାକୁ ପାଖବାଟ, ଯାଆସ ହୁଏ ।''

ରମେଶର ଆତ୍ମାଭିମାନ ଦବିଗଲା । ପିଲାଦିନୁଁ ଏପର୍ଯ୍ୟନ୍ତେ ସବୁଠୁ ବେଶୀ ଆନନ୍ଦ ସେ ପାଇଆସିଛି ସମସ୍ତିଙ୍କ ଆଗରେ ରହିବାରେ । ଆଉ ସେହି ତ' ଉପାୟ ସଂସ୍ଥାନ ପାଇଁ, ପ୍ରତିଷ୍ଠା ପାଇଁ । ଉତ୍ତର ବାଲେଶ୍ୱରର କାହିଁ ଏକ ଖଣ୍ଡ ମଫସଲରେ ଗୋଟିଏ ଦରିଦ୍ର ପରିବାରରେ ତା'ର ଜନ୍ମ । କେତେ ସାଙ୍ଗୀ ଅଟକିଗଲେ ଗାଁ ଚାଟଶାଳୀରେ, କେତେ ପୁଣି ରହିଗଲେ କଲେଜ୍ ଏପାଖେ, ତା' ଗାଁରୁ ସେ ଏକା କଲେଜ ଅତିକ୍ରମ କଲା, ତା ବି ସମ୍ଭବ ହେଲା ସ୍କଲରସିପ୍ ବଳରେ । ପ୍ରତିବର୍ଷ ପ୍ରାଇଜ୍ ବହି, ପରୀକ୍ଷାରେ ଫଳ ସ୍କଲରସିପ୍, ମେଡ଼ାଲ୍, ଜୀବନର ବାଙ୍କେ ବାଙ୍କେ ଗଡ଼ଜିତା ସାଫଲ୍ୟ ଏତିକି, ରମେଶ ତା'ର ସ୍ମୃତିରେ ଗର୍ବିତ । ତା'ପରେ ଦିନେ, ସେ ଚାକିରିରେ ଯୋଗଦେଲା, ଅଚିହ୍ନା ଲୋକେ ଚିହ୍ନା ହେବାକୁ ଆସି ଦଣ୍ଡବତ କଲେ, ଚପରାସୀ ସଲାମ ହେଲା, ସଞ୍ଜବୁଡ଼େ ଇନ୍‌ସ୍ୟୁରେନ୍‌ସ ଏଜେଣ୍ଟ ଜଗିବାକୁ ଆସି ଚା' ଖାଇବାକୁ ନିମନ୍ତ୍ରଣ କରିଦେଇ ଗଲେ, ବିଭାଘର ସମ୍ବନ୍ଧ ଆସିଲା, ସାଙ୍ଗ ପଢୁଆ ଉମେଶ ଆସି ସ୍ପଷ୍ଟ ପଚାରିଗଲା, ''ଭାଇ ତୋ ବାହାଘର ବିଷୟରେ କାହା ସଙ୍ଗେ କଥାଭାଷା ହେବା କହିଲୁ ଟିକିଏ ।'' ଦଣ୍ଡବତ, ଦଣ୍ଡବତ, ଚାରିଆଡ଼େ ଦଣ୍ଡବତ । ବ୍ୟକ୍ତିଗତ ଉଦ୍ୟମର ପରଖା ପରିଖିରେ ପ୍ରଥମ ଜିତା ଜିତି ତା'ର ଆତ୍ମାଭିମାନ ପାଲଟିଲା ଆତ୍ମବିଶ୍ୱାସ, ରମେଶ ବୁଝିଲା, ସେ ଜଣେ କେହି ।

ତା'ର ପଟଭୂମିରେ ସେହି ଅଗଣତି ଲୋକେ, ଯେଉଁମାନେ କେହି ନୁହନ୍ତି ।

କିନ୍ତୁ ପଦେ ପଦେ ଖେଣ୍ଟା ଲାଗେ ଯେତେବେଳେ ସେ ଦେଖେ ଯେତେ ଆଗକୁ ମାଡ଼ିଲେ ବି ତା' ପୂର୍ବରୁ ଅନେକ ଆହୁରି ଆଗକୁ ଯାଇଛନ୍ତି, ଯେତେବେଳେ ଦେଖିଲେ ଆଗରେ ଅନେକେ ଆଉ ତାକୁ ଚାହିଁଲେ ସେ ଅତି ନଗଣ୍ୟ ।

ଅନ୍ତତଃ ପର୍ବତ ଚଢ଼ିଲାବେଳେ ଏପରି ଲାଗୁଥିଲା; ଯେପରି ତା'ର ସଭ୍ୟ ଗୋଷ୍ଠୀରୁ ସେହି ଏ ବାଟେ ଆସିଛି ପ୍ରଥମ ହୋଇ । ସତ ନହେଲେ ବି କଳ୍ପନା କରି ଆନନ୍ଦ ପାଉଥିଲା । ଚା' ଦେଉ ଦେଉ ବିନୁ କହୁଚି- ''ଏଇ ପର୍ବତ ଉପରେ ସେଥର ବଡ଼ ସାହେବ ଛାଉଣି ପକେଇଥିଲା, ରହିଗଲୁଁ ଏଠି ପାଞ୍ଚଦିନ, ସତେକି ସହର ବସିଥାଏ । ଆଉ କି ଶିକାର କି ନାଟ ତାମସା, କେତେ କଥା ।''

ହଁ, ମଣିଷ ଆସିଛନ୍ତି, ମଣିଷ ଯାଇଛନ୍ତି, ଯଦିଚ ଦେଖିଲେ ଲାଗୁଛି ଏ ଅନ୍ଧାରି ବଣ ସବୁଦିନ ଏହିପରି ଅନ୍ଧାରୁଆ ।

''ସେକାଳର ବଣ ଆଜ୍ଞା, କାହିଁ ଆଉ ସେ !'' ବିନୁ କହିଲା, ''ଭାରି ବଣ ଥିଲା, ଜନ୍ତୁ

ଯେ ଜନ୍ତୁ କହିଲେ ନସରେ । ସେ ବଣ ସରିଗଲା, କନ୍ଧମାନେ ହାଣି ପକେଇଲେ । ଏଇଠି ଥିଲା କେତେ କନ୍ଧ ଗାଁ, ବଣ ସରିବାରୁ ବାଘ ଧରି ଖାଇଲା, ସେମାନେ ଉଠିଗଲେ ।''

''ଏକାଳେ ବଣ ନାହିଁ ଆଉ ଏଗୁଡ଼ା କ'ଣ ?''

''କଟା ହୋଇ ପେର୍ ବଢ଼ିଯାଇଚି, ଯେତେ ବଢ଼ିଲେ ସେ ବଣ ଆଉ କାହୁଁ ହେବ ?''

ମଣିଷ ଆସିଛି, ବଣ ଭିତରକୁ ଭେଦିଛି, ପେର୍ ହଟିଯାଇଛି, ପେର୍ ଆସିଛି । ବଣ ପାହାଡ଼ରେ ବି ତା'ର ସୁଖ ଦୁଃଖର ଧାର ନିଭିନାହିଁ, ଛପି ରହିଛି, ଘଞ୍ଚ ଜଙ୍ଗଲ ତଳେ ତଳେ ଗୋଡ଼ି ସାଲୁ ସାଲୁ ସରୁ ଝରଣାର ଧାରପରି ।

ରମେଶର ଆତ୍ମଚେତନା ଉଦାସ ହୋଇ ଧିମେଇଁ ପଡ଼ିଲା ସେହି ଗଣ ଚେତନାରେ ।

ଭଙ୍ଗା ବିସ୍କୁଟ୍‌ର ଗୁଣ୍ଡ ଗୋଟେଇବାକୁ ସରୁ ହୋଇ ପିମ୍ପୁଡ଼ି ଧାରଟିଏ ଲାଗିଗଲାଣି, ରମେଶ ଚମକିପଡ଼ି ନିଘା କଲା । ହସିଦେଇ ମନକୁ ମନ କହିଲା, ''ଖାଲି ମଣିଷ ନୁହନ୍ତି, ପିମ୍ପୁଡ଼ି ବି !'' ଚାରି ହଜାର ଫୁଟ ପର୍ବତ ଉପରେ ମଣିଷର ଗୃହସ୍ଥଳିର ସାଥୀ ପିମ୍ପୁଡ଼ି ବି ରହିଛି । ସାମାନ୍ୟ ପିମ୍ପୁଡ଼ି ଯେପରିକି ତା'ର ଏ ପର୍ବତ ବୁଲାର ଅସଲ ଉଦ୍ଦେଶ୍ୟ ତାକୁ ସ୍ମରଣ ପକେଇଦେଲା । ଠିଆ ହୋଇପଡ଼ି ସେ ପଚାରିଲା-

''ବିନୁ, ଚାଉଳ ଚୋରି ଧରିବା ତ ?''

''ତା ଆଉ ଧରିବା ନାଇଁ ? ଯୋଉବାଟେ ଗଲେ ବି ଚାଉଳ ବାହାରିବ ଯାଇ କମ୍ବାଓ୍ୱାଲସା ହାଟରେ । ଅଇଛା ୧୦ଟା ବାଜିଛି, ଏଇ ଡ଼ାଲୁଟା ଓହ୍ଲେଇ ପଡ଼ିଲେ ଆମେ ସେଠି ପହଞ୍ଚିଯିବା ଦିଟା ଆଗରୁ । ତା'ପରେ ତ ଗୋଟିକି ଗୋଟି ଧରି ପକେଇବା, ଯିବେ କୁଆଡ଼େ ?''

''ବେଶ୍, ଚାଲ ତେବେ ଆଉ ଡ଼େରି ନାହିଁ ।'' ଏଠି ବି ବିଶ୍ରାମ ମିଳିବ ନାହିଁ ଜାଣି ବିନୁ ବିରକ୍ତ ହେଲା । କିନ୍ତୁ ଉପାୟ ନାହିଁ । ଯାହା ଜାଣିଥିଲା ପୁଞ୍ଜାଏ ପାଞ୍ଚଟା କନ୍ଧ ବୋଲି ତାହାରି ବାହାଦୁରି ଦେଖାଇ କନ୍ଧ ବୋଝିଆଙ୍କ ଉପରେ ଗର୍ଜନ କଲା, ''ହେଇ, ତେରେବେରେ ହାଲାମୁଡ଼େ (ଯାଅ) ।''

କନ୍ଧଲୋକେ ଗର୍ ଗର୍ ହେଲେ । ଭଲା କଥା, ଟିକିଏ ବିଶ୍ରାମ ନାହିଁ ଖାଲି ଦୌଡ଼୍ ଦୌଡ଼୍ । ମାଙ୍କଡ଼ ଖେଳିଲା ପରି ଆଦିମ କୁଭି କନ୍ଧ ଭାଷାରେ ବିନୁ ଓ ତା'ର ପୂର୍ବପୁରୁଷଙ୍କୁ ଗାଳି ବଖାଣିଲେ । ସେମାନେ ଜାଣନ୍ତି ତାଙ୍କର ଭାଷା ଏ ବୁଝିବେ ନାହିଁ । ଏମାନେ ଖାଲି ହୁକୁମ ଦେବେ- ବୋଝ ବୁହ, ପାଣି ଆଣ, କାଠ ଆଣ । ଏତିକି ପ୍ରକାଶ କରିବାକୁ କେତେଟା କନ୍ଧ ଶବ୍ଦ କେହି କେହି ଜାଣନ୍ତି; ବିନୁ ବି ଜାଣେ, ସୁତରାଂ ତାକୁ ମନ ଖୋଲି ଗାଳି ଦେଲେ କ୍ଷତି ନାହିଁ । ଆପଣା ଭିତରେ କୁହାକୋହି ହେଲେ- ଆଚ୍ଛାବାୟା ଲାଗିଛି ୟାଙ୍କୁ ଯେ ଏ ଦେଶର ଚାଉଳ ସେ ଦେଶର ଲୋକ କିଣି ନେଉଛନ୍ତି ବୋଲି ଏମାନେ ବଣ ଚଙ୍କଟି ଚଙ୍କଟି ମୂଷା ଧରିବାକୁ ଧାଇଁଛନ୍ତି । ଭୋକ ତ ସମସ୍ତିଙ୍କି କରିବ, ସେଥିରେ ଏ ଦେଶ କ'ଣ, ସେ ଦେଶ କ'ଣ ? ଯାହାର ଯାହା ଦରକାର ସେ ଯଦି ତାକୁ କିଣିବାକୁ ଆସିଲା, ସେଥିରେ ଅପରାଧଟା କ'ଣ ହେଲା ? ଭଲା ଏ ଦେଶଟା ବି କାହାର ? ଚାଉଳ ବା କମୋଉଛି କିଏ ? ନା, ଏମାନଙ୍କ ନ୍ୟାୟଟା ଭିନେ, ସେ ନ୍ୟାୟରେ ମଦ ରାନ୍ଧିଲେ ଦୋଷ, ବଣ ହାଣିଲେ ଦୋଷ, ଚାଉଳ କିଣିଲେ ଦୋଷ, ବୋଝ ବୋହି ବୋହି ଦି'ଦିନ ବାଟ ଚାଲି ଘାଳିଆ ହୋଇ ବସିପଡ଼ିଲେ ଦୋଷ ।

କଥା ଗପିବାକୁ ବେଳ ନାହିଁ, ଚପରାସୀ ଗାଳି ଦେଲାଣି, ବାବୁଟା ବି ମାଡ଼ି ଚାଲିଲାଣି ଆଗେ ଆଗେ । କନ୍ଧଲୋକେ ଉଠିପଡ଼ିଲେ । ଆପଣାର ସବୁ ଅଭିଯୋଗକୁ ଏକାଠି ଗୁନ୍ଥି ଗୀତ ଫାନ୍ଦିଦେଲେ । ତା' ପଛରେ ତୁହାଇ ତୁହାଇ ସେହି ଏକା ଘୋଷା- ''ବା'ଇଲେ- ବା'ଇଲେ-''

ସାମ୍ନାରେ ମହାବଣ, ତାହାରି ତଳେ ତଳେ ପର୍ବତ ଢାଲୁରେ ଛପିଲା ସୁଡ଼ଙ୍ଗ ପରି ତଳକୁ ତଳକୁ ବାଟ । ପଛରୁ ସମସ୍ୱରରେ କନ୍ଧ ଗୀତ ରମେଶକୁ ଆନନ୍ଦ ଦେଉଥିଲା । କେଡ଼େ ସୁନ୍ଦର ଶୁଭୁଛି । କ'ଣ ତା'ର ଅର୍ଥ ହୋଇଥିବ । ନିଶ୍ଚୟ କୌଣସି ଏକ ଜାତୀୟ ଗାଥା ।

''ବିନୁ !'' ରମେଶ ରଡ଼ିଲା ।

ମନେ ମନେ ତାକୁ ଗାଳି ଦେଇ ଦେଇ ପଥର ଉପରେ ଟଳ ଟଳ ହୋଇ ବିନୁ ତା' ପାଖକୁ ଚମକିଗଲା । ତା'ର ବୟସ ପଞ୍ଚାବନ, ମୁଣ୍ଡ ମଝିରେ ଚନ୍ଦା, ଛ'ଟି ଦାନ୍ତ ପଡ଼ିଗଲାଣି । ଏ ବୟସରେ ପାହାଡ଼ ଚଢ଼ା ତା' ଦେହକୁ ସହେ ନାହିଁ, ଦେହ ଖୋଜେ ସୁଖ, ମଠ ମଠ ଚାଲି । କିନ୍ତୁ ଏ ଟୋକା ଅଧିକାରୀ ତର ତର କରିଦିଏ, ଅମଡ଼ା ମଡ଼ାଏ, ଆପେ ବାୟା, ପରକୁ ବାୟା ଲଗାଏ । ବିନୁର ଖାଇବାକୁ ଅଭାବ ନାହିଁ, କିନ୍ତୁ ଚାକିରି ଚାଲିଗଲେ ତାର କ୍ଷମତା ଚାଲିଯିବ, କଳାହରଣ ହୋଇ ସେ ହେବ ସାମାନ୍ୟ ଏକ ଦେଶୀୟା, ଜୀବନଯାକ ବାଘ ପଛେ ପଛେ ବିଲୁଆ ପରି ସେ ଦେଶୀୟାଙ୍କ ଉପରେ ଚରିଛି, ପୁଣି ନିଜେ ଦେଶୀୟା ହୋଇ ପଡ଼ିରହିବାକୁ ହେବ ଭାବିଲେ ଜୀବନ ଉପରେ ଧିକ୍କାର ଜନ୍ମେ । ସେହି ଭୟରେ ବିନୁ ପାହାଡ଼ ଚଢ଼େ ।

''ବିନୁ, ଏମାନେ ଭାରି ସୁନ୍ଦର ଗୀତ ଗାଉଛନ୍ତି ।''

''ଭାରି ସୁନ୍ଦର ଆଜ୍ଞା ।''

''କ'ଣ ଯାର ମାନେ ?''

ବିଜ୍ଞ ଲୋକ ପରି ପଗଡ଼ି ହଲେଇ ଦି'କଳ ପାନ ଭିତରୁ ଅବୁଝା କନ୍ଧ ଗୀତର ଅର୍ଥ ଫାନ୍ଦି ଦେଇ ବିନୁ କହିଲା, ''ଏଇଟା ସେଇ ଚଇତ୍ ପରବର ଗୀତ ଆଜ୍ଞା ।''

''କ'ଣ ଯାର ମାନେ ?''

''ଖାଲି ଧାଂଡ଼ା ଧାଂଡ଼ୀ କଥା, ସେଇ ପୁରୁଣା କଥା- ଯେମିତି କହନ୍ତି ନାଇଁ- ତତେ ଦେଖି ମୋର ବଡ଼ ଶରଧା, ଏ ଯାଇଫୁଲ । ତୁ କେବେ ମୋ ଘରକୁ ଆସିବୁ ? ଏ ଯାଇଫୁଲ ।'' ବିନୁ ହସିଲା ।

ରମେଶ କହିଲା, ''ସବୁଦିନେ ଯାଙ୍କର ଏଇ ଗୀତ ?''

''ବାଇଲେ ଅର୍ଥ କ'ଣ ଯାଇଫୁଲ ?''

''ଠିକ୍ ଧରିଚନ୍ତି ଆଜ୍ଞା, ଆପଣ ଏମିତି ଶିଖିବସିଲେ ଭାରି ଚଞ୍ଚଳ ଯାଙ୍କ ବୋଲି ଶିଖିଯିବେ ।''

ରମେଶ ଖୁସି ହେଲା, ପଚାରିଲା ''ଯେତେ ବୁଢ଼ା ହେଲେ ବି ଏଇ ଗୀତ ?''

''ଆମ ଦେଶରେ କେହି ବୁଢ଼ା ହୁଅନ୍ତି ନାହିଁ ।''

ରମେଶ ମନେ ମନେ ଲେଖି ରଖିଲା- 'ବାଇଲେ' ମାନେ ଯାଇଫୁଲ । କନ୍ଧମାନେ ଖାଲି ଘେନାଘେନି ଗୀତ ଗାଆନ୍ତି ।

ରମେଶକୁ ଭୁଟେଇ ଦେଇ ବିନ୍ନୁ ବି ଖୁବ୍ ଖୁସି ହେଲା ।

କନ୍ଧ ବୋଝିଆ ଗୀତରେ ଗୀତରେ ଚପରାସୀ ଓ ଅଧିକାରୀମାନଙ୍କୁ ଗାଳି ଦେଇ ଦେଇ ଚାଲିଲେ, ଗାଇଚାଲିଲେ ଆପଣାର ଦୁଃଖ ଦୁର୍ଦ୍ଦଶା । ବାଟରେ ଦେଖାପଡ଼ିଲା । ପଞ୍ଜା ପଞ୍ଜା ହାଟମୁହାଁ କନ୍ଧ ବାଟୋଇ । ଗୀତ ଶୁଣି ହସିଉଠିଲେ, ଗୀତରେ ଗୀତ ଯୋଡ଼ିଦେଲେ । ସମଦୁଃଖୀ ସେମାନେ, ଏକା ଉପହାସରେ ଭାଗୀ ।

ଗୀତ ଗାଇଗାଇ ପାଟି ଘୋଳି ହେଲେ, ବୋଝିଆ ତୁନିପଡ଼ନ୍ତି, ବିନ୍ନୁ ଗର୍ଜନ ଛାଡ଼େ - ‘‘ହେଇ ଗୀତ ଗା, ଗୀତ ଗା ।’’

‘‘ଆମ ଦେଶରେ କେହି ବୁଢ଼ା ହୁଅନ୍ତି ନାହିଁ ।’’ ଆପଣାର କଥା ବିନ୍ନୁର ଆପଣା ଆଗେ ନୂଆ ରୂପ ଧରି ଠିଆ ହେଲା । ସେ ତା’ର ସାନ ଭାରିଯା, ତୃତୀୟ ପକ୍ଷ । ଆଗର ଦୁଇ ଭାରିଯା ଅଛନ୍ତି, ତଥାପି ବର୍ଷେ ହେଲା ସେ ଆସିଛି । ଅଧିକ କନ୍ୟାସୁନା ଦେଇ ତା’ର ବାପ ମା’କୁ ମଙ୍ଗେଇ ଅନ୍ୟଜଣକ ଆଶା ମୁହଁରୁ ସେ ‘ଗୋରୀ’କୁ ଏକ ପ୍ରକାର ଛଡ଼େଇ ଆଣିଛି । ଏ ବଣ ଦେଶରେ ଛଡ଼େଇ ଆଣି ପାରିବାହିଁ ପାରିଲାପଣ, ସେଥିରେ ମଣିଷ ଜନ୍ତୁକୁ ଟପିଯାଏ । କିନ୍ତୁ ବିନ୍ନୁର ଏ ପାରିଲାପଣ ଉହାଡ଼ରେ ଥିଲା ଜୀବନ ଗୋଟାକର କ୍ଷୋଭ । ତା’ର ତୋଟା ଅଛି, କ୍ଷେତ ଅଛି, ଘର ଅଛି, ଗାଈଗୋରୁ ଅଛନ୍ତି; କିନ୍ତୁ ସନ୍ତାନ ନାହିଁ । ବୟସ ଯହୁଁ ସରି ସରି ଆସୁଛି, ତହୁଁ ସେ ବେଶୀ ବେଶୀ ଅନୁଭବ କରୁଛି ତା’ର ପୁଅଟିଏ ଦରକାର । ବାଟେ ବାଟେ ଖାଲି ତା’ର ଗୋରୀ ମନେପଡୁଛି । ଦି’ ସଉତୁଣୀ ତାକୁ ଦେଖି ପାରୁଥିବେ ତ ? ମନ ରାଜି ନ ହେଲେ ଏ ଦେଶରେ ସ୍ତ୍ରୀ ପଳେଇ ଯାଏ- ଗୋରୀ ମନ କଷ୍ଟ କରୁନଥିବ ତ ? ଆଉ ସେ ଭେଣ୍ଡିଆ ଚପରାସୀ, ଯାହା ନାଁ ବିଶି, ଲେଖାଯୋଖାରେ ଟାଣି ଓଟାରି ବିନ୍ନୁର ନାତି ସମ୍ପର୍କ ହୁଏ, ଖାସ୍ ଆଇମାନଙ୍କ ସଙ୍ଗେ ଥଟ୍ଟା ଲାଗିବାକୁ ଆସି ଓଳି ଓଳି ବିତେଇଦିଏ, ସେ କ’ଣ କରୁଥିବ ?

‘‘ବିନ୍ନୁ !’’

‘‘ଆଜ୍ଞା’’

‘‘ଆଚ୍ଛା ଏ ଚାଉଳ ଆଗରୁ ଧରା ପଡୁନାହିଁ କାହିଁକି ? ଲୁଚା ଚୋରାରେ ମାନ୍ଦ୍ରାଜ ଇଲାକାକୁ ଚାଲାଣ ହେବାପାଇଁ କେଉଁଠି ତ ଗଦା ହୋଇଥିବ, ହାଟ ଲାଗୁ କି ନଲାଗୁ ସେଉଠୁ ବେପାରୀମାନେ ବୋହି ନେଉଥିବେ, କୋରାପୁଟରୁ ଆସିଲେଇଁ ଚାରିଦିନର ବାଟ, ଏତେ ଗାଁ ବୁଲିଲେଇଁ ଏତେ ଜାଗା ଦେଖିଲେଇଁ କାଇଁ ସେମିତି ତ ଆମ ଆଖିରେ ପଡ଼ିଲା ନାହିଁ । କଥା କ’ଣ ?’’

‘‘ସେମିତି ଏକାଠି ବେଶି ବେଶି ଚାଉଳ ଗଲେ କ’ଣ ଲୋକ ଦେଖାଣିରେ ଚାଲିଯାଆନ୍ତା ?’’ ବିରକ୍ତ ଅବସ୍ଥାରେ କଥାଟା କହିଦେଇ ବିନ୍ନୁ ପସ୍ତେଇଲା । ସେ ନିଜେ ତା’ କ୍ଷେତର ଶହେ ମହଣ ଚାଉଳ ଚଢ଼ା ଦରରେ ପଦାକୁ ପଠେଇ ପାରିଛି । ସେ ବିଶ୍ୱାସ କରେ, ଯେଉଁଠି ସମାଜର ନୀତି ଯେ ଯେଖା ପାଦରେ ଯେଝା ଠିଆ ହେବେ, ପ୍ରତ୍ୟେକ ଆପଣା ଶିଙ୍ଗରେ ମାଟି ଖୋଳିବେ, ସେଠି ପରକୁ ଠେଲିବା ପରର ଗୋଡ଼ ଧରି ଓଟାରି ଦେବା ପର କାନ୍ଧରେ ଜବରଦସ୍ତି ଲାଉ ହେବା ବା ପରକୁ ଚିତା କାଟିବା ଉଦ୍‌ଯୋଗୀ ଲୋକ ପକ୍ଷରେ ଆପେ ଆସେ, ନହେଲେ ନିଜେ ବଡ଼ ଲୋକ ହେବା ଅସମ୍ଭବ । ଯେଉଁଠି ନିଜ ପାଇଁ ନିଜ ଛଡ଼ା କେହି ନାହିଁ ସେଠି ସମଷ୍ଟିଙ୍କ ସମୂହ କଲ୍ୟାଣ

କଳାଭଳି ନିୟମକୁ ଚଲାଖ ଲୋକ ନିଜ ସ୍ୱାର୍ଥ ପାଇଁ ଭାଙ୍ଗିବା ହିଁ ସ୍ୱାଭାବିକ ଓ ଉଚିତ ବୋଲି ସେ ଭାବେ । ଧରାପଡ଼ିଯିବାକୁ ଡ଼ରେ । କଥା ବାଁରେଇ ଦେଇ କହିଲା- ''ଏକାଠି ବେଶି ବେଶି ଚାଉଳ କୌଣସି ଜଣକ ହାତରେ ପଦାକୁ ଯାଉ ନାହିଁ । ଆଜ୍ଞା, ସେମିତି ହୋଇଥିଲେ ଆମ ଆଖିରେ ପଡ଼ିଥାନ୍ତା, ଲୁଚନ୍ତା କୋଉଠି ? ହାଟ୍‌କୁ ଗଲେ ଆପଣ ଦେଖିବେ କିଏ ପାଞ୍ଚ ସେର, କିଏ ଦଶ ସେର କରି ଚାଉଳ କିଣି ନେଇ ଯାଇଛନ୍ତି ଏମିତି ଶହ ଶହ ତଳ ଦେଶର ଲୋକ । ଦି'କୋଶ ଛାଡ଼ି ମାନ୍ଦ୍ରାଜର ସୀମା, ସେଠି ସାହୁକାର ବସିଥିବେ, ଶଗଡ଼ ଥିବ, ପାଖେ ଚାଉଳ ପୂରେଇବାକୁ ବସ୍ତା, ପାଖେ ଟଙ୍କା ମୁଣି । ନହେଲେ ତାଙ୍କରି ଟଙ୍କାରେ ମୁଣ୍ଡ ବୋଝିଆ ଚାଉଳ କିଣି ଆଣିଥିବେ । ସେ ଚାଉଳ ଜମା ହେବ । ବସ୍ତାରେ ପଶିବ । ଚାଲିବ ଶଗଡ଼ ବିଶାଖା ପାଟଣା, ପାର୍ବତୀପୁର, ବୋବିଲି, ମକୁଆ । ବେପାରୀ ଲୋକର କଥା ଅଲଗା ଆଜ୍ଞା-''

''ବେପାରୀ ହାତରେ ପଡ଼ିବା ପୂର୍ବରୁ ସେଇ ଚାଉଳ ଆମେ ଧରିଦେବା'' ଗମ୍ଭୀର ହୋଇ ରମେଶ କହିଲା ।

ତା'ର ଆଖିରେ ଝଟକୁଥିଲା ଶିକାରୀ ଆଖିର ଆଲୁଅ ।

ମନରେ ଗୋଟାଏ ରାଆ- ଆମର ଚାଉଳ କାହିଁକି ସେମାନେ ବୋହିନେବେ ? ଏଇଟା ଯେପରିକି ତା' ବ୍ୟକ୍ତିଗତ ଅଧିକାର ଉପରେ ହସ୍ତକ୍ଷେପ ।

'ଆମର' କହିଲାବେଳେ ତା'ର ବ୍ୟକ୍ତିତ୍ୱ ବୁଝେ ଖାଲି ଗୋଟାଏ କଥା- ସେ ଓଡ଼ିଆ । ତା ପଛରେ ଓଡ଼ିଶାର ଇତିହାସ ଓ ସେ ଇତିହାସରେ ପଡ଼ିଶା ଦେଶ ଉପରେ ରାଜ୍ୟବିସ୍ତାର, ଯୁଦ୍ଧ ଜୟ, ସାମ୍ରାଜ୍ୟ ସ୍ଥାପନ । ଅତୀତର ଧୂଳିଗଦା ଓ ଭଙ୍ଗା ଇଟାକୂଢ଼ରୁ ବର୍ତ୍ତମାନର ଖ୍ୟାତିହୀନତାକୁ ସେ ଫେରିଆସେ, ମନର ଓରମାଣ ମେଣ୍ଟାଇବାକୁ ପଡ଼ୋଶୀ ଦେଶ ଉପରେ ଦୋଷ ଢ଼ାଳିଦିଏ ।

''ଖାଇ ଖାଇ ଖତିରା କରିଦେଲେ ଦେଶ ଗୋଟାକୁ, ଆଉ ଫେର୍ କ'ଣ ?''

ବଣ ବାଟରେ ଶିକାର ମନେପଡ଼େ ।

ରମେଶ ମନରେ ଛାଇଯାଏ ଚାଉଳ ଶିକାରର ନିଶା ।

''ଧରି ପାରିଲେ-'' ଦାନ୍ତରେ ଦାନ୍ତ ଘଷି ସେ କହେ । ଧରିପାରିଲେ କ'ଣ କରିବ ସେ ଜାଣେ ନାହିଁ ।

ତରତର ହୋଇ ତଳକୁ ତଳକୁ । ମାଘର ପାଗ ଓ ବାଟର ତାତି ମିଶିଯାଇ ବସନ୍ତର ଅନୁଭୂତି ଆଣୁଛି, ଯୁଆଡ଼େ ଚାହିଁଲେ ପରିପୂର୍ଣ୍ଣ ଗଛପତ୍ରର ଶୋଭା । ଗଡ଼ାଣି ଶେଷରେ ବାଟ କଡ଼ରେ ତଳମାଳର ଗାଁଟିଏ ପଡ଼ିଲା । ଆମ୍ବ ତୋଟା, କ୍ଷେତ, ଖଳା, ଧାଡ଼ି ଧାଡ଼ି ଘର । ଯିବାବାଟରେ ପିଲାଟିଏ ଠିଆ ହୋଇଥିଲା, ଅଚିହ୍ନା ଲୋକ ଦେଖି ଭେଁକିନା କାନ୍ଦି ମା'କୁ ଡ଼ାକି ଡ଼ାକି ଦଉଡ଼ି ପଳେଇଲା । ସେହି ହେଲା ସଂକେତ, ବାଡ଼ କଡ଼ରେ ଖୁଣ୍ଟିରେ ବନ୍ଧା ହୋଇଥିବା ବାଛୁରୀମାନେ ପଘାରୁ ଉହୁଙ୍କି ହୋଇ ହମାରଡ଼ି ଦେଲେ । ସ୍ତ୍ରୀ ଲୋକମାନେ ଆଡ଼ଲୁଚା ହୋଇ ମିଟି ମିଟି କରି ଅନେଇଁ ରହିଲେ । ଗାଁ ଲୋକ ଗୋଟି ଗୋଟି ହୋଇ ପାଖକୁ ଆସିଲେ । ରମେଶକୁ ଲାଗିଲା, ଏ ଦୃଶ୍ୟ ତା'ର ଚିହ୍ନା ଚିହ୍ନା । ପାଦ ଆପେ ଘୋଷାରି ହେଲା । ଝଙ୍କା ଗଛ ଛାଇରେ ଅଟକି ରହି ସେ ପଛକୁ ଅନେଇଁଲା । ପ୍ରକାଣ୍ଡ ମନଗଢ଼ା ଭୂତପରି ପର୍ବତଟା ପଛରେ ଠିଆହୋଇଛି । ଧକେଇ ଧକେଇ ବିନୁ

ଆସୁଛି, ଦୌଡ଼ି ଦୌଡ଼ି ଆସୁଛନ୍ତି ବୋଝିଆ ।

''ଏଠି ଭଲ ପାଣି ମିଳିବ ବିନୁ ?''

''ମିଳିବ ।'' ବିନୁ ତତ୍ପର ହେଲା । ବୋକଟା ଖୋଲି ଲୋଟା ଗିଲାସ ବାହାର କରି ଗାଁକୁ ଗଲା । କନ୍ଧ ବୋଝିଆ ବସି ବସି ଝାଳ ମାରିଲେ । ରମେଶ ଅପେକ୍ଷା କଲା ।

ଅଳ୍ପ ସମୟ ଭିତରେ କୁଆଡ଼ୁ ଆସି ପହଞ୍ଚିଗଲା ଗୋଟାଏ ଦଉଡ଼ିଆ ଖଟ, ଜଣେ ଗୋଟାଏ ଲୋଟାରେ କିଛି ଗରମ ଦୁଧ ଆଣି ଠିଆହେଲା, ଆଉ ଜଣେ ଆଣିଲା ପେଣାଏ ପାଚିଲା କଦଳୀ, ତେଲେଙ୍ଗୁ, ଓଡ଼ିଆ, କୋଣ୍ଡାଦୋରା ମିଶି ଗାଁର ସାତଜଣ ଋଇତ ଆସି ଅନୁନୟ କଲେ-

''ଖରା ବହୁତ ହେଲାଣି, ଦୟାକରି ଏଠି ଟିକିଏ ବିଶ୍ରାମ ନେଇ ଗଣ୍ଡିଏ ଖାଇ କରି ନଗଲେ ଗାଁ ଲୋକଙ୍କ ମନ କଷ୍ଟ ହେବ ।''

ବିଶ୍ରାମ !

ରମେଶ ହସିଲା । ବାଟେ ବାଟେ ସେହି ନିମନ୍ତ୍ରଣ । ସତେକି ଚାରିଆଡ଼େ ବଣ ଜଙ୍ଗଲ ଘେରେଇ ହୋଇ ମଣିଷ ମଣିଷକୁହିଁ ଆଉଜିବାକୁ ଖୋଜେ । ଅଟକିଯାଅ, ରହିଯାଅ ଆଜି ରାତିଟା ଆମ ଗାଁରେ । ଚିହ୍ନା ଗଛର ଛାଇ, ଅଧଚିହ୍ନା ଚାଳ ଭିତରୁ ମଠୁଆ ମଠୁଆ ତୁଳି ଧୂଆଁ ସାଧାରଣ କାମରେ ବ୍ୟସ୍ତ ପୁରୁଷ ସ୍ତ୍ରୀ । ସେ ବଣଠୁ ଭିନେ, ପର୍ବତରେ ଥାଇ ପର୍ବତଠୁ ଭିନେ ।

ତଥାପି, ଚାଲିବାକୁହିଁ ହେବ । ପଛ ଗାଁର ବାଟର ସ୍ନେହ ଲାଗିରହିଥିବ ଖଣ୍ଡେ ଦୂର, ତା'ପରେ- ପବନରେ ଉଡ଼ିଯିବ ।

ବିନୁ ପାଣି ଘେନି ଆସିଲା । ପାଣି ପିଇସାରି ରମେଶ କହିଲା, ''ଯିବା ଚାଲ ।'' ଏଥର ବୁଢ଼ୀଟିଏ ଆସି ବାଟ ଓଗାଳିଲା । ହସି ହସି କହିଲା, ''ଏତେ ବେଳଟାରେ ଅଖିଆ ଯିବୁ ପୁଅ, ମା' ପାଖରେ ଥିଲେ ଏମିତି ଛାଡ଼ି ଦିଅନ୍ତା ? ଏ ଗାଁରେ କ'ଣ ମା' ଭଉଣୀ ତୋର ନାହାନ୍ତି ?''

ସମସ୍ତେ ହସିଲେ । ବୁଢ଼ୀଟି କନ୍ଧ ତେଲେଙ୍ଗୁ ମିଶାମିଶା କୋଣ୍ଡାଦୋରା ଜାତିର । ଏ ଗାଁରେ କ'ଣ ମା' ଭଉଣୀ ତୋର ନାହାନ୍ତି ।

ରମେଶ ଆଖି ଉପରେ ଯେପରିକି ଛାଇ ଲଦି ହୋଇପଡ଼ିଲା ।

ନିଜକୁ ନିଜେ ବଡ଼ ପାଟିରେ କହିପକାଇଲା- ''ନା-ନା-ନା, ଯିବାକୁ ହେବ, ବହୁତ କାମ ।'' ଆପଣାକୁ ଓଟାରି ନେଇ ଚାଲିଲା ।

ସ୍ମୃତିରେ ରହିଗଲା ସେହି ବୁଢ଼ୀର ମା'- ମୁହଁପରି ମୁହଁର ଛାଇ । ମା'ର ଆଖି ପେଟକୁ, ଆଉ ତୁଣ୍ଡରେ ଆହା ପଦ । ତା'ର ଅନ୍ୟ ଜାତି ନାହିଁ, ଭାଷା ନାହିଁ, ସେ ମା' ।

ଚାଉଳ ଧରା ପାସୋରିଗଲା । କିନ୍ତୁ ପୁଣି ମନେପଡ଼ିଗଲା ଯେତେବେଳେ ଖଣ୍ଡେ ଦୂରରେ ସେ ଦେଖିଲା, ହାଟୁଆ ଚାଲିଛନ୍ତି, ଭାର ଭାର ଚାଉଳ ।

''ବିନୁ, ହାଟ ଆଉ କେତେ ବାଟ ?''

''ହେଇ ଆଗରେ ଆଜ୍ଞା, ପହଞ୍ଚିଗଲେ ।''

''ହୁସିଆର୍, ହଲ୍ଲା କରିବ ନାହିଁ ।''

''ନାହିଁ ଆଜ୍ଞା, ଆରେ କନ୍ଧମାନେ, ଆଉ ଗୀତ ବୋଲନାହିଁ, ପାଟି କର ନାହିଁ, ତୁନି

ତୁନି ଚାଲ ।'' ବିନୁ ହସି ଦେଇ ବୋଝିଆମାନଙ୍କ ପାଖକୁ ଚାଲିଗଲା । ବଣ ଭିତରେ ଶିକାର କରି ଗଲାପରି । ପଦାରେ ତୁନିତାନି, ମନ ଭିତରେ ଚହଲ । ରମେଶ ତରତର ହୋଇ ତା'ର କର୍ମପନ୍ଥା ବିଷୟରେ ଭାବିଗଲା । ଚାଉଳର ଚୋରା ଚାଲାଣ ଖାଲି ଅଟକେଇ ଦେଇ ସେ ନିଶ୍ଚିନ୍ତ ହେବ ନାହିଁ । ପକ୍କା ବନ୍ଦୋବସ୍ତ କରିଦେଇଯିବ । ରିପୋର୍ଟ୍ ଲେଖିବ । ପ୍ରଶଂସା ପାଇବ । ଏହିପରି ପ୍ରଶଂସା ପାଇ ପାଇ ଶୀଘ୍ର ସେ ଉନ୍ନତି କରିବ । ପରୀକ୍ଷାରେ ସମ୍ମାନ ପାଇଲାପରି ସେ ବି ଏକ ପୁରସ୍କାର । ପାଇବାକୁ ହକ୍‌ଦାର ସେ, ନ ହେଲେ ଏତେ ବଣବୁଲା, ଖରାରେ ଶୀତରେ । ସତେକି କଙ୍ଗୋ ଆଫ୍ରିକାରେ ଲିଭିଂଷ୍ଟୋନ । ସେ ଯାଇଥିଲେ ଗୋଟାଏ ନଦୀର ଉତ୍ପତ୍ତି ସ୍ଥଳ ଆବିଷ୍କାର କରିବାକୁ, ସେ ଯାଉଛି ଚାଉଳ ରପ୍ତାନୀର ଚୋରା ମୁହାଁଣ ଆବିଷ୍କାର କରିବାକୁ । ଭାବି ଆନନ୍ଦ ଲାଗିଲା । ଆପଣା ସୁଦକ୍ଷପଣରେ ଆପେ ଅଭିଭୂତ ହୋଇପଡ଼ିଲା ।

କିଛି ଆଗରେ ବାଟ କରରେ ଗଛ ତଳେ ଗୋଟିଏ ପରିବାର ରୋଷେଇ ସାରି ଖିଆପିଆ କରୁଛନ୍ତି । ଉତାଣି ପିଲାଟିଏ ମାଟିରେ ଚିତ୍ ହୋଇ ଶୋଇ ଗୋଡ଼ ହାତ ଛାଟି ଛାଟି କାନ୍ଦୁଛି । ଫୁର ଫୁର ମୁଣ୍ଡୀ, ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯୁବତୀଟିଏ ତା'ର ଖାଇବାପତ୍ର ଛାଡ଼ିଦେଇ ଅଇଣ୍ଠା ହାତରେ ଛାତି ଉପରୁ ଛିଣ୍ଡା ଲୁଗା କେରାକ ଓଟାରି ଦେଇ କ୍ଷୀର ଦେବାକୁ ଧାଇଁଗଲା, ମା'ର ଚୀର ଦରଶୃଙ୍ଖଳା କନାପରି ଓହଳିଛି । ପିଲାଟିକୁ ଜାକି ଧରି ବିଦେଶୀ ଆଗନ୍ତୁକକୁ ଅନେଇଁ ରହିଲା । ସତେକି ଦେହ ନାହିଁ, ଖାଲି ମୁଣ୍ଡର ଅଲରା ବାଳ ଆଉ ଉଦାସ ମଳିନ ଆଖି ଦୋଟି । ସେ ଆଖିରେ ନାହିଁ ସମ୍ବାଦ ପାଇଁ ଆଗ୍ରହ, କାହାର ବଡ଼ତି ପ୍ରତି ଭୂକ୍ଷେପ, ଦୁନିଆଁ ଆଡ଼କୁ ଖୋଲାଥିଲେ ବି ଭିତରକୁ ତା'ର ଦୃଷ୍ଟି, କାହିଁ ତଳକୁ, ତଳିତଳାନ୍ତ ଜୀବନୀଶକ୍ତିର ଜାଙ୍କି ଉପରକୁ, ଯେଉଁଠି ଶେଷ କ୍ଷୁଧା ବି କାଟେ, ଶେଷ ସ୍ନେହ ବି ସନ୍ତାନକୁ ଘୋଡ଼େଇ ରଖେ । ଆଉ ତିନିଜଣ ଭାତ ଖାଉଛନ୍ତି, ବୁଢ଼ା, ବୁଢ଼ୀ, ଦେଣ୍ଡାପୁଅ । ଖାଲି ହାଡ଼, ଚମ, କୋରଡ଼ ଆଉ ବେତାଏ ଲେଖାଁ ବାଳ । ଆଉ ଚକ ଚକ ଆଖି । ଖାଇବା ଭାତ ଶିଆଳିପତ୍ର ଉପରେ ଉପରେ ଚକ ଚକ କରୁଛି । ଭାତ ଖିଆ, ଖିଆ ନୁହେଁ କୁକୁରପରି ଗାବୁ ଗାବୁ କରି ଗେପା ମାରିବା । ଗଛ ତଳେ ପନ୍ଦ ଭଙ୍ଗା ଚେପା ଡେକ୍‌ଚି ହାଣ୍ଡି ଓ ଚୁଲି । ଏକାଥରକେ ସମୁଦାୟ ଦୃଶ୍ୟ ରମେଶକୁ ଯେପରି ଆମନ୍ତ୍ରଣ କଲା ।

''ବିନୁ, କିଏସେ ଏମାନେ ?''

''ତଳ ଦେଶର ତେଲଙ୍ଗୁ ଲୋକ ଆଜ୍ଞା, ପେଟ ବିକଳରେ କେତେ ଏମିତି ଏ ଜଙ୍ଗଲରେ ପଲ ପଲ ହୋଇ ବୁଲୁଛନ୍ତି ।''

''ଘର କୋଉଠି ?''- ବିନୁ ପଚାରିଲା ।

ତିନିଥର ପଚାରିଲା ପରେ ଖାଇବା ପତ୍ରରୁ ମୁହଁ ନ ଟେକି ବିରକ୍ତ ହେଲାପରି ବୁଢ଼ା କହିଲା, ''ସୀମାଚଳମ୍ ।''

ବିନୁ ରମେଶକୁ ବୁଝେଇଦେଲା, ଏ ଆସିଛି ତିରିଶି କୋଶ ଦୂରରୁ । ସୀମାଚଳମ୍ । ''ଆଗେ ତ ଆମ ଓଡ଼ିଶାରେ ଥିଲା ।'' ଓଡ଼ିଶା ଇତିହାସ ମନେ ପଡ଼ିଗଲା, ପର୍ବତପରି ଠିଆହେଲା, ମାଟି କୁନ୍ଦପରି ସାନ ହୋଇଗଲା, ଗହୀର ହୋଇ ମିଶିଗଲା ସେହି ଭୋକିଲା ଯୁବତୀମା'ର ଆଖି ଦିଓଟିରେ । ପିଲାକୁ କ୍ଷୀର ଦେଉଛି, ଆଉଁସୁଛି । ଓଡ଼ିଶାରେ ଆଉ ନାହିଁ ସେ ଦେଶ, ପୃଥିବୀରେ

ଅଛି, ସେ ଦେଶରେ ମଣିଷ ଅଛନ୍ତି, ତାଙ୍କର ଭାତ ନାହିଁ ।

''ବହୁତ ଏମିତି ବୁଲୁଛନ୍ତି ଆଜ୍ଞା, ବଣ ଜଙ୍ଗଲକୁ ଡ଼ରୁ ନାହାନ୍ତି, ବାଘ ଭାଲୁକୁ ଡ଼ରୁ ନାହାନ୍ତି, ସବୁଠୁ ବଡ଼ ଡ଼ର ତ ଆପଣା ପେଟକୁ, ଆଉ କାହାକୁ ?''

''ସତ କଥା, ସତ କଥା'' କନ୍ଧ ବୋଝିଆ ପାଳି ଧରିଲେ, ସେମାନେ କତିକି ଲାଗି ଆସିଲେଣି । ବୁଢ଼ା କନ୍ଧ କହିଲା, ''ଭୋକ ଲାଗିଲେ କି ଦୁଃଖ ପଡ଼ିଲେ ସମସ୍ତେ ସମାନ । ହେଇ ଦେଖ ଆମକୁ କେଡ଼େ ଭୋକ ଲାଗିଲାଣି । କେଉଁଠି ଭାତିଆ ଦେବ ଯେ ଚପରାସୀ ବାବୁ ।''

ଚୁପ୍ ହୋଇ ରମେଶ ଆଗେ ଆଗେ ଚାଲିଲା ।

ହଠାତ୍ ଲାଗିଲା, ଯେପରିକି ତା'ର ଉଦ୍ଦେଶ୍ୟ ଗୋଳମାଳ ହୋଇଯାଇଛି । ସେ ନ୍ୟାୟ କରିବାକୁ ଚାହେଁ । କିନ୍ତୁ ନ୍ୟାୟର ସଂଜ୍ଞା ଭୁଲି ହୋଇଯାଇଛି ।

ସିଧା ବାଟରେ ଚଳନ୍ତି ନୀତି ଉପରେ ହିଁ ସେ ନିର୍ଭର କରିଛି, ମୁଣ୍ଡପାତି ଘେନିଛି ଛପା ଆଇନକୁ, ଲେଖା ନିୟମକୁ, ତା ପଛ ଆଡ଼କୁ ଉଙ୍କି ମାରିବାହିଁ ତା ପକ୍ଷରେ ଦୋଷାବହ ବୋଲି ହୃଦ୍‌ବୋଧ କରିଛି । ବର୍ତ୍ତମାନ ବି ସେହିପରି । କେବେ କେବେ ଦେଖିଛି ଛପା ଆଇନ ଓ ଦାଣ୍ଡନ୍ୟାୟ ପଡିଛି ଅମେଳ, କିନ୍ତୁ ମନକୁ ଆଶ୍ୱାସ ଦେଇଛି, କର୍ତ୍ତବ୍ୟ କଠୋରହିଁ, ସେ ଯନ୍ତ୍ରର ଘୂର୍ଣ୍ଣନ । ପେଟ ବିକଳରେ ଜଣେ ଚୋରି କରିଛି, ବର୍ଷକର ପିଲାକୁ ଛାତିରେ ଜାକି ଗର୍ଭିଣୀ ସ୍ତ୍ରୀ କଚିରିଘର ପିଣ୍ଡାରେ ଗଡ଼ି ଗଡ଼ି କାନ୍ଦିଛି, ତା'ର ପୋଷଣାହାରି ଆଉ କେହି ନାହିଁ, କିନ୍ତୁ ଚୋର ଜେଲ ଯିବା କଥା,ଜେଲ ଯାଇଛି । ଜଣେ ପାଞ୍ଚଥର ଚୋରି କରି ଦଣ୍ଡ ଭୋଗିଲାଣି, ଷଷ୍ଠଥର କାହା ବାଡ଼ିରୁ କଖାରୁଟିଏ ଚୋରି କରି ଧରା ପଡିଛି । ପୂର୍ବ ଦୁଷ୍କୃତ ପାଇଁ ଦଣ୍ଡ ବଢିଯିବା ନିୟମରେ ତାକୁ ହୋଇଛି ଦଶ୍ବର୍ଷ ଜେଲ୍,ସେ ଯାଇଛି । କଠୋର ଏ କର୍ତ୍ତବ୍ୟର ଧାରା,ଯନ୍ତ୍ରର ଘୂର୍ଣ୍ଣନ । ନାଉଳ ଧରିବାକୁହିଁ ହେବ ।

ହାଟର ଘୋ ଘା ଶୁଭିଲା । ଗୋଲ୍ଲୁ ଛାଲର ଆଇଁସିଣିଆଁ ପଚାଳିଆ ଗନ୍ଧ ନାକରେ ବାଜିଲା । ହଠାତ୍ ବଣ ଭିତରୁ ତା ପଛକୁ ତା ପଛକୁ ହୋଇ ମଣିଷ ବାହାରି ପଡୁଛନ୍ତି, ବୋଝ, ଭାର, ଭାରରେ ଦୁହା ହୋଇ ଛୋଟ ପିଲା, ଗୋଡ ବନ୍ଧା ହୋଇ ମୁଣ୍ଡ ତଳକୁ ହୋଇ ଗୋଛା ଗୋଛା କୁକୁଡା, ନାନାବିଧ ପଣ୍ୟଦ୍ରବ୍ୟ- ଆଉ ଚାଉଳ । ଗୋଲାରେ ଦେଖା ଦେଇ ଦଣରେ ଅଦୃଶ୍ୟ ହୋଇ ଯାଉଛନ୍ତି ହାଟ ମୁହାଁ । ଶିକାର ଅତି ପାଖରେ । ରମେଶର ଛାତି ତାଳି କଲା । ପଥରକୁ ପଥର ତଳକୁ ଡ଼େଇଁ ଡ଼େଇଁ ଗଲାବେଳେ କହିଲା, ''ବିନ୍ଦୁ, ଏଥର ।''

ହାଟ ଦିଶିଲା । କିଳିବିଲି ଜନ୍ଦାପିମ୍ପୁଡ଼ି ପରି ମଣିଷ । ଗୁଡ଼ାଏ ରଙ୍ଗ, ଗୁଡ଼ାଏ ଗନ୍ଧ, ଗୁଡ଼ାଏ କୋଳାହଳ । ବହୁତ ଛାଲ ବିକ୍ରି ହେଉଛି, ପବନରେ ସେହି ଗନ୍ଧ । ଧାଡ଼ି ଧାଡ଼ି ଗନ୍ଧ ଶୁଖୁଆପସରା । ମାଛି ବେଢ଼ିଛନ୍ତି, ମଣିଷ ବେଢ଼ିଛନ୍ତି । ପାଖ ବଣରୁ ଚୋରା ମଦର ଗନ୍ଧ ।

ଘାଉଡ଼ା କୁକୁର ପରି କୁଷ୍ଠରୋଗୀ, ଯକ୍ଷ୍ମ ରୋଗୀ, ଖାସୁଲା ଖାସୁଲା କନ୍ଧ ପିଠିରେ କୁଲାପରି, ଢ଼ାଲା ପରି ଅରାଏ ଲେଖା କଞ୍ଚା ଯକ୍ଷ୍ମ ଘା', କଳା କଳା ପୋତକ ପାଖକୁ ପାଖ ଲାଗି ଲାଗି ବସିପଡ଼ିଛନ୍ତି । ଘଷାଘଷି ଠେଲାଠେଲି ହୋଇ ସୁସ୍ଥଲୋକ, ପୁରୁଷ, ସ୍ତ୍ରୀ ।

ରମେଶର ନିଘା ପଡ଼ିଗଲା ଗୋଟିଏ ଯୁବତୀ ଉପରେ- ଚମ୍ପା ଫୁଲ ଗୋରା, ବଳିଲା ବଳିଲା ହାତଗୋଡ଼ ଗରି ଗରି, କନ୍ଧ ଦେଶର ସୁନ୍ଦରୀ । ଫାଳେ ଗାଲ ଗୋଟାଏ ଯକ୍ଷ୍ମ ଘା', ଆଉ

ଫାଳକ ଟହ ଟହ ନାଲି । ସେଠିବି ରୋଗ । ତଥାପି ସେ ଫୁଲ ନାଇଛି, ମୁଆଁ ଟୋବେଇ ଟୋବେଇ ଗତିରେ ଯୌବନର ଲହଡ଼ି ଖେଳାଇ ଚାଲିଛି ।

ଆଉ କଣେଇ କଣେଇ ଚାହୁଁଛି, ଆଖି ହସୁଛି, କନ୍ଧ ଦେଶର କଉତୁକୀ ଝିଅ ଆଖିରେ ଡ଼ାକୁଛି- ଖେଳିବୁ ଆ ।

ରମେଶ ଆଖି ବୁଜିଦେଇ ହାଟ ମଝିରେ ଗଛକୁ ଆଉଜିଗଲା । କାନରେ ବାଜିଲା ହାଟର ଘୋ ଘା । ସ୍ମରଣରେ ସେହି ଘା-ଗାଲ ହସ-ଆଖି ଯୁବତୀ । ଆଉ ପାହାଡ଼ ଉପରେ ନାଟ କରୁଥିବା କନ୍ଧ ପିଲାଏ ।

ଆଉ ଅଗନାଗ୍ନି ବନସ୍ତ ମଝିରେ ଗୋଟିକିଆ ମୁଣ୍ଡିଆ ଆଗରେ ମଣିଷର ଜାର, ରାଉ ରାଉ ପବନ, ବା ବତାସିରେ ଚୁଲି ନିଆଁ ନିଭୁ ନାହିଁ ।

ଡ଼ାଳୁଅ ଧାନ ପରି ମଣିଷ, ପାଣି ଯେତେ ବଢ଼େ ଧାନ ଗଛ ସେତେ ଉଞ୍ଚ ହୁଏ । ଗାଲରେ ଯଇ୍ ଓ କୁଷ୍ଠ ମୁହଁରେ ହସ ଓ ମୁଆଁ । ବହୁ କଷ୍ଟରେ ଫୁଟିଛି ଗୋଲାପ, ତା'ର ପାଖୁଡ଼ା ପୋକ ଦାଉରେ କେମ୍ପା । ଝଡ଼ୁ ପଛେ, ହସୁଛି ।

ବିନୁ ଫ୍ଲାସ୍କ ଖୋଲି ଚା' ଢ଼ାଳିଲା । ''ଆଜ୍ଞା-'' ରମେଶ ଆଖି ଖୋଲିଲା । ତା'ର ଚାରିପାଖେ ଭିଡ଼ ବଢୁଛି । କାନ ପାଖେ ବିନୁ କହିଲା, ''ଚାଉଳ ବହୁତ ବିକ୍ରୀ ହେଉଛି, ସବୁ ଧରା ପଡ଼ିବ ଏଠି ନୁହେଁ, ହାଟ ସେମୁଣ୍ଡରେ ଘାଟି ଯାଗା ଅଛି, ହାଟରୁ ବାହାରିଯିବାପାଇଁ ଗୋଟିଏ ଗାଡୁଆ ଗୋହିରି, ସେଠି ଢ଼ିପ ଉପରେ ଚାଳି ଖଣ୍ଡେ ଅଛି ।'' ହସି ଦେଇ କହିଲା, ''ମଞ୍ଚାରେ ବସି ଜୀଆଦ ମାରିଲା ପରି !''

ସେଇଠିକି ଅଡେଇ ନେଇ ଚାଲିଲା । ଗୋଟିକିଆ ଚଉକିରେ ବସେଇ ଦେଇ କହିଲା, ''ଯାଏଁ ମୁଁ ଏଥର ସବୁ ଯୋଗାଡ଼ କରି ଆସେଁ ।''

ହାଟ ଶେଷରେ ଗହୀର ଗୋହିରି ବାଟ, ଦି' ପାଖେ ଢ଼ିପ, ଢ଼ିପ ଉପରେ ସ୍ଥାନେ ସ୍ଥାନେ ଗୋଟିକିଆ ଚାଳିଟି । ରମେଶ ବସିରହିଲା । ଆରପାଖ ଢ଼ିପ ଉଞ୍ଚକୁ ଚଢ଼ି ଗୋଟିଏ ମୁଣ୍ଡିଆ ହୋଇଛି । ତା' ଉପରେ ଗୋଟିଏ କନ୍ଧ ବସ୍ତି । ଦୁଆରେ ଦଉଡ଼ିଆ ଖଟ ପଡ଼ିଛି । କୁକୁର ବସିଛନ୍ତି । ଗୁଡ଼ାଏ ପିଲା ଗୋଟାଏ ବଡ଼ ଢୋଲ ଉପରେ ମନଇଚ୍ଛା ଦୁଡୁମ୍ ଦୁଡୁମ୍ ପିଟୁଛନ୍ତି । ଗୋଟାଏ ଦୁଆର ମୁହଁରେ ଜଣେ ବୁଢ଼ା ବସି ବାନ୍ତି କରୁଛି, ବୁଢ଼ୀ ତା'ର ପିଠି ସାଉଁଳୁଛି । ନିଶ୍ଚୟ ମ୍ୟାଲେରିଆ ଜର । ଭଙ୍ଗା କାନ୍ଥକୁଢ଼ ଉପରେ ଗୋଟାଏ ଗାରଡ଼ ଠିଆହୋଇ କ'ଣ ଗଛ ଚୋବୋଉଚି । ରମେଶ ସେହି ବସ୍ତିର ଦୃଶ୍ୟ ଉପରେ ଆଖି ରଖି ସମୟ ଟାଳିଗଲା । ନାକପୁଡ଼ା ଭିତରୁ ହାଟର ଧୂଳି ରୁମାଲରେ ରଗଡ଼ି ଲାଗିଲା । ଝାଳ ପୋଛିଲା । ବେଳ ଗଲାଣି, ମାଘର ଖରାଛାଇ ଲମ୍ବେଇଲାଣି, ଫିକା ପୃଷ୍ଠପଟ ଆଗରେ ଲମ୍ବିଛି ଗୋଟିଏ ସାଧାରଣ ବସ୍ତିର ଚିତ୍ର, ସରଳ ଘରକରଣାରେ ।

ହଠାତ୍ ସେପଟୁ ଉଠିଲା କାନ୍ଦଣାର ରୋଳ । ସବୁ ଘରୁ ଲୋକ ବାହାରିପଡ଼ି ଗୋଟାଏ ଘରକୁ ଛୁଟିଗଲେ । ପିଲାଏ ବାଜା ବନ୍ଦ କରି ଦୌଡ଼ିଗଲେ । ଘର ମୁଁହରେ ଓ ଦୁଆରେ ଲୋକଙ୍କର ଭିଡ଼ । ଆପଣା ଗାଲ ଛାତି ଆଞ୍ଜୁଡ଼ି ଚୁମୁଟି ସମସ୍ତେ ଭେଁ ଭେଁ କାନ୍ଦିଲେ । କ୍ରମେ ସେ କାନ୍ଦଣା ଧରିଲା ଗୋଟାଏ ଛନ୍ଦର ବାଟ । ସମବେତ ମରଣ ବାହୁନା ଚାଲିଲା ।

''ଅଲୋ ! ଅଲୋ ! ହାତେୟୁଁ ! ହାତେୟୁଁ ।''

(ହାୟ ! ହାୟ ! ମରିଗଲା ! ମରିଗଲା !)

ବିନୁ ଆସି ପହଞ୍ଚିଗଲା ।

''ସବୁ ବନ୍ଦୋବସ୍ତ କରିଦେଇଛି ଆଜ୍ଞା । ହାଟରେ ପାଇକମାନେ ଥିଲେ । ସମସ୍ତିଙ୍କି ଅଡ଼େଇ ଘେନି ଆସିବେ ।''

''ଏ କ'ଣ ହେଲା ବିନୁ ?''

''କିଏ ଜଣେ ମରିଗଲା ଆଜ୍ଞା, ମାଳଜର, ଏଥିରେ ଆଉ ନୂଆ କ'ଣ ଅଛି ?''

ବିନୁ ତା' ପଛଆଡ଼େ ଠିଆହୋଇ ରହିଲା ।

ରମେଶ ସେହି କାନ୍ଦଣାରେ ମନଦେଲା । ନିତି ନୂଆ, ନିତି ପୁରୁଣା । ଆଉ ଚକ ଘୁରୁଛି, ଜନ୍ମ, ମୃତ୍ୟୁ, ପ୍ରଜନନ । ସବୁ ଦୃଶ୍ୟ ତରଳିଯାଇ ବଦଳିଗଲା । ଆଖି ଆଗରେ ଭାସିଉଠିଲା ଉତ୍ତର ବାଲେଶ୍ୱରରେ ଆପଣାର ଗାଁ କାନ୍ତିପୁର । ତା'ର ଘର, ବାପମା, ପଡ଼ିଶାମାନେ, ଚିହ୍ନା ବୁଢ଼ା ଚିହ୍ନା ପିଲାମାନେ, ଚିହ୍ନା ଝିଏ । ଗାଁ ମଶାଣିରୁ ଗାଁ ମଝିରେ ଚଣ୍ଡୀମଣ୍ଡପ । ଆଉ ମୃତ୍ୟୁ, ଜନ୍ମ, ପ୍ରଜନନ । ଆଉ ଏଠାପରି ସେଠି ବି ସୁଖିପ୍ରିୟ, ଶାନ୍ତିପ୍ରିୟ ମଣିଷ; କଜିଆ ମୂଳେଇ ଯାଏନାହିଁ, କାହାରି ଅନିଷ୍ଟ ନକଲେ ବି କଷଣ ଭୋଗେ ।

ଅଲୋ ଅଲୋ ହାତେୟୁଁ ହାତେୟୁଁ ।

କେତେ ଯାଇଛନ୍ତି- କେତେ କେତେ- ଅନ୍ଧାର ରାତିରେ କାଉଁରିଆ ନିଆଁ ଜାଳି ଗାଁଲୋକେ ଡ଼ାକନ୍ତି- ''ଅନ୍ଧାରେ ଆସ ଆଲୁଅରେ ଯାଅ- ଆଲୁଏ ଯାଅ-''

ଆଉ ସାମ୍ନାରେ ଏଇ ମରଣର ସମତଳ, ସେଠି ଭାଷାର ଭେଦ ନାହିଁ, ଦେଶର ବାଡ଼ ନାହିଁ, ସମସ୍ତେ ସମାନ ଓ ଚିରନ୍ତନ ।

ପଛଆଡ଼େ ଠିଆହୋଇ ବିନୁ ବି ଘର କଥା ଭାବୁଛି । ସେଠି ତା'ର ସାନ ଭାରିଯା । ବିଣି କ'ଣ ଆସୁଥିବ ? ... ଠାଇ କରି ଆପଣା ଗାଲରେ ଏକ ଚାପୁଡ଼ା ମାରିଲା । ରମେଶ ଅନେଇଲା । ବିନୁ ଗାଲ ସାଉଁଳୁଛି । କହିଲା, ''ଏଠି ବହୁତ ବଡ଼ ବଡ଼ ମଶା ଆଜ୍ଞା, କାମୁଡ଼ିଲେ ବିନ୍ଧେ ।''

ରମେଶ ଚମକି ପଡ଼ିଲା ।

ଆପଣାକୁ ଦେଖିଲା ବିଛଣାରେ ପଡ଼ି କମ୍ପୁଛି । କୁହ୍ମାଟୁଆ ଆଖିପରି ଆଖି, ଭାଲୁ ପରି କଳା, ଆରମ୍ଭ ହେବ ଶହେ ତିନିରୁ, ଇଚ୍ଛା ହେବ କାମୁଡ଼େ, ମାରି ଗୋଡ଼ାଏଁ, ଗାଳିଦିଏଁ- ବାନ୍ତି, ଟାଡି, ଟାଡି- ତା'ପରେ ?

ଜନ୍ମ, ମୃତ୍ୟୁ, ପ୍ରଜନନ, ଜନ୍ମ, ମୃତ୍ୟୁ-

ଆଇନ୍ ମନେପଡ଼େ ନାହିଁ । ଜନ୍ମ, ମୃତ୍ୟୁ. ମଣିଷ...

ହଠାତ୍ ଯେପରିକି ନୂଆ ଆଖିରେ ସେ ଦେଖିଲା । ଲୋକ ଚାଲିଛନ୍ତି, ବହୁତ ଲୋକ । ଅନ୍ଧାରରେ ହଜି ଯାଉଛନ୍ତି । ଧାର ସରୁନାହିଁ । ଚାଲିଛନ୍ତି । ଚାଲିଛନ୍ତି । ହାଟ ଭାଙ୍ଗି ଆସୁଛି । ଲୋକ ଚାଲିଛନ୍ତି । ଯେପରିକି ସେ ଜଣ ଜଣ କରି ସମସ୍ତିଙ୍କି ଚିହ୍ନେ । ଘରେ ଅଭାବ, ପଦାରେ ପେଷଣ । ତଥାପି ଚାଲିଛନ୍ତି । ତୁଣ୍ଡରେ ସେହି ଅଖଳା ଭାଷା । ଜାତି ଭିନେ ନୁହେଁ ବୋଲି ଭିନେ ନୁହେଁ ସେହି

ମଣିଷ ସେମାନେ । ତା'ର ଗ୍ରାମଲୋକେ, ଚିହ୍ନାଲୋକେ । ଧାର ଭିତରେ ଅଣ୍ଟା ସଳଖେଇ ପିମ୍ପୁଡ଼ି ଚାହୁଁଛି ପିମ୍ପୁଡ଼ିକୁ ମୁହାଁମୁହିଁ, ଶୁଖିଲା ଆଖିରେ ହସ ଉଛୁଳେଇ କହିଯାଉଛି, ତୁମେ ଆମେ ଏକା ଜାତି ଭାଇ, ଗୋଡ଼ରେ ଚାଲୁଁ ହାତରେ କାମ କରୁଁ । ତୁମର ଆମର ଏକା ଦେଶରେ ଘର ଭାଇ, ଏଇମାଟି ଉପରେ ଆକାଶ ତଳେ, ତୁମର ଆମର ଏକା ଶତ୍ରୁ ଭାଇ- ଯେ ଆମ ମୁଁହରୁ ଆଧାର ଛଡ଼େଇ ନିଏ ଗୋଡ଼ରେ ଦଳିଦିଏ ଉପରେ କୁଡ଼ାଏ ଓଡଲା ପାଉଁଶ-

ପିମ୍ପୁଡ଼ିର ଧାର ଚାଲିଛି, ତା'ର ମନ ଗହୀରରେ ହସ ଆଉ ନିଆଁ ମିଶି ଅଖଣ୍ଡଦୀପ ଜଳୁଛି-

ପଦାରେ ଗହଳି ଶୁଭିଲା । ପାଇକମାନେ ଆସୁଛନ୍ତି, ପଛେ ପଛେ ଟୋକେଇ ଓ ବସ୍ତା ଧରି ମାଳେ ଲୋକ । ରମେଶ ମୁହୂର୍ତ୍ତକେ କର୍ମଚାରୀ ପାଲଟିଗଲା, ଠିଆହୋଇ ପଡ଼ି ପାଇକମାନଙ୍କ ସଲାମ ନେଲା । ବିନୁ ଆଗକୁ ଚମକିଗଲା, କହିଲା, ''ପଞ୍ଝାକୁ ପଞ୍ଝା ଧରି ଧରି ଆଣୁଛନ୍ତି ।'' ପାଇକମାନେ କହିଲେ, ''ଏଇ ଦେଖିବ! ହୁଅନ୍ତୁ କେମିତି ଏ ହାଟରୁ ଯେ ଲୋକେ ଲୁଚେଇ ଲୁଚେଇ ଚାଉଳ ନେଇ ପଳେଉଥିଲେ ତଳଦେଶକୁ । ଉପରେ ଉପରେ ଲଙ୍କା ମରିଚ ହଳଦୀ ଧୂଆଁପତ୍ର ବିଛାହୋଇଛି, ତଳେ ଅଛି ଚାଉଳ । ଏ ଦେଶରୁ ନେଇ ସେ ଦେଶରେ ବେଭାର କରିବେ, ସେଠି ବି ଚଢ଼ା ଦରରେ ବିକିବେ, ଚାଉଳ ଗଣ୍ଡାକ ପାଇଁ ଲୋକଙ୍କ ରକ୍ତମାଉଁସ ଝୁଣିକରି ଖାଇବେ ।''

ସାମ୍ନାରେ କଙ୍କାଳଥାଟ, ବିଦା କାଠ ପରି ଛାତିହାଡ଼, ଦେହର ଚମ ଚେମେଣି ଦେହପରି ଓହଳିଛି, ଅଣ୍ଟା ପିଠି ଲାଗିଯାଇଛି ଖାଲି ବେଡାଏ ଦେଡାଏ ନୁଖୁରାବାଳ, ଢୁଳୁଢୁଳୁ ଆଖି । ମଣିଷ ନୁହନ୍ତି ମଣିଷର ପ୍ରେତ ଆତ୍ମା ଆପଣା ଭାଷାରେ ଅଳି କରୁଛନ୍ତି, ବୋବାଳି ଛାଡୁଛନ୍ତି, ପେଟକୁ ପାଟିକୁ ଦେଖାଇ ଅଙ୍ଗଭଙ୍ଗୀ କରୁଛନ୍ତି, ଡ଼ାଙ୍ଗ ସରସର ଲମ୍ବା ହାତ ହଲାଉଛନ୍ତି ।

ସେପାଖ ବସ୍ତିରେ ମଢ଼ଟା ପଦାକୁ ଆସିଲା ବୋଧହୁଏ, ଠେଲାପେଲା ହୋଇ ମଣିଷ, ଆଗକୁ ପଛକୁ ମୁଣ୍ଡ ଝାଙ୍କି ଝାଙ୍କି ସମସ୍ୱରରେ ସଙ୍ଗୀତ କଲାପରି ବାହୁନା- ''ଅଲୋ ଅଲୋ ହାତେୟୁଁ, ହାତେୟୁଁ, ପାପୁ-''

ଆଉ ଢ଼ିପ ତଳେ ଗୋହିରିରେ ବାଡ଼େଇ କଚାଡ଼ି ହୋଇ ଜୀଅନ୍ତା ପ୍ରେତ-

''ଏ ବାବୟା, ଏ ତଣ୍ଡ୍ରି-''

ଆଉ ପାଇକଙ୍କ ଗର୍ଜନ, ବିନୁ ଓଡ଼ିଆର ରଡ଼ି, ''ଏଇ ସେମିତି କ'ଣ ହଉଚ, ଖୋଲ ଖୋଲ, ଦେଖାଅ ଚାଉଳ-''

ରମେଶ ଆଖି ବୁଜିଦେଲା, ତା'ର ମୁଣ୍ଡ ଭିତର ଦୋହଲି ଯାଉଛି, ଦେହରେ ବାଟର କ୍ଳାନ୍ତି, ଆଉ ଭୋକ, ଆଖି ବୁଜି ତ ଦେଖୁଛି ଗୋଳିଆଗୋଳି ଆଉଟା ଆଉଟି ମଣିଷ, ଯେଉଁ ଗାଲରେ ଯକ୍ ରୋଗ, ମୁହଁରେ ହସ, ଦେହରେ ଧୋକଡ଼ା ଚମ, ଆଖି ଟିକ୍ ଟିକ୍ । ଯେଉଁ ମରଣର କାନ୍ଦଣା, ଅଭାବର ଆର୍ତ୍ତନାଦ, ଗାଡୁଆ ଆଖିର ଗହ୍ୱର ତଳେ ନିଆଁ ଆଉ ତୋଫାନ । ଆଖି ଖୋଲି ଚାହିଁଲା, ଲାଗିଛି ଚିତ୍କାର- ''ଏ ବାବୟା, ଏ ତଣ୍ଡ୍ରି-'' ହେ ବାବୁ, ହେ ବାପା, ଦେଖ ଆମ ଅବସ୍ଥା ଥରେ । ନିଘା ପଡ଼ିଲା ଆଗରେ ଠିଆ ହୋଇଛି ବରଡ଼ାପତ୍ର ତିଆରି ଡେଙ୍ଗା ମଣିଷ, ଦୁଇ ଲମ୍ବା ହାତ ମୁଣ୍ଡ ଉପରକୁ ଟେକି ଥର ଥର ହୋଇ ନଇଁପଡ଼ିଲା, ସତେ ଅବା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିବ, ସେଇଠି,

ପମ୍ପା ଘାଗଡ଼ା ଗଳାରେ ରଡ଼ି ଦେଲା, ''ଏ ବାବୟା, ଏ ତଣ୍ଡି-'' ଗଡ଼ ଗଡ଼ ହୋଇ ଆପଣା ବୋଲିରେ କରୁଣ ଅନୁନୟ ଗାଇଗଲା, ଭାଷା ନ ଜାଣିଲେ ବି ତା'ର ଭାବ ବୁଝିହୁଏ । ତଳେ ମୁଣ୍ଡ କୋଡ଼ି ତା'ର ପାଦ ଆଡ଼କୁ ହାତ ବଢ଼ାଇ ବେକ ଭାଙ୍ଗିଦେଇ ଉପରକୁ ମୁହଁ ଟେକି ସଳଖେ ଚାହିଁଲା । ସେହି ଚାହାଣି ରୂପ ନେଲା କେଉଁ ଏକ ଚିହ୍ନା ମଣିଷର, ରମେଶର ଚିହ୍ନା, ସମସ୍ତିଙ୍କର ଚିହ୍ନା, ଭୋକ ଉପାସରେ ଛଟପଟ ହେଲେ ଆପଣା ଭିତରୁ ବାହାରି ଦର୍ପଣରୁ ଚାହିଁ ରହେ । ଲାଗିଲା, ଏହି ସମସ୍ତେ ଯେପରି ତା' ଚିହ୍ନା ପରିଚ ଲୋକ, ତା'ର ଗ୍ରାମ ଲୋକ, ଦେହର ଚେହେରାକୁ ଆଉ ତା'ର ନିଘା ନାହିଁ, ଭାବର ଚେହେରା ତା'ର ଅତି ଚିହ୍ନା । ସାମ୍ନାର ଏ ଲୋକଟି ଯେପରି ତା'ର ହଜିଲା ସପନାଦାଦି, ସେମିତି ଅଲରା ବାଳ, ସେମିତି ପାଗଳପରି ରୁଢ଼, ହାଡ଼ର ଧଡ଼ିଏ ଧଡ଼ିଏ ଖାଲି ଗାଡ଼ମୟ । କେବଳ ସେ ଆହୁରି କ୍ଳାନ୍ତ, ଆହୁରି କ୍ଷୁଧିତ, ମୃତ୍ୟୁର ବିଭୀଷିକା ଆଗରେ ଭୟଭୀତ । ସେହି ନିଶୁଆ ବଙ୍କା ବୁଢ଼ା ଯେପରିକି କାନ୍ତିପୁରର ଅକାମୀ ଅରକ୍ଷ କମ୍‌ହାର ବୁଢ଼ା ।

ଏଇ ଚମତ୍କାରମୟ ଟୋକାପଲକ କାଲି ଥିଲେ ତା'ର ଗାଁର ଟୋକା, ସେମାନେ ତା'ରି ଦାରିରେ ପଶି କଷି ପିଚୁକି ଚୋବୋଉଥିଲେ, ଏଇ ଦଦରା ନାହା ପରି ସ୍ତ୍ରୀଲୋକମାନେ କାଲି ଥିଲେ ତା' ଗାଁର ସ୍ତ୍ରୀଲୋକ, ପାହାନ୍ତିଆରୁ କିଲ୍‌କାଲିଆ ହୋଇ ବାଦବୁଦିଆ ଲଗାଇ ପତ୍ର ଗୋଟାଇବାକୁ ଧାଇଁଥିଲେ । ରମେଶ ଆଖି ଲୁଚେଇ ମୁହଁପୋତି ଠିଆହୋଇ ରହିଲା, ତୁଣ୍ଡରୁ ଖାଲି ପଦେ କଥା-

''ଯାଅ-ଯାଅ-ଯା ଚାଲି-''

କ'ଣ କହୁଚି ଏ ବାଦୁଟା ? ବିନାୟକ ଚପରାସୀ ତରତର ହୋଇ ଭାବିଗଲା । ସତେ ଏମାନଙ୍କୁ ଚାଉଳ ଘେନି ଚାଲିଯିବାକୁ ଛାଡ଼ିଦେଉଛି । ଆତୁର ହୋଇ ପାଟି କଲା, ''ଆଜ୍ଞା-ଆଜ୍ଞା-ଆଜ୍ଞା-''

ତା'ଠୁ ସେହି ଏକା ଉତ୍ତର- ''ଛାଡ଼ିଦିଅ- ବେଳ ଯାଉଚି- ଯାଅ ଭାରି ଯା' ଚାଲି-''

ସଂସାରକୁ ଚିହ୍ନେ ନାହିଁ, ନରମ୍ ପୁତୁପୁତୁ ମନ, ଟୋକା ଲୋକ, ଗଜୁରା ଗଜୁରା ଅଧା ନିଶ, ଢ଼କଢ଼କିଆ ଟୋକା ଖଣ୍ଡେ, ଏଇଟା ନୁହେଁ ଅଧିକାରୀ, ପ୍ରକୃତ 'ଅଧିକାରୀ' ବାଘ ପରି ମଣିଷ, ଛେଃ ଏଇଟା । ବିନାୟକ ଓଡ଼ିଆ ତା'ର ଅଭିଜ୍ଞତାର ଇତିହାସ ଆଉଣ୍ଡି ଲାଗିଲା, ସେ ବହୁତ ଦେଖିଛି । ତା'ର ଓଠ ବଙ୍କା ହୋଇ ରହିଲା, ନୁହେଁ ହସ, ନୁହେଁ ବିଦ୍ରୂପ ।

ରମେଶ ଠିଆହୋଇ ରହିଲା, ତା'ର ଚେତନା ଆଗରେ ଇତିହାସ ନଥିଲା, କପିଳେନ୍ଦ୍ର ନାହାନ୍ତି, ପୁରୁଷୋତ୍ତମ ନାହାନ୍ତି, କୋଣାରକ ନାହିଁ, ଦେଶ ଓ ଜାତିର ପିଞ୍ଜରଗଢ଼ା ମଣିଷର ବିଶିଷ୍ଟ ରୂପ ନାହିଁ, ଇତିହାସର ଅର୍ଥ ନାହିଁ, କିଛି ନାହିଁ, ଚାରିଆଡ଼େ ଖାଲି ପିମ୍ପୁଡ଼ି, ପିମ୍ପୁଡ଼ି, ଭୋକିଲା ପିମ୍ପୁଡ଼ି ବଞ୍ଚିବା ପାଇଁ ଆଧାର ବୋହି ନେଉଛନ୍ତି, ଆଉ ପିମ୍ପୁଡ଼ି ଧାର ଏକାଠି ହୋଇ ମାନ୍ଦା ବାନ୍ଧୁଛି ନୂଆ ଅଭିଯାନ ପାଇଁ- ସେ ବଞ୍ଚିବାକୁ ଚାହେଁ ।

ଶୀତେଇ ଉଠିଲା, ଖରା ଗଲାଣି, ଚାରିଆଡ଼େ ଖାଲି କୁହୁଡ଼ି, ମାଘର ଶୀତ ଅନୁଭବ କଲା ।

# ଟଡ଼୍‌ପା

ଟଡ଼୍‌ପା ତା' ନାଁ । ସବୁ ନାଁ ପରି ସେ ବି ଗୋଟିଏ ପ୍ରତୀକ; ସେତିକି ତା'ର ସାର୍ଥକତା । ନ ହେଲେ ସେ ନାଁ ଶୁଣି କିଛି ବୁଝି ହୁଅନ୍ତା ନାହିଁ ।

ଏପରି ବି ସମ୍ଭବ ଯେ ଭାଷାର ନିୟମପ୍ରକାରେ ସେ 'ଶବ୍ଦ'ର ବି କିଛି ଅର୍ଥ ଥିବ; କିନ୍ତୁ ନାଁର ଅର୍ଥ ମଣିଷର ବ୍ୟକ୍ତିତ୍ୱ ସଙ୍ଗେ ସମ୍ପର୍କ ରଖେ ନାହିଁ । ତା'ର ସମ୍ପର୍କ ନାଁ ଦେବା ଲୋକମାନଙ୍କ ସଙ୍ଗେ ଏଠି ତା'ର ଆଲୋଚନା ବି କାମରେ ଲାଗିବ ନାହିଁ । କାରଣ 'ଟଡ଼୍‌ପା' ଲୋକଟି ଓଡ଼ିଶାର ବାସିନ୍ଦା ହେଲେ ବି ତା ଭାଷା ଓଡ଼ିଆ ନୁହେଁ, କନ୍ଧ । ଆଉ ତାଙ୍କ ସମାଜରେ ବାପ ମା' ମନଇଚ୍ଛା ବି ନାଁ ଦେଇପାରନ୍ତି ନାହିଁ । ଗାଁଲୋକେ ଉତ୍ସୁକ ହୋଇ ରୁଣ୍ଡିଥାନ୍ତି । ପୁରୋହିତ ଗୁଡ଼ିଏ ନାଁର ତାଲିକା ଗାଉଥାନ୍ତି । ପୂଜା ଚାଲିଥାଏ । ଭୂଇଁରେ ପଡ଼ିଥାଏ ସଦ୍ୟ ବଳି ପଡ଼ିଥିବା କୁକୁଡ଼ାର ରକ୍ତ, ଅରୁଆ ଚାଉଳ, ମୁରୁଜ, ଝୁଣା ଧୂଆଁ ଉଠୁଥାଏ । କାଳିସୀବୁଢ଼ୀ ମନ୍ତ୍ର ପଢ଼ି ପଢ଼ି ପାଣିହାଣ୍ଡିରେ ଗୋଟିକ ପରେ ଗୋଟିଏ ଚାଉଳ ପକଉଥାଏ । ଯେଉଁ ନାଁ କହୁ କହୁ ଚାଉଳଟା ସିଧା ଠିଆ ହୁଏ ବୋଲି କାଳିସୀ ଆଖିକି ଦେଖାଯାଏ, ସେଇ ରହେ ନାଁ । ଟଡ଼୍‌ପା'ର ଆରମ୍ଭ ଅନୁମାନ କରିହୁଏ । ଅର୍ଥ ନୁହେଁ ।

ସେଥିପାଇଁ ପୁଣି ଅଣ୍ଡାଳି ଅଣ୍ଡାଳି ଚାଲିଯିବାକୁ ପଡ଼ିବ ଉଜାଣି, କେଉଁ ନାଁ ଜଣା ନାହିଁ ଅତୀତକୁ, ଯେତେବେଳେ ନାଁର ମାଳିକା ତିଆରି ହେଲା । କିଏ କଲା ? କାହିଁକି କଲା ?

ନିୟମଗିରି ପର୍ବତର 'ଡ଼ଂଗ୍ରିଆ କନ୍ଧ'ଙ୍କୁ ପଚାରି ଦେଲା ମାତ୍ରେ ଅନ୍ୟାନ୍ୟ ଗବେଷଣା ଭଳି ଏ ଗବେଷଣାର ବି ସହଜ ଉତ୍ତର ସଙ୍ଗେ ସଙ୍ଗେ ମିଳିଯାଏ- ''କିଏ କଲା ? ଆମେ ନା ତୁମେ ? ମହାପୁରୁ କଲା, ସେ ତ ସବୁ କରିଚି । ଏ ଡ଼ଙ୍ଗର ବଣ ଉପର ତଳ ଦିନ ରାତି ସବୁ । ପିଲାଲୋକ ପରି କେତେ ପଚାରି ହଉଚୁ ? ଜାଣି ନାହୁଁ କି ସେ କଲାବୋଲି ?''

ତେଣୁ ବୁଝିହୁଏ, ଯେଉଁ ମହାପ୍ରଭୁ ଏ ସବୁ ସୃଷ୍ଟି କରିଛନ୍ତି, ତା ଭିତରେ ପୁଣି କୋରାପୁଟ୍ ଜିଲ୍ଲାରେ ପାଞ୍ଚହଜାର ଫୁଟ୍ ଉଚ୍ଚତାକୁ ଚଢ଼ିଥିବା ନିୟମଗିରି ପର୍ବତ, ଆଉ ତା' ଉପରେ ବାସ କରି ରହିଥିବା ଡ଼ଂଗ୍ରିଆ କନ୍ଧ, ଆଉ ତାଙ୍କର ରୀତିନୀତି, ଭାଷା, ସେହି ସୃଷ୍ଟି କରିଛନ୍ତି ଏଇ ସୁନ୍ଦର ନାଁଟି- ''ଟଡ଼୍‌ପା'' କି ଉଦ୍ଦେଶ୍ୟରେ ସେ ଜାଣନ୍ତି ଓ ତାଙ୍କରି ଇଚ୍ଛା ଅନୁସାରେ ଏ ବ୍ୟକ୍ତିଟି ପାଇଛି ସେ ନାଁ ।

ଗଡ଼ ଗଡ଼ ଖଡ଼୍‌ଖାଡ଼୍ ଧଡ଼୍‌ଧାଡ଼୍ ପଥର ଗଛ ଉପରେ ଠକ୍‌ଠାକ୍ କୁରାଢ଼ି ପାହାର ଆଉ ଗୋଟାଏ ଅଛିଣ୍ଡା ବିସ୍ମୃତି । ସେ ଟଡ଼୍‌ପାର ନାଁ ସଙ୍ଗେ ସଙ୍ଗେ ମନେପଡ଼ିଯାଏ, କାହିଁ ପଚିଶି ମାଇଲ ଲମ୍ବ କୋଡ଼ିଏ ମାଇଲ ଓସାର ଥାକ ଥାକ ପର୍ବତ ବିମାନ ଖଞ୍ଜା ଉଚ୍ଚ ମାଳଭୂମି, ଗଛ ହାଣି ହାଣି

ସେ ଲଣ୍ଡା ହୋଇଛି କେଉଁଠି ପର୍ବତଯାକ ଚାଷ କି ତୋଟା, କଦଳୀ ଲଗା ହୋଇଛି ତ କେଉଁ ପାହାଡ଼ର ଗୋଡ଼ଠୁଁ ମୁଣ୍ଡଯାକେ, କମଳାତୋଟା, ସପୁରି ତୋଟା, ପଣସ ତୋଟା ଲାଗି ରହିଛି ତ ମାଇଲ ମାଇଲ, ଆଉ କେଉଁଠି ଚାଷ କରୁ କରୁ ମାଟି ଧୋଇଯାଇ ଦିଶୁଛି ଖାଲି କଳାପଥର, ସେଠି ଘାସ ବି ଗଜୁରେ ନାହିଁ, ଶିଉଳି ଲାଗେ ଆଉ ଶୁଖେ, ଆଉ କେଉଁଠି ଏବେ ବି ଭୀଷଣ ବଣ, ଲଟିବଣ କି ବାଉଁଶବଣ କି ନାନାଜାତି ଗଛର ବଣ, ତିନି କୋଶ ପାଞ୍ଚ କୋଶ ଛାଡ଼ି କେଉଁଠି ଗୋଟାଏ ଗାଁ, ସେଠି ପାଞ୍ଚ ଘର କି ପନ୍ଦର ଘର, ତା'ପରେ ପୁଣି ଜଙ୍ଗଲ ।

ବାହାରୁ ଆସିଥିବା କର୍ମୀଦଳ ଟଡ଼୍‌ପାକୁ ହାବୋଡ଼ିବା ଆଗରୁ ସେମିତି ଭୀଷଣ ବଣ ଭିତରେ ପାହାଡ଼ ଢ଼ାଲୁଏ ଢ଼ାଲୁଏ ଓହ୍ଲେଇ ଓହ୍ଲେଇ ଚାଲିଥିଲେ । ସେତେବେଳେ ରାତି ସାଢ଼େନଅଟା, ଅଗ୍ରହଣର ଶେଷ । ସହଜେ ତ ନିୟମଗିରିରେ ଖରାଦିନେ ବି ଶୀତ । ପାଦରେ ଚାଲି ପାହାଡ଼ରୁ ଓହ୍ଲେଇବାର ତାତିରେ ଦେହ ଭିତରେ ଉଷୁମ ଲାଗୁଥିଲେ ବି ଦେହକୁ ଢ଼ାଙ୍କି ରଖିଥାଏ ଶୀତ କିନ୍ତୁ ସେଥିରେ କସ ଲାଗୁ ନଥାଏ, ସେ ହୋଇଯାଇଥାଏ ଏକ ପ୍ରକାର ଦେହସହା । ଶୀତକୁ ଅନୁଭବ କରିବାକୁ ତାଙ୍କ ମନରେ ଫାଙ୍କା ଅବସର ବି ନଥାଏ । ସେମାନେ ସାତଜଣ ମଣିଷ । ଅନ୍ଧାରି ବଣ ତଳେ ତଳେ ସଂକୀର୍ଣ୍ଣ ଚଲାବାଟ ସରୁ ସୁଡ଼ଙ୍ଗ ପରି ଗୋଡ଼ି ପଥର ଖାଲ ଢ଼ିପ ଉପରେ ବଙ୍କେଇ ବଙ୍କେଇ ଓହ୍ଲେଇ ଯାଇଛି । ସେ ବାଟରେ ଗୋଡ଼ ଚିପି ଚିପି ଜଣକ ପିଛା ଜଣେ । ବାଟ କରେ କରେ ଗଛ ଗହଳି ଉହାଡ଼ରେ ପାତାଳପରି ଝୋଲା ଭିତରେ ଝରଣା ବହିଯାଉଛି, ତା'ର ଜଳପ୍ରପାତମାନଙ୍କର ଶବ୍ଦ ଶୁଭେ, ସବୁବେଳେ ଡ଼ର, ଟିକିଏ ଅଣହୁସିଆର ହେଲେ ଝୁଣ୍ଟିପଡ଼ିଲେ କାଳେ ସେହି ଝୋଲା ଭିତରକୁ । ଆଗରେ ଗୋଟିଏ ବୋଲି ସାନ ଟର୍ଚ୍ଚଲାଇଟ୍, ସାତ ଦିନ ନିୟମଗିରି ଗସ୍ତ ପରେ ତା' ବ୍ୟାଟାରି ହୀନବଳ ହୋଇଯାଇଛି । ରଖି ଥୋଇ ବ୍ୟବହାର କରିବାକୁ ପଡ଼େ; କିନ୍ତୁ ସବୁବେଳେ ଆଶଙ୍କା ଥାଏ କାଳେ କେତେବେଳେ ବାଁ ପାଖ ପାହାଡ଼-ଢ଼ାଲୁର ଘଞ୍ଚ ବଣ ଭିତରୁ ହଠାତ୍ ମହାବଳ ବାଘ ଢ଼ିଆଁଟାଏ ମାରିବ, ନହେଲେ ସାମ୍ନାରେ ଆସି ଠିଆ ହୋଇଯିବ । ତେଣୁ ସେମାନେ ବେଳେବେଳେ କଥାଭାଷା ହେଲେ ବି ତୁନିତାନି ଚାଲିଥାନ୍ତି । ଆଉ ବେଳେ ବେଳେ ଯେଉଁଠି ବାଁ ପାଖରେ ବଣ ଗହଳିରେ ଟିକିଏ ଫାଙ୍କା ଫାଙ୍କା ଥାଏ ଯେମିତି ନିଃଶ୍ୱାସ ମାରିବା ଜଳା, ଅନ୍ଧାର ଭିତରେ ହଠାତ୍ ସେମାନେ ଦେଖନ୍ତି ଜହ୍ନରାତି, ପାହାଡ଼ି ନଈର କଳା ପାଣିରେ ଶହ ଶହ ଜହ୍ନ ଭାସିଯାଉଥାନ୍ତି । ସେ କରେ ଚାଷ ହୋଇଥିବା ପାହାଡ଼ ଉପରେ ବାଜ୍ରା ଗାଣ୍ଡିଆ ମକା ମୁଆଁ, ମାଣ୍ଡିଆ ଫସଲ ଏକାଠି ଆଉଟି ହୋଇ ଯାଇଥାଏ ଜହ୍ନ ଆଲୁଅ ଝାଲୁଝାଲୁ କୁହୁଡ଼ି ଭିତରେ । ଆଖି ଆଗରେ ଝୁଲୁଥାଏ କାହିଁ ଦିଗ ଶେଷକୁ ଲମ୍ବିଥିବା ସ୍ୱପ୍ନ ପରି ଛବି । ନାନା ମାୟାରୂପ; କେତେ ପର୍ବତ, କେତେ ଉପତ୍ୟକା, କେତେ ଢ଼ିପ ଢ଼ାଲୁ ଗଛ କି ପଥର ତା ତଳେ ଖପିଯାଆନ୍ତି । ଆଲୁଅ ଅନ୍ଧାର, ନିବାପଣ ଆଉ ଛାଇମିଶା ନାନା ରୂପ । ସବୁ ଚୁପ୍‌ଚାପ୍ ।

ସେମାନେ ଟିକିଏ ଅଟକିଯାଇ ସେ ଦୃଶ୍ୟକୁ ଅନାଇଁ ରହନ୍ତି । ଯେମିତି ସେହି କ୍ଷଣକ ସେମାନେ ଆପଣାକୁ ଭୁଲିଯାଇ ତା' ସହିତ ହୁଅନ୍ତି ଏକ । ସେମିତି ନିଛାଟିଆ ଶୁନ୍‌ଶାନ୍ । ପୁଣି ସେମିତି ପୂର୍ଣ୍ଣ, ସେମିତି ସ୍ଥିର ଆଉ ସମୟହୀନ, ସେମିତି ହଜିଲା ହଜିଲା ।

ଆଉ ସେମିତି ଥାଇ ନ ଥିଲାପରି- ମାୟା ସୃଷ୍ଟି ।

ତା'ପରେ ପୁଣି ଅନ୍ଧାରି ଗୁମ୍ଫାଭିତରକୁ ଗଡ଼ାଣି ଗାତ ବଣ ସନ୍ଧିରେ ସରୁ ଚଲାବାଟରେ ଓହ୍ଲେଇ ଯାଆନ୍ତି । ଛାତି ଚାଉଁ କରେ । ଜଣା ନାହିଁ କେତେବେଳେ ସେ ବାଟ ସରିବ । ବଣଜନ୍ତୁ, ଅନହୁତି ଜଚଡ଼ା ଓ ଅଜଣା ବିପଦର ଆଶଙ୍କାରେ ବେଳେ ବେଳେ ନିଶ୍ୱାସ ରୁନ୍ଧି ହୋଇଯାଏ ।

ସେମାନେ ନିୟମଗିରି ପର୍ବତର ଡଙ୍ଗ୍ରିଆ କନ୍ଧ ଗାଁ ବୁଲି ଦେଖି ଆସିଥିଲେ ଶୁଭ ଉଦ୍ଦେଶ୍ୟ ଘେନି । ଆଗରେ ଉନ୍ନୟନ କର୍ମଚାରୀ ପରଶୁରାମ, ସରୁ ଡେଙ୍ଗା ଦରବୁଢ଼ା ପୁରୁଖା କର୍ମଚାରୀ, ବଣ ପାହାଡରେ ରହୁଥିବା ଜଙ୍ଗଲୀ ଲୋକଙ୍କ ଆର୍ଥିକ ଉନ୍ନୟନ ପନ୍ଥା ଚିନ୍ତା କରୁ କରୁ ବହୁତ ମାଳ ବୁଲିଛନ୍ତି, ଆସିଛନ୍ତି ଭୁବନେଶ୍ୱର ରାଜଧାନୀରୁ । ତାଙ୍କ ପଛରେ ନୃତତ୍ତ୍ୱବିଦ୍ ଅଧ୍ୟାପକ ଭରତ; ନାନା ଜାତି ନାନା ଶ୍ରେଣୀର ଲୋକଙ୍କ ସାମାଜିକ ଅବସ୍ଥା ସେ ଅଧ୍ୟୟନ କରିଛନ୍ତି । କିଛି ଲେଖା ଛପାଇଛନ୍ତି, ଆହୁରି ଦେଖିବା ଜାଣିବା ପାଇଁ ତାଙ୍କର ବହୁତ ଆଗ୍ରହ,ଆକାରରେ ସାନ, ଗୋଲଗାଲ, ଉତ୍ସାହୀ,ବୟସ ଚାଳିଶି । ତାଙ୍କ ପଛରେ ସ୍ଥାନୀୟ କର୍ମଚାରୀ ହରିପାଣି,ପାହାଡ ତଳେ ତାଙ୍କର ଉନ୍ନୟନ କାମ; କିନ୍ତୁ ଏଣିକି ଯେ ନିୟମଗିରି ମାଳରେ ବି କାମ ହେବ ବୋଲି ପରିକଳ୍ପନା ହେଲାଣି,ତେଣୁ ଦେଖିବାକୁ ଆସିଛନ୍ତି । ତିରିଶି ବର୍ଷ ବୟସର ଛେଚାପିଟା କଳା ମୁଗୁନି ଦେହ । ତାଙ୍କ ପଛରେ ଜଙ୍ଗଲ ଗାର୍ଡ ମଧୁସୂଦନ, ବୟସ ଅଠାବନ ପାଖ, ବାଙ୍ଗର ବୁଢ଼ା, ଶୀର୍ଣ୍ଣଦେହ,ନିୟମଗିରି ମାଳରେ ସେ ବହୁତ ବର୍ଷ ବୁଲିଥିବାରୁ ସେଠି ତାଙ୍କର ଚିହ୍ନାଜଣା ଅଛି । ସେ ଆସିଥିଲେ ଏ ବାବୁମାନଙ୍କୁ ସାଙ୍ଗଦେଇ ବୁଲେଇ ନେବାକୁ। ତାଙ୍କ ପଛେ ପଛେ ତିନିଜଣ ଚପରାଶି,ମକର,ନଜିରୁ, ରାମାୟା-ଏମିତି ସାତ ଜଣ ।

ବିଷମକଟକ ରେଲ୍ୱେଷ୍ଟେସନରୁ ବାହାରି ନିୟମଗିରି ପର୍ବତମାଳକୁ ଚଢ଼ି କେତେ ଗାଁରେ ରହି ରହି ସେମାନେ ଓହ୍ଲେଇ ପଡୁଛନ୍ତି ମୁନିଗୁଡା ରେଲ୍ ଷ୍ଟେସନରେ ବାହାରିବେ ବୋଲି । ସିଧା ବାଟରେ ଏ ଦୁଇ ଷ୍ଟେସନ ପନ୍ଦର ମାଇଲ ଛଡା,କିନ୍ତୁ ଠାଏ ପର୍ବତ ଚଢ଼ି ଆଉ ଠାଏ ଓହ୍ଲେଇଲା ବେଳକୁ ପ୍ରାୟ ପଇଁଚାଳିଶି ମାଇଲ୍ । ସେହି ମାଳରେ ସାତ ଦିନ ବିତିଛି । ଚାଲିବାକୁ ସଡକ ନାହିଁ, ଝୋଲା- ନଈ ଦାଢ଼େ ଦାଢ଼େ ତୀଖ ସରୁବାଟ, ଛାତିଫଟା ଚଢ଼ାଣି, ଦେଢ଼ହଜାର ଫୁଟ ଉଚ୍ଚତାରୁ ପାଖ ପାଖ ପାଞ୍ଚ ହଜାର ଫୁଟ ଯାଏ, ମୁଣ୍ଡବୁଲା ଗଡ଼ାଣି, ବାଟେ ବାଟେ ଥାକ ଥାକ ପରସ୍ତ ପରସ୍ତ ପାହାଡ଼କୁ ଚଢ଼ିବା ଓହ୍ଲେଇବା । ରହିବାକୁ ଘର ନାହିଁ, ଡଙ୍ଗ୍ରିଆ କନ୍ଧର ଆତିଥେୟତା ଘେନି ତା'ର ଟିକି ଟିକି ଗୁମ୍ଫାପରି ଚାଳ କୁଡ଼ିଆର ସଂକୀର୍ଣ୍ଣ ଅନ୍ଧାରି ପିଣ୍ଡାରେ ବାସ, ପିଇବାକୁ ପାହାଡ଼ି ନଈର ପାଣି, ସେଥିରେ ଭାସି ଆସେ ଉପର ମୁଣ୍ଡର ଗାଁର ଧୂଆ ଧୋଇ ଯେତେପ୍ରକାର, କନ୍ଧ ଗାଁରେ ଦି' ତିନିଦିନ ଛାଡ଼ି ମଇଁଷି ହଣା ହୁଏ, ଝରଣାରେ ମାଉଁସ ଧୂଆ ହୁଏ, ସେଥିରେ ତା ପୁଟା ଆଦି ବି ଫୋପଡ଼ା ହୁଏ । ସେଠି ଡାକ୍ତରଖାନା ନାହିଁ, ଡାକଘର ନାହିଁ । ଦୋକାନ ବଜାର ନାହିଁ, ପୁଲିସ୍ ଥାନା ନାହିଁ, କୋଠାଘର ତ ଦୂର କଥା, ଖପର୍ଲି ଘର ନାହିଁ, କୂଅ ପୋଖରୀ ନାହିଁ, ସଭ୍ୟତାର ଚିହ୍ନ ବର୍ଣ୍ଣ ବି ନାହିଁ । ଖାଲି ପର୍ବତ, ଜଙ୍ଗଲ, ପର୍ବତଯାକ ନାନା ସ୍ଥାନରେ ଫସଲ, ଆଉ ଫଳତୋଟା । ଆଉ ଆଦିମ ଆଦିବାସୀ- ଯାହାଙ୍କ ନାଁ ଡଙ୍ଗ୍ରିଆ କନ୍ଧ, ତାଙ୍କ ସଙ୍ଗରେ କିଛି ଡମ୍ବ ଜାତିର ଲୋକ, ସେମାନେ କାଳକ୍ରମେ ତଳୁ ଉଠି ଯାଇଛନ୍ତି ଜୀବିକା ଅର୍ଜନ ଉଦ୍ଦେଶ୍ୟରେ । କନ୍ଧକୁ ମଦ ଦେଇ କିଛି କିଛି ଟଙ୍କା ଦେଇ ତା' ଫଳଗଛତକ ବନ୍ଧା ନିଅନ୍ତି । ଥରେ ବୋତଲେ ମଦ ଦେଲେ ବର୍ଷକ ପାଇଁ ଗୋଟାଏ କମଳା ଗଛ କି ଚାରିଟା ପଣସ ଗଛ, ଦୁଇଟା ଟଙ୍କା ଦେଲେ ବର୍ଷକ ପାଇଁ ଏକ ପ୍ରକାଣ୍ଡ କଦଳୀବାଡ଼ି, କୋଡ଼ିଏଟା

ଟଙ୍କା ଦେଲେ ମାଣେ ଆକ୍ରାନ୍ତର ସପୁରି ବଣ, ସେହିପରି ଉପାୟରେ ହଳଦୀ, ହରଡ଼, ଜଡ଼ା ନାନାଫସଲ । କନ୍ଧ ତା ହାତରେ କୋଡ଼ି କୋଡ଼ି ବର୍ଷଯାକ ଫସଲ ଲଗାଏ । ରାତିରେ ଶୀତ କାକରରେ ପଡ଼ିରହି ମିରିଗ ସମ୍ବର ଦାଉରୁ ଫସଲକୁ ଜଗେ, ତା'ପରେ ଡ଼ମ୍ବ ସେ ଫସଲତକ ନେଇଯାଏ-ପାହାଡ଼ରୁ ବୋହିଆଣି ହାଟରେ ବିକେ, ଧନ ଅର୍ଜନ କରେ । ଡ଼ମ୍ବ ଆଉ କନ୍ଧ ନିଜ ନିଜ ସମାଜର ଚଳଣି ଅନୁସାରେ ଚଳନ୍ତି । ଡ଼ମ୍ବର ବଡ଼ ବଡ଼ ମେଲା ଫରଚା ଘର, ଓସାର ପିଣ୍ଡା, ସଫା, ଲିପା ପୋଛା, କିଛି କାରୁକାର୍ଯ୍ୟ ଥାଇ କାଠକବାଟ । ତଳର ଲୋକଙ୍କ ପରି ସ୍ତ୍ରୀ ପୁରୁଷ ପରିଷ୍କୃତ ଲୁଗାପଟା ପିନ୍ଧନ୍ତି, କୋଟ୍, କାମିଜ୍, ଶାଢ଼ୀ, ବ୍ଲାଉଜ୍, ଘୋରିହେଲା, ସବୁ ବ୍ୟବହାର କରନ୍ତି, ବଡ଼ି ସକାଳୁ ତା' ଘର ଦୁଆର ମୁହଁ ଓଳିଆପୋଛିଆ ହୋଇ ସେଠି ଗୋବରପାଣି ଛିଞ୍ଚା ହୁଏ, ତା' ପିଲାଏ ବି ଅକ୍ଷର ପାଠ ପଢ଼ନ୍ତି ବି, କେବେ କେବେ ସେ ପୁରାଣ ବୋଲେ, କେହି କେହି ଲୁଗା ବୁଣନ୍ତି । ନ ହେଲେ ଜିନିଷ ବୋହି ହାଟକୁ ନେବା ତା'ର ପ୍ରଧାନ ବୃତ୍ତି । ସେ ବୃତ୍ତିରେ ସ୍ତ୍ରୀ ପୁରୁଷ ଉଭୟେ ଲାଗନ୍ତି । ସେହି ବେପାର ପାଇଁ ଜିନିଷ ସଂଗ୍ରହ କରିବା ସକାଶେ ଆଉ କେତୋଟି ବେପାର ବି କେହି କେହି କରନ୍ତି, ଚୋରାରେ ମଦ ରାନ୍ଧିବା କି ସଂଗ୍ରହ କରିବା, ମାଉଁସ ହେବାକୁ ଗୋରୁ ମଇଁଷି ଆଣି କନ୍ଧକୁ ବିକିବା, ଆଉ କେତେ ଫନ୍ଦି କି ଫନ୍ଦା, ବୃତ୍ତି ଓ ବେପାର ଭିତରେ ସବୁ ଖପି ଯାଏ । ଡ଼ଙ୍ଗ୍ରିଆ କନ୍ଧ ରହେ ଅବର୍ଦ୍ଧା ଧୂଳି ଧୂସରିଆ ଚଳଣି ଘେନି । ପୁରୁଷ ପିନ୍ଧେ କୌପୁନୀ, ସ୍ତ୍ରୀ ତା' ଫେରରେ କମକୁଟ ବୁଣି ତାକୁ ସୁନ୍ଦର କରେ । ସ୍ତ୍ରୀ ତା' ଅଣ୍ଟାରେ ଗୁରାଏ ଖଣ୍ଡେ ତିନି ହାତି ମୋଟା କନା, ପଦାକୁ ବାହାରିଲେ ଆଉ ସେତିକି ଖଣ୍ଡେ ଆଗପଟୁ ଅଣ୍ଟାଠୁ ବେକଯାକେ ଘୋଡେଇ ପକାଏ । ତା'ର ସାଧାରଣ ପରିଧେୟ କୋଚଟ ମଇଳା, ମୁଣ୍ଡବାଳ ଫୁରୁ ଫୁରୁ । ପୁରୁଷ ନାକରେ ବି ମୁଦି ନାଏ, କାନରେ ନାଏ ଶାମୁକା ଓ କାଚଝରା ଫାସିଆ, ମୁଣ୍ଡରେ କପାଳ ଉପରକୁ ଗୋଲକରି ଖିଅର ହୋଇ ପାନିଆ ଖୋଷି ଜୁଡ଼ା ବାନ୍ଧେ, ବେକରେ ରଙ୍ଗ ରଙ୍ଗର କାଚମାଳି ପକାଏ; କାନ୍ଧରେ ଟାଙ୍ଗିଆ ପକାଏ, ଅଣ୍ଟାରେ ଗୋଟାଏ ଚାଖଣ୍ଡେ ଲମ୍ବର ଛୁରୀ ଓହଳାଏ, ହାତରେ ଧରେ ଢ଼ାମଣା କାଠର ଗୋଜିଆ ବାଡ଼ି, ତା' ଉପର ଭାଗକ କମକୁଟ ହୋଇ କଟା ହୋଇଥାଏ । ସ୍ତ୍ରୀ ନାଏ ସରି ସରି ରଙ୍ଗ ରଙ୍ଗର କାଚ ମାଳି, ମୁଦି, ଗିଲ୍‌ଟିର କଂସା ପିତଳର ନାନା ଅଳଙ୍କାର । ପୁରୁଷ ମଦପ୍ରତି ବହୁତ ଆସକ୍ତ । ମିଳିଲେ ଶଲପ ଗଛରେ ଚଢ଼ି ପେଟପୁରା ରସପିଏ, କିଣିବାକୁ ମହୁଲ, ମଦ ମିଳିଲେ ସବୁ ଅର୍ଜନ ସେଇଠି ଅଜାଡ଼ି ଦିଏ, ମାତେ ନିଶାରେ ବେହୋସ୍ ହୁଏ । ଗାଁରେ ଲାଗି ରହିଥାଏ ଯାନିଯାତ, ପୂଜା, ସେଥିରେ ମଇଁଷି ହାଣି ଦେବତାଙ୍କୁ ବଳି ଭୋଗ ଦେଇ ବାଣ୍ଟି ନେଇ ମାଉଁସ କରି ଖାଇବା ଓ ବନ୍ଧୁ କୁଟୁମ୍ବଙ୍କୁ ଭୋଜି ଦେବା । ବର୍ଷଯାକ ଖଟି ଖଟି ଏତେ ଫସଲ ଉପୁଜାଇ ଏତେ ମୂଲ୍ୟବାନ ସପୁରି, କମଳା, ପାଚିଲା କଦଳୀ, ରଙ୍ଗ ହଳଦୀ, ପଣସ, ହରଡ଼, ଜଡ଼ା, ନାନା ଫସଲ ଏତେ ବିପୁଳ ପରିମାଣରେ ଉପୁଜାଇ ତଥାପି ଡ଼ଙ୍ଗ୍ରିଆ କନ୍ଧ ଯେଉଁ ଗରିବକୁ ସେହି ଗରିବ, ବର୍ଷକେ ବର୍ଷା ଚାରିମାସ ଘରେ ଶସ୍ୟ ଅଭାବ ପଡ଼େ ଆମ୍ବ କୋଇଲି, ଶାଗ । ବାଉଁଶ କରଡ଼ି, ଶଲପ କାଠର ଧୂଳି କେତେ ପ୍ରକାର କେତେ ପ୍ରକାର କରି ତହିଁରେ କେବେ କିଛି ସୁଆଁ ମାଣ୍ଡିଆ ଥିଲେ ମିଶାଇ ସେ ଦିନ ବିତାଇ ଦିଏ ।

ସେମାନେ ଦେଖି ଆସିଥିଲେ ସେହି ଚଳଣି, କର୍ମଚାରୀ ପରଶୁରାମ୍, ଅଧ୍ୟାପକ ଭରତ,

କର୍ମଚାରୀ ହରିପାଣି । ଜଙ୍ଗଲ ଗାର୍ଡ଼ ମଧୁସୂଦନ ଯେତିକି ବୁଝିପାରେ କହିପାରେ ଡ଼ଙ୍ଗ୍ରିଆ କନ୍ଧର ଭାଷା ତା'ର ସୁବିଧା ନେଇ ଡ଼ଙ୍ଗ୍ରିଆ କନ୍ଧକୁ ନାନା ପ୍ରଶ୍ନ ପଚାରି ନାନା ସମ୍ବାଦ ସେମାନେ ତାଙ୍କ ଟିପା ଖାତାରେ ଟିପିଥିଲେ । ସାତଦିନ କାଳ ଡ଼ଙ୍ଗ୍ରିଆ କନ୍ଧର ଉପକାର ପାଇଁ ସେମାନେ ବହୁତ ଆଲୋଚନା କରିଥିଲେ, ଧନ୍ଦି ହୋଇଥିଲେ । ତାଙ୍କଠିଁ ଆନ୍ତରିକତା ଏପରି ପ୍ରବଳ ହୋଇ ଫୁଟି ଉଠିଥିଲା ସତେ ଯେପରି ସେହି ସାତଦିନ କାଳ ସେମାନେ ମନୁଷ୍ୟଜାତି କହିଲେ ଭାବି ପାରୁଥିଲେ କେବଳ ଡ଼ଙ୍ଗ୍ରିଆ କନ୍ଧଙ୍କୁ, ସ୍ଥାନ କହିଲେ ନିୟମଗିରି ପର୍ବତର ମାଳଭୂମିକୁ, ସେହି ଚିନ୍ତନର ନିଶାରେ ସେମାନେ ବାଟରେ ଓ ତାଙ୍କ ରହଣି ଗାଁ ମାନଙ୍କରେ ବହୁତ ବୁଲି ବୁଲି ନିଘା କରୁଥିଲେ, ସେହି କାରଣରୁ ସେଦିନ ମୁଟାଗୁଣିରୁ ବାହାରୁ ବାହାରୁ ତାଙ୍କୁ ଚାରି ବାଜିଯାଇଥିଲା । ତାଙ୍କର ଜିନିଷ ବୁହା ଭାରୁଆ ପାଞ୍ଚଜଣ ତା'ର ଘଣ୍ଟାକ ଆଗରୁ ବାହାରି ସାରିଥିଲେ । ସେମାନେ ଡ଼େରି ପାଇଁ ଚିନ୍ତିତ ନଥିଲେ କାରଣ ମଧୁସୂଦନ ତାଙ୍କୁ କହିଥିଲେ ମୁଟାଗୁଣିରୁ ମୁନିଗୁଡ଼ା ପର୍ବତ ଓହ୍ଲାଣିବାଟ ତିନିକୋଶରୁ ଟିକିଏ ବେଶୀ ଯଦିଚ ସେ ଦୂରତା ପ୍ରାୟ ପନ୍ଦର ମାଇଲ । ତା'ପରେ ବାଟରେ ଯାଉ ଯାଉ ଦୃଶ୍ୟ ଦେଖୁ ଦେଖୁ ଡ଼ଙ୍ଗ୍ରିଆ କନ୍ଧଙ୍କ ବିଷୟରେ ସେମାନେ ଆଲୋଚନା କରନ୍ତି, ଅଧ୍ୟାପକ ଭରତ ବହୁତ ଫଟୋ ଉଠାଇ ସାରିଥିଲେ, ଆହୁରି ଫଟୋ ଉଠାନ୍ତି, ଡ଼େରି ହେଲା ।

ସମସ୍ୟା ତ ଜଣେଇଜଣା, ସମାଧାନ କ'ଣ ? ତାହାରି ଉତ୍ତର ଖୋଜୁ ଖୋଜୁ ବାଟ କଟିଯାଏ ।

ପଚାରିବାରୁ ଜଙ୍ଗଲ ଗାର୍ଡ଼ ମଧୁସୂଦନ ତା' ମତବ୍ୟକ୍ତ କଲା ।

''ମୁଁ ଦେଖି ଦେଖି ବୁଢ଼ା ହେଲି ଆଜ୍ଞା । ୟାଙ୍କୁ ଯେମିତି ଦେଖିଥିଲି ଯେ ସେମିତି ଅଛନ୍ତି । ଏଡ଼େ ଭଲ ବିଚାରମନ୍ତ ମଣିଷ ଏ ଦୁନିଆଁରେ ନଥିବେ, ଅନ୍ୟାୟ କି ମିଛର ପାଖ ପଶିବେ ନାହିଁ, ଯାହା ଦେବେ କି କରିବେ ବୋଲି କଥା ଦେଇଥିବେ ସେଥିରୁ ତିଳେ ହେଲେ ଏକର ସେକର ହେବେ ନାହିଁ ସିନା, ମାତ୍ର ବଦଳିବାକୁ କହିଲେ ବଦଳିବ ନାଇଁ । ଦାନ୍ତ ଘଷିବେ ନାଇଁ, ଛାନ୍ଦୁ ହେବେ ନାଇଁ, ପାଠ ପଢ଼ିବେ ନାଇଁ, ମଦ ଛାଡ଼ିବେ ନାଇଁ, ଆମେ ଯେତେ ଉପଦେଶ ଦେଲେ ଭଲବାଟ ବତେଇଲେ ଶୁଣିବେ ନାଇଁ, ପୂର୍ବରୁ ତ ଚଳିନାଇଁ ।''

ହରିପାଣି ତାଙ୍କ ମତ ଉପରେ ଜୋର୍ ଦେଲେ- ''ସବୁ ବଦଳି ପାରିବ ଆଜ୍ଞା, ଏମାନେ ଛାଆଁକୁ ଛାଆଁ ବଦଳିବେ । ଆଗ ଦରକାର ପକ୍‌କା ସଡ଼କ, ନିୟମଗିରିର ଅନ୍ଧି ସନ୍ଧି ଯେମିତି ବୁଲି ହେବ । ସଡ଼କ ପଡ଼ି ଅନ୍ଧାରି ବଣ ଖୋଲିଗଲେ ଆଗେ ସଭ୍ୟତା ପଶିଆସେ । ବାହାରୁ କିଏ ଆସିଲେ ତାଙ୍କର ରହିବା ପାଇଁ ଘର ଦରକାର,ପିଇବାକୁ ପାଣି ଦରକାର, ଅନ୍ୟାନ୍ୟ ସୁବିଧା ଦରକାର । ୟାଙ୍କ ଭିତରେ କାମ କରିବାକୁ ବହୁତ କର୍ମଚାରୀ ଦରକାର । ଯେ କାମ ଏକାଠି କୋଡିଏ ପଚିଶି ଲକ୍ଷ ଟଙ୍କାରେ ଆରମ୍ଭ କରିବାକୁ ପଡିବ, ଚାଷ ଆଉ ଫଳ ବଗିଚା କାମ, ଛେଳି ଘୁଷୁରି କୁକୁଡା କାମ, ଇସ୍କୁଲ,ଡାକ୍ତରଖାନା,କଣ କିଛି ଫ୍ୟାକ୍ଟରି, ସବୁ ପ୍ରକାର । ଏତେ କଥା କଣ,ଏଠି ଖୋଜୁ ଖୋଜୁ ଯଦି ଗୋଟାଏ ଖଣି ବାହାରି ପଡନ୍ତା,ବସି ଯାଆନ୍ତା ଗୋଟାଏ ରାଉର୍‌କେଲା, ଏମାନେ ବଦଳିବାକୁ ବେଳ ଲାଗନ୍ତା ନାହିଁ ।''

ଭରତ କହିଲେ, ''ଏମାନଙ୍କୁ ଖାଲି ବଦଳେଇବା ପାଇଁ ପରିଶ୍ରମ କରିବାତ ଉଦ୍ଦେଶ୍ୟ

ରହିବା ଉଚିତ ନୁହେଁ, ଭାବିବାକୁ ପଡିବ କଣ କଲେ ୟାଙ୍କର ଭଲ ହେବ । ଶୋଷଣ ଚାଲିଥିବାଯାକେ ଯେତେ କମେଇଁଲେ ହାତରେ କିଛି ରହିବ ନାହିଁ । ଯେ ଶୋଷଣ କରିଥିଲା ଯେ ଶୋଷଣ କରୁଛନ୍ତି ତାଙ୍କୁ କଣ ଏଠୁ ଘଉଡେଇ ଦେଇ ହେବ ? ସେମାନେ ବି ଏ ଦେଶର ନାଗରିକ; କିନ୍ତୁ ଶୋଷଣ ହୁଏ କାହିଁକି ? ସେ କଣ ଖାଲି ଶୋଷକର ଆକ୍ରମଣ ଯୋଗୁଁ ନା ଶୋଷକଠିଁ ଶୋଷଣ ଲାଗି ନିହିତ ପ୍ରବଣତା ଯୋଗୁଁ ? ଉଭୟେ ଦାୟୀ । ଏଇ ଯେଉଁ ପ୍ରବଣତା ଆମେ ଡଂଗ୍ରିଆ କନ୍ଧଠି ଦେଖି ଆସିଲେଁ ସେ ଏକା ଦିନକେ ଗଢ଼ା ହୋଇନାହିଁ, ସେ ଯେମିତି ବଢ଼ିଛି ମଣିଷ ହୋଇଛି, ଯେତେ ରୁଚି, ରୀତିନିତି, ବିଶ୍ୱାସ ଆବୋରି ଧରିଚି ଜୀବନପ୍ରତି ତା'ର ଯେଉଁ ଦୃଷ୍ଟିଭଙ୍ଗୀ, ଏସବୁ ତାକୁ କରିଛି ଏମିତିଆ । ସେ ତା ଦେବତାମାନଙ୍କୁ ତୁଷ୍ଟି କରିବାକୁ ତା ପିତୃପୁରୁଷ କି ମଲା ହଜିଲାଙ୍କୁ ତୁଷ୍ଟି କରିବାକୁ ମଇଁଷି ବଳିଦେବ, ମଦ ଭୋଜି ଦେବ, ଏଥିରୁ ତାକୁ ନିରସ୍ତ କରିବ କିଏ ? ସେ ଶୀତ କାଳରେ ପାହାଡ଼ରେ ରହେ କାମ କରେ ଫୁଙ୍ଗାରେ ଚଳେ, ତେଣୁ ତା ଦେହ ଉଷୁମେଇଁବାକୁ ମଦ ପାଣି ଖାଇବ । ତା' ପାଇଁ ଅନ୍ୟ ମଉଜ୍ ନାହିଁ, ତେଣୁ ମଦର ମଉଜ୍ ତାକୁ ଦଢ଼ । ମଦ ମଇଁଷି ଚାଲିଥିବା ଯାକେ ସେ ପଇସା ଫୋପାଡୁଥିବ, ଶୋଷଣକାରୀକୁ ଡ଼ାକି ଆଣୁଥିବ । ଶିକ୍ଷିତ ହେଲେ ତା ରୁଚି ବଦଳନ୍ତା; କିନ୍ତୁ ତାର ଆଶଙ୍କା ତା'ର ପିଲା ପାଠ ପଢ଼ିଲେ ପାହାଡ଼ରେ ଫଳଚାଷ କି ଫସଲଚାଷ କରିବ ନାହିଁ, ସେ ଆଶଙ୍କା ବି ଅମୂଳକ ନୁହେଁ, ତେଣୁ ଇସ୍କୁଲ ଖୋଲିଲେ ସେ ପାଠ ପଢ଼ିବାକୁ ନାମଙ୍ଗ । ବଣ ପାହାଡ଼ ଚାଷ ନକଲେ ବଣ ପାହାଡ଼ରେ ତା' ପାଇଁ ଅନ୍ୟ ଜୀବିକା ନାହିଁ; ତାହେଲେ ତାକୁ ଏଠୁ ଚାଲିଯିବାକୁ ପଡ଼ିବ । ମୋଟ ଉପରେ ଶିକ୍ଷିତ ନହେଲେ ସଂଯମ ଓ ନୂଆ ଦୃଷ୍ଟିଭଙ୍ଗୀ ନ ଧରିଲେ ତା ଅବସ୍ଥାର ବିଶେଷ ପରିବର୍ତ୍ତନ ହେଲା ଭଳି ମତେ ଦିଶୁନାହିଁ, ସେଥିପାଇଁ ବହୁତ ଖର୍ଚ୍ଚ, ବହୁତ କର୍ମୀ, ବହୁତ ବ୍ୟବସ୍ଥାତ ନିଶ୍ଚୟ ଲୋଡ଼ା, ଆହୁରି ଦରକାର ବହୁତ ସମୟ । ତା' ମନକୁ ନ ଗଢ଼ି ହଠାତ୍ ତା' ଉପରେ ପରିବର୍ତ୍ତନର ତୋଫାନ ଢ଼ାଳିଦେଲେ ଆମେ ଭଲ କରୁ କରୁ ତା'ର ମନ୍ଦ ହେବ, ସେ ଲଣ୍ଡଭଣ୍ଡ ହୋଇଯିବ ।

ଆଉ ପରଶୁରାମ କହିଲେ-

''ତାହେଲେ କ'ଣ ନିରାଶ ହୋଇ ଆମେ ଖାଲି ଅନେଇଁ ରହିଥିବା ? କେବେ ଲକ୍ଷ ଲକ୍ଷ ଟଙ୍କା ମିଳିବ, ବିରାଟ ବିରାଟ ଅନୁଷ୍ଠାନ ଗଢ଼ା ହେବ, କେବେ କେତେ ବର୍ଷ ପରେ ଡଂଗ୍ରିଆ କନ୍ଧର ଆଜି ଯେଉଁ ପିଲା ଜନ୍ମ ହେଉଛନ୍ତି ସେମାନେ ପାଠ ପଢ଼ି ନୂଆ ମଣିଷ ହୋଇ ନୂଆ ସମାଜ ଗଢ଼ିବେ ସେ ପର୍ଯ୍ୟନ୍ତ ଆମେ ଚୁପ୍ ଚାପ ବସିଥିବା ଆଉ ସେ ଏମିତି ଅଜ୍ଞାନ, ଅଶିକ୍ଷା, ଦାରିଦ୍ର୍ୟ, ଶୋଷଣ ଭିତରେ ନୁହେଁ-ମଣିଷ-ନୁହେଁ-ଜନ୍ତୁ ହୋଇ ଦିନ କାଟୁଥିବ ? ତାହେଲେ ତା ବିଷୟରେ ଏତେ ସେତେ ଆମେ ଜାଣି ମଧ ଲାଭ କ'ଣ ? ଖାଲି ଆମର କୁତୂହଳ ମେଣ୍ଟାଇବା ଆଉ ଜ୍ଞାନ ବଢ଼ାଇ ସାଇତି ରଖିବା ? ଏତିକି ? ନା, ତା ଅପେକ୍ଷା ଆମେ କିଛି କାମ ଆରମ୍ଭ କରିଦେଉଁ । ସବୁ ଗାଁ ନ ହେଉ, କେତେଖଣ୍ଡି ଗାଁ ନିଆଯାଉ । ଘର ଘର ବୁଲି ସେମାନଙ୍କ ସଙ୍ଗେ ସମ୍ପର୍କ ରଖାହେଉ । ତାଙ୍କୁ କୁହାପୋଛା କରି ମଙ୍ଗାଯାଉ । ସେ ଯାହା ବିକିବେ ସରକାରଙ୍କୁ ବିକନ୍ତୁ, ଯାହା କିଣିବେ ସରକାରଙ୍କଠୁଁ କିଣନ୍ତୁ । ସେଥିପାଇଁ ଗୋଟିଏ ଦୋଓଟି ଦୋକାନ କରାଯାଉ । ତାଙ୍କୁ ତାଙ୍କ ଆବଶ୍ୟକମାନିଆଁ ସରକାରଙ୍କଠୁଁ ଋଣବାଡ଼ି ଦିଆଯାଉ ଯେମିତି ସେମାନେ ଆଉ କାହା କବଳରେ ନ ପଡ଼ିବେ । ତାଙ୍କୁ ଭଲ ବୁଦ୍ଧି

ଦେବାପାଇଁ ତାଙ୍କ ଭିତରେ କର୍ମୀକେନ୍ଦ୍ର ଖୋଲାଯାଉ । ଇସ୍କୁଲଟିଏ ବସୁ । ସେମାନେ ଯେମିତି ଦେଖିବେ ଯେ ଯେ ନୂଆ ବାଟରେ ତାଙ୍କର ରୋଜଗାର ବଢୁଛି କ୍ରମେ ତାକୁ ହିଁ ଆଶ୍ରା କରିବେ । ବାହାରର ଶିକ୍ଷିତ ଲୋକଙ୍କର ଅଧିକରୁ ଅଧିକ ସଂସ୍ପର୍ଶରେ ଆସୁ ଆସୁ ତାଙ୍କର ରୁଚି ଓ ସ୍ୱଭାବ ବି ବଦଳିବ । ଏହାରି ସଙ୍ଗେ ସଙ୍ଗେ ଚାଲୁ ତାଙ୍କୁ ଆହୁରି ଭଲ ଫଳ-ଚାଷୀ କରି ତାଲିମ କରାଇବା କାମ, ଆହୁରି ଫଳଗଛ ଲଗାଇବା କାମ । କ୍ରମେ ହାଓ୍ୱା ଖେଳିଯିବ, ଅନ୍ଧାର ଭିତରେ ଟିକିଏ ଆଲୁଅ, ଆଉ ଟିକିଏ, ସେଇଠୁ ଆହୁରି ।''

ଅଧ୍ୟାପକ ଭରତ କହିଲେ, ''ଏତିକିରେ ଯଦି ସମସ୍ୟାର ସମାଧାନ ହୋଇଯାଆନ୍ତା ! କିନ୍ତୁ କ'ଣ ହୋଇପାରିବ ? ସେମାନେ ପଇସା ଅରଜି ଶିଖିବେ, କିନ୍ତୁ ତାକୁ ସାଇତିବା କି ଖର୍ଚ୍ଚ କରି ଶିଖିବାପାଇଁ ଯୁଗ ପାହିଯିବ । ଯେ ତାଙ୍କ ଫସଲ ବୋହି ନେଉଛି, ଠକିଠାକି ହାତ କଲା ଉତ୍ତାରୁ ସେ ଫସଲକୁ ପାହାଡ଼ରୁ ତଳକୁ ଆଣିବା ପାଇଁ ପରିଶ୍ରମ କରୁଛି ଆଉ ତାକୁ ବିକି ପଇସା କମେଇବା ପାଇଁ ବୁଦ୍ଧି ଖଟେଉଛି ସେ ଫସଲ ନ ନେଇ ଆହୁରି ସହଜରେ ଫସଲର ବିକ୍ରିଧନକୁ ମଦ ଠେକି ଦେଖାଇ ହାତକୁ ନେଇ ଯାଇପାରିବା, ସେ ନ ନେଲେ ତା'ପରି ଆଉ କିଏ ଜଣେ ନେଇଯିବ । ପଇସା ଲୋଭ ନୂଆ ଅନର୍ଥ ଶିଖାଇବ । ତାଙ୍କ ସରଳତା, ସାଧୁତା ଯିବ । ବାହାର ଲୋକଙ୍କ ସମ୍ପର୍କରେ ବେଶି ବେଶି ଆସି ସେମାନେ ଟାଉଟରି ଶିଖିବେ । ଏ ସମ୍ପର୍କର ପ୍ରଭାବର ବିଶିଷ୍ଟତା ଏଇଆ ଯେ ଆଗ ଖରାପ ଗୁଣମାନ ଚଞ୍ଚଳ ଶିଖି ହୋଇଯାଏ । ସେମାନେ ସୁବିଧାବାଦୀ ହେବେ, କରଜ ନେଇ ବୁଡ଼େଇବେ, କରଜ ଶୁଝିବାକୁ ଡ଼ରି ନିଜ ଜିନିଷକୁ ପରକୁ ଲୁଚେଇ ଚୋରେଇ ବିକିବେ । ପଇସା ଥିଲେ ହାଟରେ କିଣିବେ, କାଳି ଖାଇବାକୁ ମନକଲେ ସରକାରୀ ଦୋକାନକୁ ଆସିବେ । ବାରମ୍ବାର ନୂଆ ନୂଆ ଶୋଷଣରେ ପଡ଼ିବେ । ଏ ଅଘଟନଗୁଡ଼ାକ ବି ତ ଘଟିପାରେ । ଯେ ଆଜି ଅଶିକ୍ଷିତ ଥାଇ ମଦ ପାଣିରେ ବୁଡ଼ି ଆପଣାର ଦେହର କ୍ଷୁଧା ମେଣ୍ଟେଇବାକୁ ବଡ଼ ବୋଲି ଭାବୁଛି, ଯାହା ମନରେ ନାନା ଅନ୍ଧବିଶ୍ୱାସରୁ ଭୟ ସନ୍ଦେହ ପୂରି ରହିଛି ସେ ଯେ ଏଡ଼େ ସତ୍ୟବାଦୀ, ସତ୍ୟନିଷ୍ଠ ହୋଇ ରହିଛି ତା କ'ଣ ତା'ର ଉନ୍ନତ ମନ ଯୋଗୁଁ ନା ତା'ର ଆଖି ଖୋଲି ନାହିଁ ବୋଲି ? ଜାଣିଶୁଣି ସତ୍ୟାଶ୍ରୟୀ ହୁଏ ଜ୍ଞାନୀ, ଯେ ବୁଝେ ଭୋଗଠୁ ତ୍ୟାଗ ବଡ଼, ଯେ ସଂଯମ ଶିଖିଛି, ଜୀବନକୁ ସାଧନା ବୋଲି ଘେନିଛି, ଆଦର୍ଶକୁ ବୁଝି ସ୍ଥିର କରି ଆଖି ଆଗରେ ଧରି ରଖିଛି । ସେଭଳି ଲୋକ ବି ଟଳ ଟଳ ହୁଏ, ଝୁଣ୍ଟେ । କେତେବେଳେ ତା' ଆତ୍ମବିଶ୍ୱାସ ହଜେ, କେତେବେଳେ ସେ ଆପଣାର ତ୍ୟାଗ ତପସ୍ୟା ପାଇଁ ଆପେ ଅନୁତାପ କରେ । ଆଉ ଏଠି ତ ସେ ଜ୍ଞାନ କି ସଂସ୍କୃତିର କିଛି ଦିଶୁ ନାହିଁ । ଆପଣାର ମଦ, ମାଂସ, ଫୁର୍ତ୍ତି ଛଡ଼ା ଆଉ କିଛି ନାହିଁ । ସେ ସତ କହୁଛି ଏଇଥିପାଇଁ ଯେ ମିଛ ଫାନ୍ଦି ଚଳେଇ ନେଲାଭଳି ତାଠି ବୁଦ୍ଧି ନାହିଁ, ଆଉ ତା' ମନରେ ଅନେକ ଅଜଣା ଭୟ ଅଛି । ଯେମିତି ସେ ବାଗ ପାଇଯିବ ସେ ବି ହେବ ମିଛୁଆ, ପେଞ୍ଚୁଆ, ଠକ, ଶୋଷକ । ତା'ର ଦୁର୍ଦ୍ଦଶା ଦେଖି ମୁଁ ଅତି ଦୁଃଖିତ; କିନ୍ତୁ ସେ ଦୁର୍ଦ୍ଦଶା ଖାଲି ତା' ପେଟ ପିଠିର ନୁହେଁ, ତହୁଁ ବଳି ତା' ମନର । ଏତେ ଦୁର୍ଦ୍ଦଶାରେ ପଡ଼ି ତଥାପି ତାଠି ଭଲ ଗୁଣ ଅଛି, କି ଉପାୟ କଲେ ଥିବା ଭଲ ଗୁଣତକ ନଷ୍ଟ ହେବ ନାହିଁ ଅଥଚ ନଥିବା ଭଲ ଗୁଣ ଆମଦାନୀ ହେବ, ମନ୍ଦ ଗୁଣ ମନ୍ଦ ବୁଦ୍ଧି ଆସିବ ନାହିଁ, ସେହି ଉପାୟ ଦରକାର; କିନ୍ତୁ ଯେତେ ଭାବୁଛି ଖାଲି ଭାବୁଛି ହିଁ, ବାଟ ପଇଟୁ ନାହିଁ ।''

ପରଶୁରାମ କହିଲେ, ''ମନର ସେ ସମସ୍ୟା ଖାଲି ଡଂଗ୍ରିଆ କନ୍ଧର ନୁହେଁ, ପୃଥିବୀଯାକର ସବୁ ମଣିଷଙ୍କ ସମସ୍ୟା, କାହାଠି ବେଶି କାହାଠି କମ୍ । ସେ ସମସ୍ୟା ଦୂର ହୋଇ ପାରିଲେ ଯୁଦ୍ଧ, ହିଂସା, ମିଛ, ସ୍ୱାର୍ଥ, ଅଶାନ୍ତି ଅମଙ୍ଗଳ ସବୁ ଦୂର ହୋଇଯାଆନ୍ତା, ତା'ର ବାଟ କହିଛନ୍ତି ବହୁତ ଭାବିବା ଜାଣିବା ମଣିଷ, ହଜାର ହଜାର ବର୍ଷ ହେଲା କହି ଆସୁଛନ୍ତି, ହେଉ ନାହିଁ; କିନ୍ତୁ ତା' ବୋଲି କ'ଣ କିଛି କରାହେବ ନାହିଁ ? ଏମିତି ନିରାଶ୍ରୟ ନିର୍ମାଖୀ ହୋଇ ପାହାଡ଼ରେ ଯେ ବିଚରା ପଡ଼ିଥିବ, ଯାହା କମୋଉଥିବ ତାକୁ ଭୂତ ଖାଉଥିବେ ? ତା'ର ଆର୍ଥିକ ଉନ୍ନତି କରିବାକୁ ହିଁ ପଡ଼ିବ, ସେଇଆ କରୁ କରୁ କ୍ରମେ ତା'ର ମାନସିକ, ସାମାଜିକ, ସବୁ ଉନ୍ନତି ହେବ । ସେଇ କାମକୁ ମନେ ମନେ ଚିଠା କରୁଛି, ସମସ୍ୟା ଏତେ ପ୍ରକାର ଯେ ସେଥିପାଇଁ ଧନ୍ଦି ହେଉଛି । ଦେଖନ୍ତୁ, ଭାବନ୍ତୁ ସମସ୍ତେ । କିଛି ଗୋଟାଏ କରିବାକୁ ହିଁ ହେବ । ନ ହେଲେ ଆମରି ଭାଇ ଭଉଣୀ ଏମାନେ ଏବେ ବି ପଡ଼ି ରହିଥିବେ ପଶୁପରି । ଏତେ ଦୁଃଖ ସହୁଥିବେ, ଦୁନିଆରେ କିଏ କ'ଣ ହେଲେଣି ଆଉ ଏମାନେ ସତେ କି କେଉଁ ଶହ ଶହ ବର୍ଷ ତଳର ଅତୀତ ଯୁଗର ! ଯାଙ୍କ ପାଇଁ କିଛି ନକରି ଖାଲି ତାତ୍ତ୍ୱିକ ଆଲୋଚନା କରୁଥିଲେ ଆହୁରି ବିତିଯିବ ଶହ ଶହ ବର୍ଷ । ଏମାନେ ଏମିତି ଥିବେ; ନ ହେଲେ ହଠାତ୍ ଭୁଷ୍‌କରି ପଶି ଆସିବ କେତେ କ'ଣ ଉତ୍କଟ ପ୍ରଭାବ ଯେ ଏମାନେ ମାଟି କାମୁଡ଼ି ପଡ଼ି ରହିପାରିବେ ବି ନାହିଁ ।''

ମଧୁସୂଦନ କହିଲେ, ''ବଡ଼ ଦୁଃଖ କାକୁର୍ତ୍ତି ଆଜ୍ଞା, ମୁଁ ଦେଖିଛି ।'' ହରିପାଣି କହିଲେ- ''ସେଥିରେ ଆଉ ସନ୍ଦେହ କ'ଣ ? ଦୁଃଖ ବୋଲି ଦୁଃଖ ! ଯେ କିଏ କ'ଣ କରିବ ରାସ୍ତା ଆଦିର ସୁବିଧା ନ ହେବାଯାକେ ? ଯେ ତାଙ୍କ ମନକୁ ଆମ ପାଖକୁ ଆସିବେ ନା ଏତେ ପାହାଡ଼ ଚଢ଼ି ଚଢ଼ି ଯାଙ୍କ ପାଖକୁ ଆମେ ସବୁବେଳେ ଯାଇ ପାରିବା ? ଯେ ଆସୁ ପଛେ, ସେ ତ ମଣିଷ, ରୋଗ ବାଧିକା, ବିପଦ, ଅସୁବିଧା, ଅମାନୁଷିକ ପରିସ୍ଥିତି, ଯା ଭିତରେ ସେ କାମ କରିବ କ'ଣ ? ଆଗ ଦରକାର କାମ କଲାଭଳି ସୁବିଧା । ତା' ନ ଥିବାଯାକେ ତୁଣ୍ଡରେ ସମସ୍ତେ ହୋଇ ହୋଇ କରିବେ, କାମ କଲାବେଳକୁ ଭିନ୍ନେ ରୂପ । କିନ୍ତୁ କିଛି ଗୋଟାଏ କରିବାକୁ ପଡ଼ିବ । ଆଜିକାଲି ଯୁଗରେ ଥୋଡ଼ାଏ ଲୋକ ଯେ ଅବସ୍ଥାରେ ପଡ଼ିରହିଥିବା ସମସ୍ତିଙ୍କ ପକ୍ଷରେ ଗୋଟାଏ କଳଙ୍କ ।''

ସେମାନେ ମନ ଖୋଲି ମନ କଥା କୁହାକୋହି ହୋଇଥିଲେ, କଥା କହୁ କହୁ ଆପଣାକୁ ଚିତ୍ର କରିଥିଲେ । ତା'ପରେ ସେମାନେ ତୁନି ହୋଇଥିଲେ । ମନେ ମନେ ସେହି ସମସ୍ୟା ବିଷୟରେ ବହୁତ ଭାବୁଥିଲେ । ଆଉ ଯେତେବେଳେ ଭାବୁଥିଲେ ସେତେବେଳଯାକେ ବାଟ କଟିଯାଉଥିଲା, ଭୟ ଓ ଶରୀରର ଦୁଃଖ ବି ଭୁଲି ହେଉଥିଲା । ପରର ଦୁଃଖ ସୁଖରେ ମନ ମଜାଇ ଦେଲେ ନିଜର ଦୁଃଶ୍ଚିନ୍ତା ଯେମିତି ପାସୋରି ହୁଏ ସେହିପରି । ପୁଣି ସେ ଭାବନା ଶିଥିଳ ହେଉଥିଲା, ମନେ ପଡୁଥିଲା- ପରିସ୍ଥିତି, ଭୀତି, କ୍ଳାନ୍ତି । କ୍ରମେ ସେହି ଚେତନା ତାଙ୍କ ଉପରେ ମାଡ଼ି ବସୁଥିଲା, ସମସ୍ୟା ବିଷୟରେ ମୁଣ୍ଡ ଖେଳାଇବା ଆହୁରି ପଛକୁ ପଡ଼ିଯାଉଥିଲା ।

ଏତିକିବେଳେ ଠାଏ ନିବିଡ଼ ଜଙ୍ଗଲ ଭିତରେ ଆଗରେ ଦିଶିଲା ଗୋଟିଏ ଛାଇ । ସେ ହଲୁଥିଲା, ସ୍ଥିର ହେଲା । ପଛରେ ଦଳ ଅଟକିଲେ । ପରଶୁରାମ ଟର୍ଚ୍ଚ ଲାଇଟ୍ ପକାଇଲେ । ଦିଶିଲା, ଜଣେ ଲୋକ । ଫୁଙ୍ଗା ଦେହ, କୌପୁନୀ ପିନ୍ଧିଛି, କାନ୍ଧରେ ଟାଙ୍ଗିଆ, ବୟସ କୋଡ଼ିଏ କି ପଚିଶି ହେବ । ଡଂଗ୍ରିଆ କନ୍ଧ ।

''କିଏ ତୁମେ ?'' ପରଶୁରାମ ଡ଼ାକିଲେ ।

''ଆଇଲୁ କି ବାବୁ ? ଯାଉଚୁ ?'' ସେ କହିଲା, ''ମୁଁ ଟଡ଼ପା ।''

ଢଳକଯାକ ତା' ପାଖକୁ ଆସିଲେ । ସେ ଆଗ ଅଳି କଲା, ''ବିଡ଼ି ଖଣ୍ଡେ ଦେ ।'' ମଧୁସୂଦନ ବିଡ଼ି ବାହାର କଲା, ପରଶୁରାମ ଦେଲେ ଦିଆସିଲି । ସେ ବିଡ଼ି ଲଗାଇଲା, ତା'ପରେ ଦିଆସିଲିଟି ମୁଠେଇ ଧରି କହିଲା, ''ଏଇଟା ମୁଁ ନେଲି, ଆଉ ଦେବି ନାଇଁ ।''

''ଆରେ ଦିଆସିଲି ନେଲେ ଆମର ଅସୁବିଧା ହେବରେ,'' ହରିପାଣି କହିଲେ ।

''ସେ କଥା ମୁଁ ଶୁଣିବି ନାଇଁ ! ବାପ ମାଠୁଁ ନ ନେଲେ କାହାଠୁଁ ନେବି ?''

''ହଉ ନଉ ନଉ'', ପରଶୁରାମ କହିଲେ, ''ଭରତ ବାବୁଙ୍କ ପାଖରେ ଆଉ ଗୋଟାଏ ଥିବ ।''

''ଅଛି'', ଭରତ କହିଲେ ।

ଟଡ଼ପା ଖୁସି ହେଲା । କହିଲା, ''ଆସୁଥିଲି, ସେଇ ଯେଉଁଠି ଚଟାଣ ତଳେ ଜଳ ପ୍ରପାତଟା ଅଛି ସେଠି ଟିକିଏ ବସି ଧୂଆଁ ପିଇଲି । ସେଇଠୁ ଜାଣିଲି ତୁମେ ସବୁ ଆସୁଛ । ଅପେକ୍ଷା କଲି, ତୁମେ ଅଳସ କଲ । ବୁଝିଲି ତୁମେ ଚାଲି ପାରୁନା, ବଣ ତ, ବାଟ ବି ଭୁଲିଯାଇ ବଣା ହୋଇପାର । ଏଡ଼େ ରାତିରେ ତୁମପରି ଲୋକ ଏ ବାଟେ କେବେ ତ ଦେଖା ନଥିଲା । ଅନୁମାନ ହେଲା ଏ ବଣକୁ ତୁମେ ଡ଼ରି ଡ଼ରି ଚାଲୁଚ । ଭାବିଲି ମୁଁ ଥିଲେ ତୁମର ଆଉ ଡ଼ର ନଥିବ, ତୁମେ ବାଟ ବି ବଣା ହେବ ନାହିଁ । ଆଗେ ଆଗେ ଧୀରେ ଧୀରେ ଚାଲୁଥିଲି । ହଉ, ଆସ ।''

ହରିପାଣି ପଚାରିଲେ, ''ଏ ବଣରେ ବାଘ ଅଛି ଟଡ଼ପା ?'' ଟଡ଼ପା ହସିଲା, କହିଲା ''ପଚାରୁ ନାହୁଁ, ପାଣିରେ ମୀନ ଅଛି ? ଆକାଶରେ ତାରା ଅଛି ? ବାଘ ତ ଥିବ, ଅଛି, ସେ ଯିବ କୁଆଡ଼େ ।''

''କାହାକୁ ଖାଇଥିଲା ?''

''ଖାଇଥିଲା ?'' ଟଡ଼ପା କହିଲା, ''ତୋତେ ଭୋକ କଲେ ତୋ ଖାଦ ତୁ ଖାଇବୁ ନାଇଁ ? କେତେ ଲୋକଙ୍କୁ ଖାଇଚି । ସେଇ ଯେଉଁଠି ଜଳପ୍ରପାତ ଅଛି, ସେଇଟା ତ ତା'ର ବସା ।''

ଭରତ କହିଲେ, ''ଆଉ ଏତେ ରାତିରେ ତୁ ଏକୁଟିଆ ଯାଉଛୁ ? ତତେ ଡ଼ର ମାଡୁ ନାଇଁ ?''

ଟଡ଼ପା କହିଲା, ''ତୁ ଯେତେବେଳେ ରୋଟ୍ ବାଟେ ଚାଲି ଚାଲି ଯାଉଥାଉ ତତେ ଡ଼ର ମାଡ଼େ ? ରୋଟ୍ ବାଟେ ଚାଲୁ ଚାଲୁ ମଟର ଚାପାରେ ମଣିଷ ମରନ୍ତି କି ନାଇଁ ? ମୁଁ ଦେଖିଚିତ ସେମିତିଆ । ସେଇଟା ତମ ରୋଟ୍, ଏଇଟା ଆମ ରୋଟ୍ । ମୋର କିଛି ଡ଼ର ନାଇଁ ।''

ପରଶୁରାମ କହିଲେ, ''ତୁ ବାବୁ ଏ ରାତିଟାରେ ଏକୁଟିଆ ଏ ବଣରେ ଯାଉଚୁ କାଇଁକି ? ନ ଗଲେ ଚଳନ୍ତା ନାଇଁ ?''

''କେମିତି ଚଳିବ ?'' ଟଡ଼ପା ଆଶ୍ଚର୍ଯ୍ୟ ହେଲା ଯେ କେହି ଏପରି ଭାବି ମଧ ପାରେ । ହସିଲା, କହିଲା, ''ରାତିରେ ଫସଲ ଜଗିବାକୁ ତ ଡ଼ଂଗର ଚଢ଼େଁ, ରାତିରେ ଲୋଡ଼ା ପଡ଼ିଲେ ତ ବଣ ବାଟରେ ବାହାରେଁ, ଆଉ ଆଜି ଯେଉଁ ଲୋଡ଼ା ତାଠୁଁ ଆଉ ବଡ଼ କିଛି ଅଛି ? ତୁ କହ ।''

''ଆରେ କାମଟା କ'ଣ ?''

''କାମଟା ?'' ପାଲଟାଇ ପଚାରିବା ଯେପରିକି ତା'ର କଥା କହିବାର ଭଙ୍ଗୀ । ପଚାରି ଦେଇ ସେ ଟିକିଏ ଭାବି ହେଲା । କହିଲା-

''କାମ ତ କିଛି ନାଇଁ, ରାତିରେ କ'ଣ ଜମିରେ କୋଡ଼୍‌କି ପାରିବା, ନା ଗଛ ହାଣିବା, ନା ପଥର ଭାଙ୍ଗିବା ? କାମ ନାହିଁ, ତୁଛାଟା ।''

ମଧୁସୂଦନ ପଚାରିଲେ, ''କହିଲୁ ପରା କ'ଣ ଲୋଡ଼ା ଅଛି ?''

ଟଡ଼୍‌ପା ହୋ ହୋ ହସିଲା, ''ଲୋଡ଼ା ! ହଁ ଧାଂଡ଼ୀ- ବେଣ୍ଟ ବାବୁ, ପେନୁବାଲି ଗାଁକୁ ଯାଉଛି ।'' ମଧୁସୂଦନ ହସିଲେ । ବାହାରୁ ଆସିଥିବା ଲୋକେ ମୁହଁ ଚାହାଁ-ଚାହିଁ ହେଲେ । ତାପରେ ମଧୁସୂଦନ କଥାଟା ବୁଝାଇ ଦେଲା ଉତ୍ତାରୁ ସମସ୍ତେ ହସିଲେ । ତା'ର ସାରମର୍ମ ଏହିପରି । ଧାଂଡ଼ୀ ବେଣ୍ଟ ବୋଲନ୍ତେ କନିଆ-ଶିକାର । ତାଙ୍କର ପ୍ରଥା ଅଛି ଯେ ଗୋଟିଏ ଗାଁର ଯୁବକମାନେ ଅନ୍ୟ ଗାଁର ଯୁବତୀମାନଙ୍କ ସଙ୍ଗେ ନାଚ କରିବାକୁ ତାଙ୍କ ଗାଁକୁ ଯା'ନ୍ତି । ସେମାନଙ୍କୁ ଅଭ୍ୟର୍ଥନା କରାଯାଏ, ଏକାଠି ଗୀତ ନାଚ ହୁଏ, ରାତିକ ରହି ପିଠାପଣା ଖାଇ ସକାଳକୁ ସେମାନେ ଲେଉଟି ଆସନ୍ତି । ଏଇ ନାଚ ଗୀତ ମିଳାମିଶା ଭିତରେ ଭବିଷ୍ୟତର ସ୍ୱାମୀ-ସ୍ତ୍ରୀ ବଛାବଛି ହୁଏ, ଘେନାଘେନି ଲାଗେ, ତା'ର ପରିଣତି ଘଟେ ବିଭାଘରରେ ।

''ଏତେ ହସୁଚ ବାବୁ ?'' ଟଡ଼୍‌ପା ପରଶୁରାମଙ୍କୁ ପଚାରିଲା, ''ଆଜି ସିନା ବୁଢ଼ା ହେଲୁ କେବେ ଧାଂଡ଼ା ହୋଇ ନଥିଲୁ କି ?''

''ଧାଂଡ଼ା ହୋଇଥିଲି ସିନା, ଧାଂଡ଼ୀ ବେଣ୍ଟ କରି ନାଇଁ, ଆମ ଆଡ଼େ ଚଳେ ନାଇଁ ।''

ସେମାନେ ଠିଆ ହୋଇଥାଆନ୍ତି । ଉପରୁ ଓ ବାଁ କରରୁ ଜହ୍ନ ଆଲୁଅ ଛିରିକି ପଡୁଥାଏ । ଚାରିଆଡ଼େ ଓହଳିଥାଏ ନାନା ଆକାର ଓ ଆକୃତିର ଛାଇ । ଚଲା ପାଣିର ଗଜ୍ ଗଜ୍ ଶୁଭୁଥାଏ ଯନ୍ତ୍ର ସଙ୍ଗୀତରେ ଆଳାପର ପୂର୍ବାଭାସ ପରି ।

ଟଡ଼୍‌ପା ପରଶୁରାମଙ୍କ ମୁହଁକୁ ବଲ ବଲ କରି ଅନାଇଁଲା, ଟିକିଏ ରହି କହିଲା, ''ଯେଉଁ ଦେଶରେ ଧାଂଡ଼ୀ ବେଣ୍ଟ ନାହିଁ ସେ ଦେଶର ଲୋକେ ଜନ୍ତୁ କି ମଣିଷ ?''

ନୃତତ୍ତ୍ୱବିତ୍ ଭରତ ଚମକି ପଡ଼ି ଆଗକୁ ମାଡ଼ିଗଲେ, କହିଲେ, ''କାହିଁକି ?''

ଟଡ଼୍‌ପା କହିଲା, ''ଦି ଜଣ କଥାଭାଷା ହସଖେଳ ନାଚ ଗୀତ ହୋଇ ଚିହ୍ନାଜଣା ହୋଇ ମନମାନିଲେ ସିନା ଘର କରି ରହିବେ, ନଇଲେ କେମିତି ? ସେଥିପାଇଁ କହିଲି, ସେମାନେ ମଣିଷ ନୁହନ୍ତି ଜନ୍ତୁ, ଚିହ୍ନା ହେବେ ନାଇଁ ଶରଧା ହେବେ ନାଇଁ ପୁଣି ଘର କରିବେ । ହେଇ ସେ ତଳ ଦେଶର ଲୋକେ ଯେମିତି ।'' ସେ ଅବଜ୍ଞାରେ ନାକ ଟେକିଲା, ତା'ର ନାକର ନୁଡୁ ନୁଡୁ ଫାସିଆ ତିନୋଟି ଜହ୍ନ ଆଲୁଅରେ ଚିକ୍ ଚିକ୍ କଲା, କହିଲା, ''ଆମେ ସେମିତି ନୋହୁ, ଆମେ ଡଂଗ୍ରିଆ ।''

ମଧୁସୂଦନ କହିଲେ, ''ଡଂଗ୍ରି ଯେ ଯେ ନିୟମଗିରିର ରାଜା ।''

ଟଡ଼୍‌ପା କହିଲା, ''ସତ ତ ଜାଣିଛୁ ତ ସବୁ ।''

ଭରତ ପଚାରିଲେ, ''ଆଚ୍ଛା ଏଇଟା କ'ଣ ସତ ଯେ ତୁମର ଧାଂଡ଼ୀ ତୁମ କୋଡ଼ରେ ବସେ ନାହିଁ, ତୁମେ ଧାଂଡ଼ୀ କୋଡ଼ରେ ବସ ।''

ଟଡ଼୍‌ପାର ଆଗ୍ରହ ବଢ଼ିଲା । ମୁଣ୍ଡ ଝାଙ୍କି ଦେଇ ସେ କହିଲା, ''ସତ-ସତ-ସତ । ଧାଂଡ଼ୀ କୋଡ଼ରେ ଆମେ ବସୁଁ ।'' ସେ କହିଲା ନାଇଁ, ଲାଜ କଲା ନାହିଁ; ଖାଲି ତା'ର ଉତ୍ସାହ ବଢ଼ିଗଲା । କହିଲା, ''ଦେ ବାବୁ ଆଉ ବିଡ଼ି ଖଣ୍ଡେ ।''

ଭରତ ତା ପାଟିରେ ସିଗାରେଟଟିଏ ଗୁଞ୍ଜି ଦେଇ ଦିଆସିଲି ଲଗାଇ ଦେଲେ । ଏକା ଦମ୍‌ରେ ପ୍ରାୟ ଅଧ ଇଞ୍ଚେ ସିଗାରେଟ ଜାଳି ଦେଇ ସେ ତାଙ୍କର ବେକ ଥାପୁଡ଼େଇଲା, କାନ୍ଧ ଥାପୁଡ଼େଇଲା । ପୁଣି ବାହାଦୁରି ଦେଖାଇଲା ପରି କହିଲା- ''ହଁ, ଧାଂଡ଼ୀର କୋଡ଼ରେ ଆମେ ବସୁଁ । ତୁ ବସିନାଉଁ କି ବାବୁ ?''

ଭରତ ସମସ୍ତିଙ୍କୁ ହସ ରୋକିବାକୁ ସଙ୍କେତ ଦେଲେ, ତଥାପି ଗୁଡ଼ାଏ ହସ ମାଡ଼ିମୁଡ଼ି ହୋଇ ଫାଟିଲା ପରି ଶବ୍ଦ ହେଲା ।

ହରିପାଣି କହିଲେ, ''ଆମେ ଜାଣୁ ମା କୋଡ଼ରେ ପୁଅ ବସେ ।'' ଟଡ଼୍‌ପା ସିଗାରେଟଟାକୁ ଫୋପାଡ଼ି ଦେଲା, କହିଲା, ''କିଛି କଡ଼ା ନାଇଁ । ବିଡ଼ି ଥିଲେ ଦେ । ଏଁ, ମା କୋଡ଼ରେ ପୁଅ ବସେ । ଠିକ୍, ସେ ଧାଂଡ଼ୀଟା ମା' ନୁହେଁ କି ? କହ ତୁ ମା' ନା ମୁଁ ମା' ? ଆମେ ଯେ ପୁଅ । ଧାଂଡ଼ୀ ଯେ ମା' । ଆମେ ପିଲା ଥିଲା ବେଳେ ମା' କୋଡ଼ରେ ବସିବା । ବଡ଼ ହେଲେ, ଧାଂଡ଼ା ହେଲେ, ଯୋଉ ଧାଂଡ଼ୀ ଆମ୍ଭକୁ ରାଜି ହେବ ତା କୋଡ଼ରେ ବସିବା ।''

ହରିପାଣି କହିଲେ, ''ଆଉ ବୁଢ଼ା ହେଲେ କାହା କୋଡ଼ରେ ବସିବ ?''

ଟଡ଼୍‌ପା କହିଲା, ''ଅତି ବୁଢ଼ା ହୋଇ ଯେତେ ବେଳେ ପଡ଼ିଯିବି ସେତେବେଳେ ଆଉ ଗୋଟିଏ ମା' କିଏ ତୁ ଜାଣି ନାହୁଁ କି ?''

ହରିପାଣି କହିଲେ ''କିଏ ?''

ଟଡ଼୍‌ପା କହିଲା, ''କିଏ ? ଏଇ ବସୁମତୀ, ଏଇ ଧରତନୀ, ସେ ତ ସମସ୍ତିଙ୍କର ମା, ଆଉ କିଏ ? ସେଇ ମା'ଟା ଜନମ କଲା ମା' ଭିତରେ ଅଛି, ଧାଂଡ଼ୀ ଭିତରେ ଅଛି, ସବୁ ଗୋଟାଏ ।''

ଭରତ ପରଶୁରାମଙ୍କୁ କହିଲେ, ''ଏତେ କଥା ?''

ପରଶୁରାମ କହିଲେ, ''ଆଶ୍ଚର୍ଯ୍ୟ !''

ସେମାନେ ବାଟ ଧରିଲେ ।

ପରଶୁରାମ ଟଡ଼୍‌ପାକୁ କହିଲେ, ''ତା' ହେଲେ ସେଇଥିପାଇଁ ତୁ ଯାଉଚୁ ଧାଂଡ଼ୀଙ୍କ ସଙ୍ଗରେ ନାଟ ଗୀତ ଟିକିଏ ପାଇଁ, ପାଞ୍ଚ ଛ କୋଶ ପାହାଡ଼ ଓହ୍ଲେଇ ଆସିଲୁଣି ଆହୁରି ଓହ୍ଲେଇବୁ ତିନି ଚାରି କୋଶ । ତୋ ଲୋଡ଼ା ଖୁବ୍ ଜବର ।''

ଟଡ଼୍‌ପା ହସିଲା, କହିଲା, ''ଗଲା ବୁଧବାର ହାଟରେ କଥା ଦେଇଥିଲି ଯିବି ବୋଲି, କଥା କେମିତି ଭାଙ୍ଗିବି ?''

ପଡ଼ିଲା ତୀଖ୍ଣ ଗଡ଼ାଣି, ଅନ୍ଧାର ବିଲ୍ ବିଲ୍ ବଣ । ଟଡ଼୍‌ପା ଆଗେ ଆଗେ ଚାଲିଲା, କହିଲା, ''ଡ଼ର ନାଇଁ, କିଛି ଭୟ ନାଇଁ, ମୋ ପଛେ ପଛେ ଆସ ।''

ପରଶୁରାମ କହିଲେ, ''ଆରେ ରହ, ମୁଁ ଆଗରେ ଯାଏଁ, ଟର୍ଚ୍ଚ ଲାଇଟ୍ ପକାଏଁ ।''

ଟଡ଼୍‌ପା କହିଲା, ''ମୋର ଦରକାର ନାହିଁ । ଭେଣ୍ଡିଆ ଲୋକ, ମୋ ଆଖିକି ବାଟ ଦିଶୁଚି ।''

ଯେତେ ବୁଝାଇଲେ ସେ ମାନିଲା ନାହିଁ, ଏକା ଜିଦ୍‌, ସେ ଆଗେ ଆଗେ ଯିବ । କହିଲା, ''ଯେ ବଣ ଯେ ପାହାଡ଼ ଯେ ସେ ଆମର ଘର, ତୁମେ ଯେ ଆମର କୁଣିଆଁ । ମୁଁ ତମ୍ଭକୁ ବାଟ କଢ଼ାଇ ନେବି ନା ତୁମେ ମତେ ବାଟ ଦେଖାଇବ ? ଆମ ଗାଁ ବଡ଼ ବଡ଼ ଲୋକ ଶୁଣିଲେ କ'ଣ କହିବେ ? ଦାଉଡ଼ା ମଣ୍ଡଳ ଲାମୁ ବିଶି ମାଝି ଶୁଣିଲେ କ'ଣ କହିବେ ? କହିବେ ଟଡ଼୍‌ପା , ତୁ ଥିଲୁ ଆଉ ଆମର ନାଁ ବୁଡ଼େଇଲୁ ?''

ଭରତ କହିଲେ, ''ଆରେ ଜନ୍ତୁ ଥିବେ ରେ-''

''ବଣର ଜନ୍ତୁ ଆମର ଭାଇ ପୃଞ୍ଜ, ଆସିଲେ ଆସୁ । ତୁମର କିଛି ଡ଼ର ନାହିଁ ।''

ସେମାନେ ତଳକୁ ଓହ୍ଲାଇଗଲେ । ଆସିଲା ଶକଟା ନଇ ପଶା, ଓସାର ନଇ, ଫରଚା ବାଲି, ତଳକୁ ଓହ୍ଲାଇ ପଡ଼ି ନଇ ପାହାଡ଼ ତଳେ ତଳେ ଯାଇଛି । ଟଡ଼୍‌ପା ନଇରେ ପଶିବା ବାଟ ଦେଖାଇଲା । କହିଲା, ''ସେଠି ନୁହେଁ ଏ ବାଟେ, ମୋ ପଛେ ପଛେ ଆସ, ସେଠି ବେଶି ପାଣି ।''

ପାଣି କାକର । ଆଣ୍ଠୁଏ ମୋଟେ ।

ଆର ପାଖେ ବଣ ପାତଳ, ଖୋଲା । ଟଡ଼୍‌ପା କହିଲା, ''ଏଥର ମୁଁ ବିଦା ହେବି । ତୁମର ଆଉ ଡ଼ର ନାହିଁ । ଆଉ ଟିକିଏ ଗଲେ ପଦାଟା । ସେଇଠି ମୋ ବାଟ ଡ଼ାହାଣକୁ ତୁମ ବାଟ ବାଁକୁ । ମୁଁ ଯାଇ ଯାଇ ଚଢ଼ିବି ପାହାଡ଼, ଦି କୋଶ ଚଢ଼ିଲେ ପେନୁ ବାଲି । ତୁମର ଯେ ସିଧା ବାଟ, ବଣ ନାହିଁ, କ୍ଷେତ ପଦା, ସେଇଠୁ ଗାଁ, ସେଇଠୁ ରୋଟ୍‌କୁ ବାଟ । ହଉ ମୁଁ ଯାଏଁ ।''

ସେମାନେ ଠିଆ ହେଲେ । ପରଶୁରାମ ବିନୀତ ହୋଇ ତାକୁ କହିଲେ, ''ତତେ ଧନ୍ୟବାଦ ।'' ଭରତ କହିଲେ, ''ତୁ ଆମର କେଡ଼େ ଉପକାର କଲୁ ।'' ସେମାନେ ଯେତେବେଳେ ତା ପ୍ରତି ସମ୍ମାନ ଓ କୃତଜ୍ଞତା ଜଣାଉଥାନ୍ତି, ସେ ହଠାତ୍ ପରଶୁରାମଙ୍କ ଆଗରେ ଠିଆ ହୋଇ କହିଲା, ''ଦେଲୁ ସୁ'କାଏ କ'ଣ କିଣି ଖାଇବି ?''

ପରଶୁରାମ ଓ ଭରତ ହସିଲେ ।

ସେ ଅଳି କଲା, ''ଦେ ଦେ, ମା' ବାପଙ୍କଠୁଁ ନ ନେଲେ କାହାଠୁଁ ନେବି ? ଆଣ୍ ଦେ, କ'ଣ କିଣି ଖାଇବି ।''

ପରଶୁରାମ ପକେଟ୍‌ରୁ ଦି'ଟା ଦଶ ନୂଆ ପଇସା ବାହାର କଲେ । ଭରତଙ୍କ ପକେଟ୍‌ରୁ ବାହାରିଲା ଆଉ ଗୋଟାଏ । ଟଡ଼୍‌ପା ହାତରେ ତାକୁ ଦିଆଗଲା । ସେ ଜଣ ଜଣ କରି ପ୍ରତ୍ୟେକଙ୍କ ପାଖକୁ ଆସିଲା ଓ କହିଲା, ''ଯାଉଚି ? ଯାଉଚି ?'' ପରଶୁରାମଙ୍କୁ କହିଲା, ''ଯାଉଚି ବାପ ମା' ?'' ତା'ପରେ ଭୁଷ୍ ଭୁଷ୍ ହୋଇ ଆଗେ ଆଗେ ଚାଲିଗଲା । ଟିକିଏ ଦୂରରୁ ଶୁଭିଲା ତା ଗୀତ ।

ସେମାନେ ଆଗକୁ ଚାଲିଲେ । ତର ତର ପାହୁଣ୍ଡ ପକାଇ ସେ କୁଆଡ଼େ ଅନ୍ତର୍ହିତ ହୋଇଯାଇଛି ।

ଖଣ୍ଡେ ଦୂରରେ ବାଟ କରରେ କ'ଣ ତଳେ ଜିକ୍ ଜିକ୍ ଦିଶିଲା । ଭରତ ନଇଁ ପଡ଼ିଲେ । ଧୂଳି ଉପରେ ଗୋଟିଏ ଦଶ ନୂଆ ପଇସା ପଡ଼ିଛି । ସେହି କଡିରେ ସେହିପରି ଆଉ ଗୋଟିଏ ।

ସେମାନେ ଅଟକିଲେ । ସମସ୍ତେ କହିଲେ ଟଡ଼୍‌ପାର ମୁଠାରୁ ସେ ପଇସା ଖସି ପଡ଼ିଚି ।

''ପଇସାକୁ ଲୋଭ ନାଇଁ, ଆଉ ସେ ଏତେ ଅଳି କରି ମାଗୁଥିଲା କାହିଁକି ?'' ଭରତ ପଚାରିଲେ ।

ବୁଢ଼ା ମଧୁସୂଦନ ତା'ର ଉତ୍ତର ଦେଲେ, କହିଲେ, ''ସେଇଟା ତା'ର ମର୍ଯ୍ୟାଦା ଆଜ୍ଞା, ମା' ବାପ ବୋଲି ମାଗି ସେ ହଜୁରଙ୍କୁ ମର୍ଯ୍ୟାଦା କଲା । ଡଂଗ୍ରିଆ ତ ସେମିତିଆ । ଏତେ ବୁଦ୍ଧି ଥାଇ ପିଲାପରିକା । ଯେତେବେଳେ ଯୋ'ଟା ଲୋଡ଼ା ସେ'ଟା ଲୋଡ଼ା, ମିଳିଗଲେ ଗଲା । ପଇସା ତା ଆଖିରେ ଗୋଡ଼ିମାଟି ।''

ସେମାନେ ପଛକୁ ଅନାଇଁ ଠିଆ ହେଲେ । କୁହୁଡ଼ିଆ ଜହ୍ନ ରାତିରେ ଘୋଡ଼ି ହୋଇ ନିୟମଗିରି ଶୋଇ ରହିଛି, ଲାଗୁଛି ଯେମିତି ସେ ସତ ନୁହେଁ, ସ୍ୱପ୍ନଟିଏ ।

ପୁଣି ବାଟ ଚଲା । ପରଶୁରାମ କହିଲେ, ''ପଡୁ ଏଥର ଆଲୋଚନା । ଡଂଗ୍ରିଆ କନ୍ଧର ଉନ୍ନୟନ କି ଉପାୟରେ ହେବ ।''

ଆଲୋଚନା ଚାଲିଲା ।

# ସମାଧାନ

ଅଫିସ୍ କାର୍ଯ୍ୟରେ ବ୍ୟତିବ୍ୟସ୍ତ ଦଧିବାମନ ଯେତେବେଳେ ଦିନ ଗୋଟାକର ଦରଜ ଓ ତାତି କଥା ସ୍ମରଣ କରି ଝାଇଁ ଝାଇଁ ମୁଣ୍ଡରେ ଦ୍ରବ ଦ୍ରବ କରି ଅନେଇ ରହିଲା ଦୂରକୁ, ସେତେବେଳେ ମନଟା ତା'ର ଅପମାନ ଜ୍ୱାଳାରେ କଇଁଥା ପଡ଼ିଯାଇଥିଲା । ଦିନର ଆଲୁଅ ଆଉ ଅଳ୍ପ କିଛି । ସେ ଅଫିସ୍‌ରୁ ଫେରିଛି । ଦଶରୁ ପାଞ୍ଚ ଅଫିସ୍; ଜାଣ, ଦିନଟାଯାକ । ଖଟି ଖଟି ଝାଳନାଳ; ତଥାପି କାମ ଉପରେ କାମ ମାଡ଼ିଦିଅନ୍ତି । କାମ ସରେ ନାହିଁ । ତା'ପରେ କୈଫିୟତ୍ ଆଉ ଗାଳି ।

ଦରମା ପଚସ୍ତରି ଟଙ୍କା । ଏଇ ମହରଗ ଦିନେ ତିନି ବସ୍ତା ଚାଉଳ ବି ନୁହେଁ । ସହରରେ ବସା କରି ବସା ଭଡ଼ା ଅଛି, ଡ଼ାକ୍ତର ଖର୍ଚ୍ଚ ଅଛି; ଏକା ଧୋବା ପଡ଼ିଯାଏ ସାତ ଟଙ୍କା, କାଠ ପନ୍ଦର ଟଙ୍କା, ତା ଛଡ଼ା ଅନ୍ୟାନ୍ୟ ଖର୍ଚ୍ଚ । ଛୋଟ ପଣତ ପାଏ ନାହିଁ । ଘିଅଦୁଧର ପାଖ ନ ପଶି, ଘରେ ଛିଣ୍ଡା ଲୁଗା ଦୋପୁରି କରି ବେଢ଼େଇ ହୋଇ, ପାଣି ପିଇ ପିଇ ସେ ଯତ୍ର କତ୍ର କୁଟୁମ୍ବ ପୋଷ କାଳ ଗଡ଼ାଏ । ଏଇ ତ ଦଶ ବର୍ଷ ଚାକିରିର କରାମତି, ଖାଲି କାଳି ବଢ଼େଇବା । ତଥାପି କାମ ଚୋଟରେ ମୁଣ୍ଡ ଫାଟିଯାଏ, ତା ଉପରେ ପୁଣି ବାର ବେଇମାନ ଗାଳି ।

ସେଇଠି, ତା'ର ବସା ପଛଆଡ଼େ ସାହାଡ଼ାଗଛ ମୂଳେ, ସେ ପଛକୁ ଅନାଇ ଦେଖିଲା, ଖାଲି ଖଟି ଖଟି ମରିବା ଆଉ ଗାଳି ଖାଇବା; ଆଗକୁ ଅନେଇ ଦେଖିଲା, ସେଇଆ କେବଳ । ଏଇ ତା'ର ଗୋଟା ଜୀବନର ଚିତ୍ର, ଆଉ ଅଧିକା ନାହିଁ ।

"ମେଁ...ମଁୟଁ...ମଁୟଁ...ମୟଁୟଁ.." ବେଢ଼େଇ ହୋଇଥିବା ଦୋପୁରି ଚିରା ଲୁଗାରେ ଗୋଟାଏ ଝାଙ୍କ, ଦଧିବାମନ ଓଟାରି ହୋଇ ଆସିଲା ଜାଗ୍ରତ ବାସ୍ତବତାକୁ । ଗୋଳ କରୁଛି ତା'ର ପୋଷା ଛେଳିଟି । ରାଷ୍ଟ୍ରଭାଷାରେ ଆତ୍ମନିବେଦନ କରୁଛି- "ମେଁ...ମଁୟଁ...ମଁୟଁ...ମୟଁ..."

ଦଧିବାମନ ବସିପଡ଼ି ତା'ର ପିଠି ଆଉଁସିଦେଲା । ଏତିକି ଘରୋଇ ସ୍ପର୍ଶରେ ଅଫିସ୍‌ର ଦୁଃଖ ତା'ର କଟିଗଲା ଆଠଅଣା । ଆଉଁସି ଆଉଁସି ଗେହ୍ଲା କରି ଡ଼ାକିଲା-

"ବେଟୁ ! ବେଟୁ !"

ବେଟୁଟି ଲାଞ୍ଜ ହଲେଇଲା; ଦି ଗୋଡ଼ ଟେକି ମୁହଁ ପାଖକୁ ମୁହଁ ଆଣି କେତେ କଣ କହିଗଲା ତା'ର ଛେଳିଭାଷାରେ । କରଛଡ଼ା ଦେଇ ବେକର ଘୁଙ୍ଗୁର ଝୁଣୁ ଝୁଣୁ କରି ଘେରାଏ ନାଚିଆସିଲା । ପୁଣି ଚାରିକରଯାକ ଗୁରେଇ ହୋଇ ତା ଦେହରେ ପିଠି ଘଷିଲା; ଡ଼ାକିଲା. "ମଁୟଁ...ମଁୟଁ ।"

ବର୍ଷକର ପ୍ରାଣୀଟି ବେଟୁ; ଭଲ ବଢ଼ିଉଠିଛି । ଶିଶୁ ଥିଲାବେଳେ ଛୋଟ ପୁଅର ସଉକ

ଏଡ଼ି ନପାରି ସେ ଛୁଆଟିକି ଘରକୁ ଆଣିଥିଲା । ତା'ପର ବିତିଗଲାଣି ବାରମାସ । ଖାସି କରେଇବ କି କରେଇବ ନାହିଁ ଭାବୁ ଭାବୁ ବେଟୁ ବଢ଼ିଉଠିଛି; ଦାଢ଼ି ଛାଡ଼ିଲାଣି ।

ଦଧିବାମନ ବେଟୁକୁ ଅନୁଭବ କଲା । ମାଈଟିଏ ଆଣି ଦଢ଼େଇଲେ କେତେ ଛେଳି ହୁଅନ୍ତେ । ଛେଳି ଦାମ୍ ବଢ଼ିଛି । ମାଂସ ସେର ତିନିଟଙ୍କା । ମାଂସ, ମାଂସ ଭଜା, ମାଂସ ଝୋଳ । ଛେଳିକି ଚାହିଁଲେ ଭୋଜ୍ୟ ଭକ୍ଷକର ନିବିଡ଼ ସମ୍ବନ୍ଧ ଗୋପନରେ ଉପୁଜାଏ ସ୍ୱର୍ଣ୍ଣ-ଆକାଙ୍କ୍ଷା । ଦଧିବାମନ ଆଉଁସି ଲାଗିଛି ।

ଖିଦଖିଦା ହୋଇ ଛୁଆ ତିନୋଟି ଦଉଡ଼ି ଆସିଲେ, ପଛେ ପଛେ ମୁ । ବେଟୁ ଘୁଙ୍ଗୁର ଝଣକେଇ କୁଦା ମାରି ବୁଲିଲା । ଛୁଆମାନେ ପାଟିକଲେ ''ବେଟୁ-ବେଟୁ-''

ଦଧିବାମନ ଆପଣା ଘରକରଣାକୁ ଅନେଇ ଠିଆ ହୋଇଛି । ପୁଣି ଭାବିଲାଗିଛି ନିଜ କଥା । ଯାଙ୍କରି ପାଇଁ ତ'- ନହେଲେ କାହିଁକି ଏ ପରିସ୍ଥିତିରେ ତା'ର ଚାକିରି ? ବଜାରରେ ଜୋତା ମରାମତ୍ ମୋଚି ବି ଦିନକୁ ପାଏ ପାଞ୍ଚଟଙ୍କା, ରିକ୍ସାବାଲା ଦିନକୁ ପାଏ ତିନିଟଙ୍କା, ଇଟା ବାଲି ବୁହା କୁଲି, - ତା'ର ବି ମଜୁରୀ ଦେଢ଼ ଟଙ୍କା । ସାମାନ୍ୟ ଖଣ୍ଡେ ପାନ ଦୋକାନ ପକେଇ ପାରିଲେ କୋଠା ତୋଳି ହୁଅନ୍ତା । ହେଇ ତ ସାଇକେଲ ମରାମତି କରେ ଫେଦା ମିଆଁ, ବାର ବରଷରେ ସେ ଚାରିଟା କୋଠାର ମାଲିକ, ଟଙ୍କା କରଜ ଦିଏ ।

ଆଉ ସେ ନିଜେ କ'ଣ ପାରନ୍ତା ନାହିଁ ?

ଏଇମାନଙ୍କ ପାଇଁ ଆଶଙ୍କା- ବେପାରରେ ନିଜ ଗୋଡ଼ରେ ଠିଆ ହେଉ ହେଉ ଧର, ଲାଗିବ ଦି'ବର୍ଷ,- ସେତେ ଦିନ ? ମାସକୁ ନିୟମିତ ପଚସ୍ତରିଟା ଟଙ୍କା ମିଳୁଥିବ ତ ? ଯଦି ନମିଳେ ?-

ଆଗରେ କେହି ନାହିଁ, ପଛରେ କେହି ନାହିଁ । ଗଡ଼ିମଲେ କେହି ଅନେଇବେ ନାହିଁ । ଏଇ ଆଶଙ୍କାରେ ସେ ଝୁଣ୍ଟେ, ଦୁର୍ବଳ ମନର ପଙ୍ଗୁ ଭାବନାକୁ ମଠାମଠି କରି ଭାବେ- ଭାଗ୍ୟରେ ନାହିଁ । ନହେଲେ ସୌଦାଗର ହୋଇଛନ୍ତି ଯେଉଁମାନେ ସେମାନେ ଅଧିକ କ'ଣ ? ଚାକିରି ଛାଡ଼ିବାକୁ ବାରମ୍ବାର ମନସ୍ଥ କରି କରି ସେ ଏହି ଭରସିଲା ବେଳେ ହିଁ ପଛେଇଯାଏ- ପିଲାଏ କ'ଣ ଖାଇବେ ?

ନ ହେଲେ ଆଜି ଛାଡ଼ିଦିଅନ୍ତା- ଏହି ମୁହୂର୍ତ୍ତରେ । ଆଜିକା କଥା- ଅନ୍ୟାୟରେ ଗାଳି ଅପମାନ । ବଡ଼ ସାହେବ ଚୁଃ-ଚୁଃ-ଚୁଃ- ହେଲେ ଘଡ଼ିଏ କାଳ, ଯେପରିକି ଦଧିବାମନହିଁ ତାଙ୍କର ଘର ଉଜୁଡ଼େଇଛି । ଫେର୍ ଗୋଟାଏ କୈଫିୟତ୍ କାଗଜ, ତୁମେ କାହିଁକି ଅମୁକ କାମ ପକେଇ ରଖିଛ ?

ଦଧିବାମନ ପକେଟ୍ ଅଣ୍ଡାଳି ସେହି କୈଫିୟତ୍ କାଗଜଟା କାଢ଼ିଲା । ଘା'କୁ ବାରମ୍ବାର ଉଖାରି ଦେଖିବାକୁ ମନ ହେଲା ପରି ବାରମ୍ବାର ସେ କୈଫିୟତ୍ କାଗଜଟା ପଢ଼ିବାକୁ ମନ ହୁଏ । ପଢ଼ି ପଢ଼ି ମୁଖସ୍ଥ ହୋଇଗଲାଣି ସେ ଚିଠିଟା । ବଜ୍ରବାଣ ପରି ଅନ୍ତରଦହା ଭାଷା, କି ଅଭଦ୍ର ଗାଳି, କି ବେଇମାନ ! ତା'ର ଉତ୍ତର ଦେବାକୁ ହେବ । କାମ ଭିଡ଼- ଏ ଉତ୍ତର କେହି ନେବେ ନାହିଁ । ପେଟପୂରା ଖାଇବାକୁ ମିଳୁନାହିଁ, ରାତିରେ ପିଲାଙ୍କ ଅସୁସ୍ଥତା ଯୋଗୁ ନିଦ ହୁଏ ନାହିଁ- ଏ ଉତ୍ତର କେହି ନେବେ ନାହିଁ । ଅତି ଅଧିକ ଖଟିଲେ ବ୍ରହ୍ମାଙ୍କ ବିଚାରବୁଦ୍ଧିରେ ବି ଭୁଲ ହୁଅନ୍ତା-ଏ ଉତ୍ତର କେହି ନେବେ ନାହିଁ । ନିରାଟ ସତ କଥାରେ ଉତ୍ତର କେହି ନେବାକୁ ନାରାଜ । ସେମାନେ ଚାହାନ୍ତି ମିଛର ପତିଆରା । କିନ୍ତୁ ମିଛ ଲେଖିବ ସେ, ତା'ର କଳ୍ପନା କାହିଁ ?

ଦଧିବାମନ କାଗଜ ଖଣ୍ଡ ବିଛେଇ ଆହୁରି ଥରେ ପଢ଼ିଲା । ଆଖିରେ ଲୁହ ଟଳଟଳ କରୁଛି । ହାୟ ରେ ଦୁନିଆ-

''ମେଁ...ମଁୟଁ...''

ଦୁଃଖିତ ଆଖି ଦୋଟି ସେ ଥାପିଦେଲା ଛେଳିର ମୁହଁରେ । ଛେଳି ମୁହଁ ଝାଡ଼ିଦେଉଛି, କାନ ହଲୋଉଛି, ମୁଣ୍ଡକୁ ଘଷୁଛି ତା'ର ଆଣ୍ଠୁରେ, ପୁଣି ମୁହଁକୁ ଅନୋଉଛି ।

ଭଲା ଅଛି ଏ ଛେଳି, ଦଧିବାମନ ଭାବୁଛି, ଭଲା ଅଛନ୍ତି ସମସ୍ତେ, କେବଳ ମଣିଷ ନୁହେଁ ।

ହଠାତ୍ ବେଟୁ ଓଟାରିନେଲା ତା ହାତରୁ କାଗଜଖଣ୍ଡ । ତା'ର ଥୋଡ଼ି ଅଗର ଲମ୍ବ ଛାଲ କୁଞ୍ଚ କୁଞ୍ଚ ହେଲା ଅତି ତରତରରେ । ''ହାଁ ହାଁ ବେଟୁ'' କହି ଗୋଡ଼େଇ ଯାଉ ଯାଉ ସମୁଦାୟ କୈଫିୟତ୍ ଚିଠିଟା ବେଟୁର ଗର୍ଭ ଭିତରେ ।

''ଏଁ, ତୁ ଖାଇଦେଲୁ ? କ'ଣ କଲୁ ବେଟୁ ! କ'ଣ ଏଥର କୈଫିୟତ୍ ଦେବି ମୁଁ ?''

''ମଁୟଁ-ମଁୟଁ-'' ଦାଢ଼ି ସମେତ ମୁଣ୍ଡ ହଲେଇଲା ବେଟୁ ଅତି ନିର୍ଭର ଦମ୍ଭରେ- ମୁଁ ଅଛି, ଚିନ୍ତା ନାହିଁ ।

ଦଧିବାମନ ହଠାତ୍ ବେଟୁର କୃତକର୍ମର ଫଳ ବୁଝିପାରିଲା ନାହିଁ । ତା'ପରେ ସେ ବୁଝିଲା, ଏ କ'ଣ କଲା ! ଏ ତ ସର୍ବନାଶ ! କୈଫିୟତ୍ ନ ଦେଇ କେଉଁ ମୁହଁରେ ସେ ଯାଇ ବଡ଼ ବାବୁଙ୍କୁ ମାଗିବ- ଆଜ୍ଞା, ଆଉ ଖଣ୍ଡେ ନକଲ ? ମୁଖସ୍ଥ ପରି ହୋଇ ଯାଇଥିଲା । କିନ୍ତୁ ଦଧିବାମନ ବର୍ତ୍ତମାନ ଅନୁଭବ କଲା କାଗଜ ସଙ୍ଗେ ସଙ୍ଗେ ସେ ସ୍ମୃତି ବି ଯାଇଛି, ବିସ୍ବାଦ ସ୍ମୃତି, ଭାବି ଭାବି ସବୁ କଥା ମନେ ପଡୁନାହିଁ ।

ଯାଉ ଯାହା ଯିବାର । ଦଧିବାମନ ଚାଉଁକିନା ଉଠି ଠିଆ ହେଲା । ବେଟୁର ଗୋଲିଆ ଆଖିରେ ନାଲି ଚହଟିଛି । ହଠାତ ମନେ ପଡ଼ିଗଲା । ଆଖି କୁହୁଳି ଉଠିଲା । ଭାବିଲା, ଯେଉଁଠି କୈଫିୟତ୍‌ରେ ବୋଧ ହେବାକୁ ଲୋକେ ନାମଙ୍ଗ, ସେଠି କୈଫିୟତ୍ ଦେଇଥିଲେ ଅଧିକ କ'ଣ ହୁଅନ୍ତା ? କିଛି କୈଫିୟତ୍ ସେ ଦେବ ନାହିଁ । ଯାହା କରିବେ କରନ୍ତୁ । ଏତେଦିନକେ ଯେପରିକି ତା'ର ସଂଯମ ଭାଙ୍ଗିପଡୁଛି । ସେ ଗୋଟାସୁଦ୍ଧା ତୋଫାନ ।

ଘରଭିତରେ ପଶିଲା, ବେଟୁ ପିଛା ଧରିଛି । ଟେବୁଲରେ ତାଡ଼ାଏ ଫାଇଲ୍ । ଦଧିବାମନ ଟେକି ଧରିଲା । ବେଟୁର ପ୍ରଚୁର ଆଗ୍ରହ । ତୋଫାନ ମନରେ ମୋହିଁ ଦେଲା ଗୋଟାଏ ଫାଇଲ୍ ବେଟୁ ଆଡ଼କୁ । ବେଟୁ ତା'ର ଟିକି ଲାଙ୍ଗୁଡ଼ ହଲେଇ କୃତଜ୍ଞତା ଜଣେଇଁ ଫଇସଲାରେ ମନ ଦେଲା । ସେ ସ୍ଥାନୀୟ ଖବରକାଗଜ ଚାଖିଚି ଏବଂ ପିଲାଙ୍କ ବାଜେ କାଗଜ; କିନ୍ତୁ ଏ ତା'ର ନୂଆ ଅଭିଜ୍ଞତା । ଦି'ଗୋଡ଼ ଟେକି ଦେହରେ ଚଢ଼ି ବେଟୁ ମନକଥା ଜଣେଇଲା- ଅତି ସରସ ଏ ଫାଇଲ; କିନ୍ତୁ ପେଟ ପୂରିଲା ନାହିଁ ।

ଦଧିବାମନ ଧରେଇଦେଲା ଆଉ ଗୋଟିଏ ।

ତହିଁ ଆରଦିନ ।

ଅଫିସ୍ ଘର ବସାଠୁ ବେଶି ଦୂର ନୁହେଁ ।

ଠିକ୍ ଦଶଟାବେଳେ ଦରଓ୍ବାନ୍ ଦେଖିଲା, ଦଧିବାମନ ବାବୁଙ୍କ ପଛେ ପଛେ ଆସୁଚି

ଗୋଟିଏ ଛେଳି । ତା'ର ବେକରେ ଓସାର ନାଲି ଫିତା, ସେଥିରେ ଘୁଙ୍ଗୁର ଝଣ ଝଣ ବାଜୁଛି ।

''ହେଇ, ଛେଳି ପଶିଲା, ବାଡ଼ା, ବାଡ଼ା, ବାଡ଼ା ।''

''ନା, ଥାଉ'', ଦଧିବାମନ କହିଲା, ''ପୋଷା ଛେଳି । କାହାର କିଛି କରିବ ନାହିଁ । ମଣିଷ ପରି କଥା ମାନେ । ଆ'ରେ ବେଟୁ, ଆ, ମୋ ପଛେ ପଛେ ଆ ।''

ବେଟୁ ବୋଲ ମାନିଲା । ଦରୁଆନ୍ କହିଲା, ''ଆଚ୍ଛା ପୋଷା ମାନିଚି ତ !''

''ହଁ, ଅବିକଳ ମଣିଷ ପରି । ସବୁ କଥା ବୁଝିପାରେ । ଛେଳିଜାତି ସେଇଆ, ଦେଖିନ, ସର୍କସରେ ଛେଳି ନାଚେ ?''

ଅଫିସ୍ ଭିତରେ ସମସ୍ତିଙ୍କ ସାଙ୍ଗରେ ବେଟୁର ପରିଚୟ ହୋଇଗଲା ।

''ବାଃ ବାଃ, ଭଲ ବୋଦାଟେ ହେଇଚି । କେତେ ହବ, ଦଶସେରେ ମାଉଁସ ହବ ନାଇଁ ?''- ରାମବାବୁ କହିଲେ ।

''ହେଲେ କ'ଣ ହେବ ? ଖାସି କରେଇଥାନ୍ତେ କି ? ବୋଦା ମାଉଁସ ଗନ୍ଧ ହୁଏ-'' ଗୋପାଳ ବାବୁ କହିଲେ ।

ପ୍ରଶ୍ନସୂଚକ ଚାହାଣିରେ ବେଟୁ ପଚାରିଲା- ''ମଁୟଁ ?''

''କିଛି ଗନ୍ଧ ହବ ନାଇଁ-'' ଫେଦା ମିଆଁ କହିଲେ, ''ହଲାଲ୍ କରନ୍ତୁ ଏଇଟାକୁ, ଦେଖିବେ, ମୁଁ ବତେଇଦେବି ।''

ବୋଦା ରାନ୍ଧିବାର ନାନା ପ୍ରକାର ଉପାୟ ବିଷୟରେ ଆଲୋଚନା ଚାଲିଲା । ବେଟୁ ଚାରିଆଡ ବୁଲିଆସି ଦଧିବାମନର ଗୋଡ଼ରେ ମୁଣ୍ଡିଆ ମାରି ପଚାରିଲା, ''ମଁୟଁ ?''

ଦଧିବାମନ ଅଳିଆକାଗଜର ଝୁଡ଼ି ଅଜାଡ଼ିଦେଲା । ବେଟୁ ତା'ର ଗୋଡ଼ ପାଖେ ଶୋଇରହି ସେଇଥିରେ ମନ ଦେଲା ।

କାମ ଚାଲିଛି ଜୋର୍‌ସୋର୍‌ରେ । ଘଣ୍ଟାପରେ ଘଣ୍ଟା ବିତିଯାଉଛି । ବେଟୁ ଅଳିଆକାଗଜ ଶେଷ କରିସାରି ଦେଖିଲା କାମ କରୁଛି । ତାକୁ ସମୟ ଲାଗୁନାହିଁ ଫାଇଲ୍‌ଟିଏ ଶେଷ କରିବାକୁ । ଧରିଲା ତ ସରିଲା- ଡିସ୍‌ପୋଜ୍‌ଡ୍ ଅଫ୍ । ଖୋଲା ର୍ୟାକ୍‌ରୁ ଉଠେଇ ନେଇ ଥରେ ମନ ଦେଇ ଆଠଦଶଟି ଫାଇଲ୍ ଫଇସଲା କରିଦିଏ । ଘଡ଼ିଏ ଅପେକ୍ଷା କରି ବିଶ୍ରାମ କରେ । ତା'ପରେ ପହଞ୍ଚେ ଆଉ କାହା ର୍ୟାକ୍ ପାଖେ । ବେଟୁର ଆଜି ଭୋଜିଦିନ ।

ବୁଲି ବୁଲି ବଡ଼ବାବୁଙ୍କ ଟେବୁଲ୍ ପାଖେ । 'ଜରୁରୀ' ମାର୍କା କାଗଜ ଥାକ ଥାକ । ବଡ଼ବାବୁ ନାହାନ୍ତି, ସାହେବ ପାଖକୁ ଯାଇଛନ୍ତି । ବେଟୁ ତାଙ୍କର କାର୍ଯ୍ୟ ଲାଘବ କରିଦେଇ କିଛି ଉତ୍କୃଷ୍ଟ ଖାତ ରଖିଦେଇ ଫେରିଆସିଲା ।

ଦଧିବାମନ ଡ଼ାକିଲା- ''ବେଟୁ !''

ଧାଇଁ ଅଇଲା ଝଣ ଝଣ ହୋଇ ।

''ଶୋ' ଏଠି ।''

ଦଧିବାମନର ଦୁଇଗୋଡ଼ ସନ୍ଧିରେ ବେଟୁ ଅଟକିଲା ।

ବଡ଼ବାବୁ ଫେରିଲେ ।

''କ'ଣ ଆପଣମାନେ ଫାଇଲ୍ ସବୁ ପକେଇ ରଖିଛନ୍ତି; ସାହେବ ଚିଡୁଛନ୍ତି । ପଦେ କଥା କହନ୍ତୁ ତ ମତେ- ମୁଁ ନିର୍ଭର ଜବାବ୍ ଚାହେଁ, ଫାଇଲ୍ ସବୁ ସରିବ କି ନାହିଁ ? କି ଦଧିବାମନ ବାବୁ ?''

''ସରିଲାଣି, ସାର୍ !''

''ସତେ ! ମୁଁ ବଡ଼ ଖୁସି ହେଲି ।''

ବେଟୁ ଉଠିପଡ଼ି ରଡ଼ିଲା- ''ମଁୟଁ-ମଁୟଁ ।''

''ଆରେ, ଏ କାହାର ଛେଳି ପଶିଚି, ହେ ଦରଓ୍ୱାନ !''

''ସେଇଟା ମୋର ସାର୍, ସାଙ୍ଗରେ ଗୋଡ଼େଇଆସିଚି । କିଛି କରିବ ନାଇଁ ସାର୍, ଥାଉ ସେ । ଜାଣନ୍ତି ତ ସାର୍, ଗାରଡ଼ର ଗନ୍ଧ ବାଜିଲେ ଯକ୍ଷ୍ମାରୋଗର ବୀଜାଣୁ ମରିଯାଆନ୍ତି- ଡ଼ାକ୍ତର କହନ୍ତି । ଆମେସବୁ ଯେଉଁ ଅନ୍ଧାର ଘରେ ଏଠି କାମ କରୁଛୁଁ-''

''ହଁ,'' ବଡ଼ବାବୁ ଭାବି ଭାବି କହିଲେ, ''ଅକ୍ଳେଶରେ ଆଠ ସେର ମାଉଁସ ହୁଅନ୍ତା । ଖାସି କରେଇଲେ ନାଇଁ କାହିଁକି ?''

ବେଟୁ ଦାଢ଼ି ହଲେଇ କହିଲା, ''ମଁୟଁ ।'' ତା'ପରେ ଗୋଟିଏ ଗୋଟିଏ ଆଗେଇଗଲା ବଡ଼ବାବୁଙ୍କ ଜରୁର ମାର୍କା କାଗଜ ରହୁଥିବା ର୍ୟାକ୍ ଆଡ଼କୁ । ସେଠି ତା'ର କାର୍ଯ୍ୟ ଅସଂପୂର୍ଣ୍ଣ ରହିଯାଇଛି । ଆହୁରୀ କିଛି ଡ଼ିସ୍‌ପୋଜେଲ୍ ବାକି ।

# ଚିତ୍

ଶଗଡିଆସାହିର ଜଗା ପଲେଇ ଯେଉଁଦିନ ବାରବାଟି ଷ୍ଟେଡିୟମ୍‌ରେ ହେଉଥିବା କୁସ୍ତି ପ୍ରତିଯୋଗିତାରେ ଦରଭଙ୍ଗାର ରାମ ଲାଓ୍ୱନ ପାଣ୍ଡେକୁ ଜିତି ନିଖିଳ ଭାରତ କୁସ୍ତି ପ୍ରତିଯୋଗିତା ଅର୍ଥାତ୍ ନି-ଭା-କୁ-ପ୍ର ର ଶେଷ ପାହାଚକୁ ଉଠିଥିଲା ସେଦିନ କିଲ୍ଲା ପଡିଆରେ ହଜାର ହଜାର ଦର୍ଶକଙ୍କ ଉତ୍ତେଜିତ ହର୍ଷରୋଳରେ ଗଗନ ଫାଟି ପଡିଥିଲା । '' ଜଗା ପଲେଇର ଜିତା ନୁହେଁ, ଓଡିଶା ଜିତିଛି । ଓଡିଶା ଜିତିଛି ।'' ସବୁଠି ଏହି ଚେତନା । ସେହି ମୁହୂର୍ତ୍ତରେ ଓଡିଶାର ଜନତାର ମନଓରମାଣମେଣ୍ଟା ଆଶା ଆସ୍ପର୍ଦ୍ଧା ପୂରଣର ପ୍ରତୀକ ସେହି ଆଗରୁ ଅଚିହ୍ନା ଅଜଣା ଅଶୁଣା କୁସ୍ତି ପହିଲ୍‌ମାନ୍ ଲୋକଙ୍କୁ ଏପରି ଲାଗୁଥିଲା ଯେ ତା ପାଖକୁ ଯିବାକୁ ଚାରିଆଡୁ ଠେଲାପେଲା ଚାଲିଲା, ସେହି ମଣିଷ-ସମୁଦ୍ରରେ ନାନାଆଡୁ ଢେଉ ମାଡିଆସି ଢ଼ାଇ ହୋଇଥିଲା, ଡାକ୍ତରଖାନାକୁ ବୁହାହୋଇ ଚାଲିଗଲେ ଅନ୍ତତଃ ଏକୋଇଶି ଜଣ, ତା' ପରେ ସେହି ଅନିୟନ୍ତ୍ରିତ ଭିଡ ଭିତରେ ଏପରି କଳିକନ୍ଦଳ ଲାଗିଲା ଯେ ଅବସ୍ଥା ସମ୍ଭାଳି ଜନତାକୁ ବାଟକୁ ଆଣିବାକୁ ପୁଲିସ୍ ଫଉଜ ଡକାଇବାକୁ ପଡିଲା ।

ସେଦିନ ସେହି ଯେଉଁ ଜନତା ଘରକୁ ଫେରିଲା, ସେଥିଭିତରୁ କାହାର କାମିଜ ଚିରିଛି, କାହାର ଦେହରେ ଦରଜ, କାହାର ଘଣ୍ଟା କି ଫାଉଣ୍ଟେନ୍ ହଜିଛି । ସେଥିରେ ପ୍ରତି ଲୋକର ଛାତିରେ ଥିଲା ଓଡିଆ ଜାତୀୟ ଚେତନା, ଆଉ ଏପରି କିଛି, ଯାହାକୁ କୁହାଯାଇପାରେ ବୀରମଦ । ସତେକି ପ୍ରତ୍ୟେକେ ଜଣେ ଜଣେ ଜଗା ପଲେଇ ।

ଖବରକାଗଜରେ ସେହି ପ୍ରସିଦ୍ଧ କୁସ୍ତିର ଫଟୋ ବାହାରିଲା । ଜଗା ପଲେଇର ପ୍ରଶଂସାରେ ସବୁ ଓଡିଆ ଖବରକାଗଜ ମୁଖର ହୋଇଉଠିଥାନ୍ତି । ''ଓଡିଶାର ଗୌରବ ଜଗା ପଲେଇ ।'' ''ଓଡିଶାର ଇଜ୍ଜତ ଜଗା ପଲେଇ ।'' ''ଅ-ଦ୍ୱିତୀୟ ଓଡିଆ ପହିଲ୍‌ମାନ୍ ଜଗା ପଲେଇ ।'' ''କଟକରେ ଅଦୃଷ୍ଟପୂର୍ବ କୁସ୍ତି ।'' ''ବ୍ୟାୟାମସମ୍ରାଟ ଜଗା ପଲେଇ ।'' ''ଅଜେୟ ବ୍ୟାୟାମଶିଳ୍ପୀଙ୍କ ଅଭିନବ କୃତିତ୍ୱ ।'' ଏହିପରି ନାନା ଶିରୋନାମା ।

ଖବରକାଗଜ ମଫସଲରେ ପହଞ୍ଚିବାମାତ୍ରେ ସେଠି ବି ଚହଳ ଖେଳିଗଲା । କେତେ ଲୋକ ନିଜ କର୍ମକୁ ନିନ୍ଦିଲେ ଯେ ଏପରି ଗୋଟିଏ ଘଟନାର ସେମାନେ ପ୍ରତ୍ୟକ୍ଷଦର୍ଶୀ ହୋଇପାରିଲେ ନାହିଁ । କଟକ ଜିଲ୍ଲା ମହୀଧରପଡା ଗାଁ ପାଖରେ ଯେଉଁ ବିଲର ଝର ଦିନାକେତେ ବଡ ତୀର୍ଥ ହେଲା, ସେଠିକି ଯାଇ ନ ପାରି କେତେକଙ୍କ ମନରେ ଯେପରି ଖେଦ ରହିଗଲା, ଗୋବିନ୍ଦଦ୍ୱାଦଶୀକୁ ପୁରୀ ଯାଇ ନ ପାରି କେତେ ଲୋକ ଯେପରି ହତସନ୍ତ ହେଲେ, ଖବରଟା କେତେ ଲୋକଙ୍କ ମନରେ ସେମିତି ଗୋଟାଏ ଓରମାଣ କୁହୁଳେଇଥିଲା । ତା ସଙ୍ଗେ ସଙ୍ଗେ ଆସିଲା ଗୋଟାଏ ପୁଲକ, ଗୋଟାଏ ଗର୍ବ-

''ଓଡିଶା ଜିତିଛି ।'' କେତେ ଲୋକ ଭାବପ୍ରବଣ ହେଲେ । ଘଟନାର ପ୍ରାୟ ସାତ ଦିନ ପର୍ଯ୍ୟନ୍ତ ଯେଉଁ ସମୟ ଚାଲିଲା ତାକୁ କୁହାଯାଇପାରେ ''ଜଗା ପଲେଇ ସପ୍ତାହ ।'' ରେଲ୍‌ରେ, ବସ୍‌ରେ, ହୋଟେଲ୍‌ରେ, ଗାଁ ଭାଗବତ ଟୁଙ୍ଗୀରେ ଜଗା ପଲେଇର କୁସ୍ତି କଥା । ମଙ୍ଗଳଗ୍ରହକୁ ହାଙ୍କେଲି ଉଡାଜାହାଜରେ ପୂରାଇ ମଣିଷ ପଠାଇବା ସମ୍ବାଦ, କଙ୍ଗୋରେ ଲୁମୁମ୍ବାଙ୍କ ମୃତ୍ୟୁ ଓ ତହିଁ ଉତ୍ତାରୁ କଙ୍ଗୋ ରାଜନୀତିର ଦିନ ଦିନକର କାହାଣୀ, ପଞ୍ଚାୟତ ସମିତି ଓ ଜିଲ୍ଲାପରିଷଦ ନିର୍ବାଚନରେ ହାରିବା ଜିତିବା ଖବର, ଦେଶରେ ନାନା ଚାଞ୍ଚଲ୍ୟକର ପରିବର୍ତ୍ତନ, ଏହି ସବୁ ଖବରର ଆଲୋଚନା ଉପରେ ମାଡିବସିଲା ଜଗା ପଲେଇର କୁସ୍ତି । ବର୍ଷେକାଳ ବାହାଡିଥି ନାହିଁ ବୋଲି ଜାରି ହୋଇଥିବାରୁ ସେହି ପନ୍ଦର ଦିନ ଭିତରେ ଶହ ଶହ ବିଭାଘର ହୋଇଗଲା, ତେଣୁ ଶହ ଶହ ବିବାହଭୋଜି ମେଳଣ ଘଟିଗଲା । ସେଠି ଜଣେ ଆଉଜଣକୁ ଦେଖିଲାମାତ୍ରେ ପଚାରେ, ''ଜଗା ପଲେଇ କୁସ୍ତି ଦେଖିବାକୁ ଯାଇଥିଲେ ନା ? କେମିତି ଲାଗିଲା ?'' ନ ଦେଖିଥିଲେ ବି ଉତ୍ତର ଦେବାକୁ ପଡେ, ''ଭାରି ଚମତ୍କାର, ଭାରି ବଢ଼ିଆ ।'' ଦେଖିନାହିଁ ବୋଲି କହିବା ସତେକି ଗୋପନ ଅପରାଧ ସ୍ୱୀକାର କରିବାଠୁଁ ବଳି ।

ସେହି ଜଗା ପଲେଇ ସପ୍ତାହ ଭିତରେ ଦେଖାଗଲା, ଗହଳି ଜାଗାରେ ପାଞ୍ଚ ପୃଷ୍ଠାର ଗୋଟିଏ ଚଟି ଗୀତ ବହି ବିକା ହେଉଛି, ଭଣତି କବି ଆବିଦ୍, ମୂଲ୍ୟ ଦଶ ନୂଆ ପଇସା । କଚିରି ଆଗରେ, ରେଲ୍ ଷ୍ଟେସନରେ, ମଟର ଷ୍ଟେସନରେ, ବଡ ଛକରେ ହାର୍ମୋନିଆ ବଜାଇ ସେ ଗୀତକୁ ଗାଇ ଗାଇ ବୁଲାବିକାଳି ଚରୁଥିବା ଦେଖାଗଲା । ସେ ସେହି କୁସ୍ତି ବିଷୟରେ । ସହରର ଫଟୋଦୋକାନ ମାନଙ୍କରେ, ସ୍ଥାନେ ସ୍ଥାନେ ମିଠେଇ ଦୋକାନରେ, ଚାହା ଦୋକାନରେ ଓ ପାନ ଦୋକାନରେ ସେ କୁସ୍ତିର ଫଟୋ କାଚରେ ବନ୍ଧା ହୋଇ ଝୁଲୁଥିବାର ଦେଖାଗଲା ।

ଅଲାଣ୍ଡୋ ମହିଳାମଣ୍ଡଳୀ, ଓଲଂସ ଯୁବକମଣ୍ଡଳୀ,ଗଦ୍ଦବସ୍ତ ଗ୍ରାମସମାଜ, ବାର୍ମିସାହି ଟକର୍ସ କ୍ଲବ, ଗଙ୍ଗନଗର ସାଂସ୍କୃତିକ ସମାଜ, ଉତ୍ତରବାଡ, କୁଚିନ୍ଦା ମୀନାମଣ୍ଡଳୀ, ଘୁଷୁରିର ଅବସର-ବିନୋଦନସମାଜ, ଏହିପରି ନାନା ଅନୁଷ୍ଠାନ ଜଗା ପଲେଇଙ୍କୁ ଅଭିନନ୍ଦନ ଜଣାଇ ପ୍ରସ୍ତାବ ପାସ୍ କରି ଖବରକାଗଜମାନଙ୍କୁ ପଠାଇଥିଲେ ।

ସେତେବେଳେ ଜଗା ପଲେଇଙ୍କ ପ୍ରସିଦ୍ଧ କୁସ୍ତି କେତେ ଚିନ୍ତକ ଦାର୍ଶନିକ ପଣ୍ଡିତଙ୍କ ବିଚାରଧାରାକୁ ପ୍ରଭାବିତ କରିଥିଲା ବୋଲି ଲାଗୁଥାଏ । ସେହି ସପ୍ତାହ ଭିତରେ ମତ୍ସ୍ୟଜୀବୀସଂଘର ବାର୍ଷିକ ଅଧିବେଶନର ସାହିତ୍ୟ ସଭାରେ ପ୍ରଧାନ ପଣ୍ଡିତ କାଳିଦାସଙ୍କ ଶକୁନ୍ତଳା ନାଟକ ବିଷୟରେ ବକ୍ତୃତା ଦେଉ ଦେଉ ଯେତେବେଳେ ଅନ୍ୟ ଆଡକୁ ମାଡିଯାଇ ତାରସ୍ୱରରେ କହିଲେ, ''କଳିଙ୍ଗାଃ ସାହସିକାଃ'' ଓ ଖାରବେଳଙ୍କ ମଗଧ ଅଭିଯାନ ବିଷୟରେ କହିସାରି ରବି ଠାକୁରଙ୍କ ଦୁଇ ବିଘା ଜମିରୁ ''ହେନକାଲେ ହାୟ ଯମଦୂତ ପ୍ରାୟ'' ଆଦି ଆବୃତ୍ତି କରି ଭାବପ୍ରବଣ ହୋଇ ଆଖି ପୋଛି ପୋଛି ତାଙ୍କର ଅଭିଜ୍ଞାନ ଶାକୁନ୍ତଳମ୍ ବିଷୟକ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଶେଷ କଲେ ଓ ତାଙ୍କୁ ଧନ୍ୟବାଦ ଦେବାକୁ ଯାଇ ଆଉ ଜଣେ ପ୍ରସିଦ୍ଧ ବକ୍ତା ୧୮୦୩ ପରେ ଓଡିଶା ଶୋଷଣର କ୍ରମ ବିଷୟରେ ଆଲୋଚନା କରି ସେହି ସବୁ କାରଣରୁ ଏ ଦେଶରେ ସଂସ୍କୃତ ସାହିତ୍ୟ ଆଲୋଚନା କିପରି ବ୍ୟାହତ ହେଲା ସେ ବିଷୟରେ ଦୁଃଖ ପ୍ରକାଶ କଲେ, ସେତେବେଳେ ଲାଗୁଥାଏ, ସେମାନଙ୍କ ମନରେ ସତେ କି ଦବିଥିବା ଚକ ଟେକା ହେଲା ବେଳର ଉତ୍ତେଜନା ଖେଳୁଛି । କେତେଠି ସେତେବେଳେ ଜଟା

ଘା ହାକୁ ହାକୁ ହେଉଥିଲା । ଲୋକେ କୁହାକୁହି ହେଉଥିଲେ, ଷଢ଼େଇକଳା-ଖରସୁଆଁ-ମେଦିନୀପୁର-ମଞ୍ଜୁଷା-ବସ୍ତର ।

ଏଣେ ଯେତେବେଳେ ଚାରିଆଡେ ଜଗା ପଲେଇ ବୁରି ପଡିଥିଲା ସେତେବେଳେ ଶଗଡିଆସାହିର ଜଗା ପଲେଇ ତା'ର ପୂର୍ବବୃତ୍ତି ଅନୁସରି ମାଲଗୋଦାମରେ ବସ୍ତା ବୋହୁଥିଲା । ସେ ଏ କାର୍ଯ୍ୟ ତା'ର ପନ୍ଦର ବର୍ଷ ବୟସ ବେଳୁ କରିଆସିଛି, ସେହି ଯେତେବେଳେ ତା' ବାପ ଉଦ୍ଧବ ପଲେଇ ଦିନେ ବର୍ଷାପାଗରେ ମହାଜନର ଶଗଡ ଆଣି ମହାଜନଘରେ ଜିମା କରିଦେଇ ଆପଣା ଘରେ କାନି ପାରି ଶୋଇପଡିଲା, ଆଉ ଉଠିଲା ନାହିଁ ।

ଉଦ୍ଧବ ପଲେଇ ପଡିଥିଲା ନିଉମୋନିଆ ରୋଗରେ । ମହମଦିଆ ବଜାରର ଗୁଣିଆ ଛୋଟା ମିଆଁ ଆସି ତାକୁ ଝାଡିଥିଲା, ଫୁଙ୍କିଥିଲା । ଟେଙ୍କର ସାହି ଗୋବିନ୍ଦ ଘଡେଇ କଟିରି ହତାରେ ନାନା ରୋଗ ଭଲ କରିବା ପାଇଁ ଔଷଧ ବଟିକା ସଜାଇ ରଖେ, ପିତା କଷା ରାଗ ଲୁଣି ଏହିପରି ଚାରି ପ୍ରକାର ବଟିକା ତାକୁ ଖୋଇଥିଲା । ସାତ ସୁଉକା ନେଲା । ତିନିଘେରିଆର ବାବାଜି କରୁଣି ଗୋସେଇଁ ବ୍ୟବସ୍ଥା ଦେଇଥିଲେ ଯେ ବୁଧବାର ଦିନ ବୁଲା ଗୋରୁଙ୍କ ଆଗରେ ଅଠର ବିଡା ନଡା ପକାଇଦେଇ ସଡକ ଧୂଳିରେ ଲମ୍ବ ହୋଇ ଗୋଡତଳେ ପଡିଗଲେ ରୋଗ ଅବଶ୍ୟ ଭଲ ହେବ । ତା ବି କରାଗଲା; କିନ୍ତୁ ଉଦ୍ଧବ ପଲେଇ ଅଟକିଲା ନାହିଁ, ମଲା ।

ନିଉମୋନିଆ ରୋଗ ଭଲ କରିବା ପାଇଁ ମନୁଷ୍ୟ ଜାତି କ'ଣ ସତେ ଔଷଧ ଆବିଷ୍କାର କରିଛି, ସେ ତା ଜାଣିବାକୁ ସୁଯୋଗ ପାଇଲା ନାହିଁ ।

ବଡ ସହର । ପୋଷଣାହାରି ବାପ ନାହିଁ । ବୃତ୍ତି ନାହିଁ । ସଞ୍ଚୟ ନାହିଁ । ସାହାଯ୍ୟ ନାହିଁ । ଦୁଇ ବଖରା ଚାଳଘର ଓ ତିନି ଗୁଣ୍ଠ ଜମି ଉପରେ ଥିଲାବାଲାଙ୍କର ଚିଲଚାହାଣି । ଘରେ ବିଧବା ମା, ନିପାରିଲା ବୟସର ଦି ଭାଇ ଜଗା ଓ ଖଗା, ତାଙ୍କ ତଳେ ବାର ବର୍ଷର ଭଉଣୀଟିଏ, ସର । ହିତକାରିଆ ଉପଦେଶ ଦେବାକୁ ଆସି ପହଞ୍ଚିଗଲେ । କହିଲେ , ଏଥର ଏ ଜାଗାଟା ବିକିଦିଅ, ଆଉଠିକି ଉଠିଯାଇ ଶସ୍ତାରେ ଘର ଖଣ୍ଡେ ତୋଳି ବଳକା ଧନରେ କିଛି ବେପାର କର । ଯୁକ୍ତି ବି ହୃଦ୍‌ବୋଧ ହେଲାଭଳି । ଏଠି ସିନା ଏଡେ କନ୍ଦି ଜାଗା, ହେଲେ ଟିକିଏ ଚାଲିଗଲେ ତ ବଡ ରାସ୍ତା ହାବୁଡିବ, ଗୁଣ୍ଠକ ହେଲାଣି ସାତ ଶହ, ଘର ଦି ବଖରା ମିଶାଇ ତିନି ହଜାର ବି ମିଳିପାରେ; କିନ୍ତୁ ଗୋଶାଳାପଟେ କି ତୁଳସୀପୁରରେ କି ବିଡାନାସୀରେ କି ଉତ୍ତମାପୁରରେ ଜମି ଟିକିଏ କିଣି ଘର କରିବାକୁ ଏତେ ଖର୍ଚ୍ଚ ତ ପଡିବ ନାହିଁ ।

ପିଠିଆଡେ କଳା କିଟି କିଟି ଅସନା ନାଳ, ଡାହାଣପଟେ ସିଙ୍ଘାଣି ଭୁଟୁ ଭୁଟୁ ସଢ଼ା ପୋଖରୀ, ବାଁପଟେ ଗୋଟିଏ ଧୋବାଘର ଓ ତାକୁ ଲାଗି ବସ୍ତି ଲମ୍ବିଛି । ସାମନାରେ ଛ ସାତ ହାତ ଗଳି ଓ ଗରିବଦାସ ମହାଜନଙ୍କ ଦୋମାହାଲା କୋଠାର ପାଚିରିର ପିଠି, ଜଳାବାଟେ କଳାପାଣି ବୋହି ବୋହି ଆଗର ସେହି ଛ ସାତ ହାତ ଓସାର ଖୋଲା ଜାଗାରେ ଠୁଳ ହୁଏ । ବଢ଼େ, ମାଡେ, ଦଲଦଲାଏ ।

କିନ୍ତୁ ଉଦ୍ଧବ ପଲେଇ ବି ତା'ର ସେହି ତିନିପୁରୁଷିଆ ଜାଗାକୁ ବିକି ନାହିଁ, ତା ସ୍ତ୍ରୀ ଓ ପୁଅ ବି ବିକିଲେ ନାହିଁ, ହିତକାରିଆଙ୍କ ଉପଦେଶ ପାଣିରେ ପଡିଲା ।

ସେମିତି ସେ ଉପକାରିଆ ବନ୍ଧୁମାନେ ଉପଦେଶ ଦେଇଥିଲେ ଯେ ଏ ଘରର ଲୋକେ ଏଥର ନିଜକୁ ବି ବିକିଦିଅନ୍ତୁ । କାହା କାହା ଘରେ ଚାକର ଚାକରାଣୀ ହୋଇ ରହିହେବ । ନ ହେଲେ ପୋଷିବ କିଏ ? ପନ୍ଦର ବର୍ଷରେ ଜଗାର ଚେହେରାଟି ଦେଖିଲା ଭଳି । କିଏ ଡାକିଲା ଶଗଡ କାମରେ ମଣ ହେବାକୁ, କିଏ ଡାକିଲା କରତ ପେଲା ଶିଖିବୁ ଆ, ଅନେକ ଡାକିଲେ ଦୋକାନରେ ଚାକର ରହିବୁ ଆ, ଜଣେ ବାବୁ ଫୁସୁଲେଇଲେ ମୋ ଘରେ ଆସି କାମଦାମ କର, ପଛେ କେଉଁଠି ଚପରାସି କାମରେ ରଖେଇଦେବି । ଜଣେ ଖାନ୍ଦାନ୍ ନାଁ ଡାକ ଲୋକଙ୍କ ପାଖରେ ବୁଲିବା ଲୋକ ଆସି କହିଲା, ତୋ କପାଳ ଖୋଲିଗଲା ରେ, ତତେ କେମିତି ଦେଖିଲେ କେଜାଣି, ସେ ନିଜେ କହିପଠେଇଛନ୍ତି । କାମ କିଛି ନାହିଁ, ତାଙ୍କ ସଙ୍ଗରେ ରହିଥିବୁ, ଯୁଆଡେ ଯେଉଁ ଦେଶକୁ ଗଲେ ଯିବୁ, କ'ଣ ସାମାନ୍ୟ ବୋଲହାକ ବରଗିବେ କରିବୁ, କେତେ ଖାଇବୁ, କେତେ ପାଇବୁ , ତା ଉପରେ ପୁଣି ଦରମା । ଆରେ, ତୋ ପାଦ ତଳେ ଲାଗିବ ନାହିଁ, ଖାଲି ମଟରରେ ଉଡାଜାହାଜରେ ବୁଲିବୁ, ଗଦିରେ ଶୋଇବୁ, ଦାମୀ ପୋଷାକ ପିନ୍ଧିବୁ, ପେଟ ପୂରେଇ କେତେ ସୁଆଦିଆ ସୁଆଦିଆ ଜିନିଷ ଖାଇବାକୁ ପାଇବୁ । କେତେ ଅନୁସରଣିଆ ଗୋଡାଣିଆ ଆସି କେତେ ପ୍ରକାରରେ ତତେ ପାକଳାପାକଳି ଫୁସୁଲାଫୁସୁଲି କରୁଥିବେ, ତୁ କାହାକୁ ମାରିବୁ କାହାକୁ ତାରିବୁ । ତୁ ବି ହେଇପାରିବୁ ଜଣେ ଦର୍ମ୍ମିଲା ମଣିଷ । ତାଙ୍କ କଥା ଜାଣିନୁ, ଯେ ତାଙ୍କୁ ଆଶ୍ରା କରିଛି କାହାକୁ ସେ କଣ ନ କରିଛନ୍ତି ! ଆରେ ସେ ମଣିଷ ସେମିତିଆ, ପଇସା ତାଙ୍କ ଆଖିରେ କ'ଣ ? ଆମକୁ ଯେମିତି ଗୋଡିମାଟି ।

ଜଗା ପଲେଇ ଗୁମ୍ ହୋଇ ରହି ସବୁ ଶୁଣୁଥିଲା । ତା ଭିତରେ ଯେମିତି କିଏ କହୁଥିଲା, କାନ ଦେ ନାଇଁ ଜଗା, ଆଖି ବୁଜି ଦେ, ନଁ ନାଇଁ ।

ନା, ଚାକିରି ସେ କରିବ ନାହିଁ, କାହାରି ଆଶ୍ରାରେ ବାନ୍ଧି ହେବ ନାହିଁ । ଯେତେ ବଡ ବଡ ରୁମ, ମୋଟ ଲାଙ୍ଗୁଡ, ବଡ ଶରୀର, ଠିଆ ନିଶ ଆଉ ମୋଟ ମୋଟ ଦାନ୍ତ ହେଲେ ବି କୁକୁରଟା କୁକୁରହିଁ ତ, ଖାଉନ୍ଦ ତୁ ତୁ ଡାକିଲେ ଧାଇଁଯାଏ, ଲାଙ୍ଗୁଡ ହଲାଏ, ଜୋତାକୁ ଚାଟେ; ବେକପଟିରେ ଜଞ୍ଜିର ବନ୍ଧା ହୋଇ ଖୁଣ୍ଟିରେ ବନ୍ଧା ହୋଇ ପଡିଥାଏ । କୁକୁର ତା ଖାଉନ୍ଦ ସଙ୍ଗେ ମଟରରେ ବସି ଯାଏ, ବଡ ମୁଣ୍ଡକୁ କାଚରେ ଠେଁସି ଦେଇ ବଡ ବଡ ଆଖି କରି ରାସ୍ତାକୁ ଅନାଁଏ, ଜିଭ ଲହ ଲହ କରେ । ଲୋକେ ତା ଠାଣି ଆଉ ଠାଣ୍ଟ ଦେଖି କେତେ ପସନ୍ଦ କରନ୍ତି । ଯେତେ ହେଲେ କେହି ତ କେବେ କହେ ନାହିଁ, ସେ କୁକୁର ଛଡା ଆଉ କିଛି ବୋଲି !

ପନ୍ଦର ବର୍ଷର ଜଗା ପଲେଇର ବିଚାର ଭିତରେ ସତେ କି ତା'ର ରକ୍ତର ଗୁଣ ଏ ଛବି ଆଙ୍କି ଦେଇଥିଲା, ହିଡମାଟି ହିଡରେ ଲଦୁଥିବା ଅତୀତର ଅଜଲନ୍ତି ପୂର୍ବପୁରୁଷଙ୍କର ବିଚାରର ପରମ୍ପରା ତା ରକ୍ତରେ ବି ସାଇତି ରଖିଥିଲା ଗୋଟାଏ ଅଣନୁଆଣି ଏକବାଗିଆ ଚେମେଡା ଆଣ୍ଠ , ସହରରେ ତିନି ପୁରୁଷର ରହଣି ତାକୁ କଳଙ୍କି ଲଗାଇ ପାରି ନାହିଁ ।

ଏତେ ଯଚାଯଚି ଫୁସୁଲାଫୁସୁଲିକୁ ପିଠି ବୁଲେଇଦେଇ ସେ ଆପଣା ପାଇଁ ବରଣ କରିନେଲା ବୋଝବୁହା ହେମାଳି କାମ , ନିତି ଖଟିଖିଆ ମୂଲିଆ ଜୀବନ । ତା ବୋଉ ଆପତ୍ତି କଲା ନାହିଁ । ଝିଅକୁ ହାତବାରିସୀ କରି ବରାଗୁଲୁଗୁଲା, ଚକୁଳି, ଏଣ୍ଡୁରିପିଠା ତିଆରି କରି ଆଗ ବଖରାରେ ସେମାନେ ସାନ ଦୋକାନଟିଏ ଠିଆ କଲେ । ଜଗାବୋଉର ହାତ ସୁଆଦ । ବିକ୍ରି ଚାଲିଲା । ଖଗା

ବୁଲି ବୁଲି ଚିନାବାଦାମ ଓ ବାରମଜା ବିକିଲା । ତା'ପରେ ରହିଗଲା ଜଣକର ବିଡ଼ିତିଆରି କାରଖାନାରେ, ବିଡ଼ି ବଳିଲା । ଚାରିଜଣିଆ ପରିବାରଟି ଚଳିଗଲା କୌଣସିମତେ, କେହି ମଲେ ନାହିଁ, ଘର ବିକା ହେଲା ନାହିଁ, ପଦାରୁ ଦେଖିଲେ ଯେମିତି ନା ସେମିତି । ଚାରୋଟି ମଣିଷ ଏକମନ ହୋଇ କେତେ ଭୋକଉପାସ ରହିଲେ, ପାଟିଟକ ରୋକିଲେ, ପଦାରେ କେହି ଜାଣିଲେ ନାହିଁ ।

ଜଗାର ଗୋଟିଏ ଝୁଙ୍କ ଥାଏ, ଶରୀରଚର୍ଚ୍ଚା । ସେଥିପାଇଁ ଉତ୍ସାହ ଦେଇଥିଲେ, ଶଗଡିଆସାହିର ବୁଢ଼ା ଖଲିଫା, ତା ବାପର ଧର୍ମବାପ । ପାକେଲା ଆମ୍ବ ପରି ଗୋରା, ଭେଣ୍ଡିଆ ଲୋକର ଦେହ ପରି ଦେହ, ଛାତିଯାକେ ଓହଳିଥାଏ ଧଳା ଦାଢ଼ି, ଟିକି ଟିକି ନେଳିଚା ଆଖିରେ ସାନ ପିଲାର ଚାହାଣି, ମୁଣ୍ଡରେ ଶାଗୁଆ ଛିଟଛିଟ ପାଗ , ପିଲାଦିନେ ବୁଢ଼ା ଖଲିଫା ତା କାନ୍ଧକୁ ଧରି ଝାଙ୍କିଦେଇ କହିଥିଲେ, ତୁ କାହିଙ୍କି ଆମ ଆଖଡାରେ ମିଶୁନାହୁଁରେ ଟୋକା ? ତୋ ଦେଇ ତ ଭଲ ହୁଅନ୍ତା । ଆରେ ଉଦ୍ଧବ, ୟାକୁ ମୋ ହାତରେ ଛାଡ଼ି ଦେ, ପହିଲ୍‌ମାନ 'ବନେଇ'ଦେବି । ଉଦ୍ଧବ ହସି ହସି କହିଥିଲା, ''ଦେଇଦେଲି, ନେଇଯା ।'' ସେଦିନୁ ଚାଲିଛି ।

ବୁଢ଼ା ତେନ୍ତୁଳିଗଛ ଛାଇତଳେ ଦେଢ଼ ପୁରୁଷ ଉଚ୍ଚ ପାଚିରି ଘେରା ହୋଇ ହତା । ହତା ଆଗରେ ଦୁଇ ବଖରା ଅତି ପୁରୁଣା କୋଠା, ଖଲିଫାଙ୍କ ରହିବା ଘର । ସ୍ତ୍ରୀ ନାହିଁ, ପୁଅଝିଅ ନାହାନ୍ତି, କେବେ ଥିଲେ ଜଣାନାହିଁ । ଜୀବନରେ ଗୋଟିଏ ସଉକ, ତାଙ୍କର ପ୍ରସିଦ୍ଧ ଆଖଡ଼ା । ଆଖଡ଼ା ଚାଲେ ହତାରେ ।

ଅନ୍ଧାର ଥାଉ ଥାଉ ଜଗା ସେହି ଆଖଡ଼ାକୁ ଯାଇ ଦଣ୍ଡ, ବୈଠକ, ମୁଦ୍‌ଗରବୁଲା ଓ ଅନ୍ୟାନ୍ୟ ନାନା ପ୍ରକାର କସରତ୍ କରେ, କୁସ୍ତି ଲଢ଼େ, ବନାଠି ବୁଲା ଓ ଲାଠି ଖେଳ କରେ । ଆଖଡ଼ାରେ କେତେ ଲୋକ ମିଶନ୍ତି, କିଏ ପୁଣି କେଉଁଦିନଠୁଁ ଆଉ ଆସନ୍ତି ନାହିଁ । କିନ୍ତୁ ସେହି ପାଚିରିଘେରା ହତାରେ ଏପରି କୌଣସି ଦିନ ଉଦେ ନାହିଁ, ଯେଉଁଦିନ ସୂର୍ଯ୍ୟୋଦୟବେଳେ ସେ ହତାରୁ ଜଗୁ ପଲେଇ ବାହାରିଯାଉଥିବା ଦେଖା ନ ପଡ଼େ ।

ସହରରେ ଆଉ କେଉଁ ଆଖଡ଼ାରେ କିଏ ଯୋଗ୍ୟ ଲୋକ ଅଛନ୍ତି ଖଲିଫାଙ୍କୁ ସବୁ ଜଣା । ଅନ୍ୟ କେଉଁ ସହରରୁ କେଉଁ ଯୋଦ୍ଧା ଆସି ପହଞ୍ଚିଲେ ତାଙ୍କୁ ସମ୍ବାଦ ମିଳେ, ତା ପରେ ନିମନ୍ତ୍ରଣ ଯାଏ, ବଳ କଷାକଷି ଲାଗେ । ଗତ ତିନି ବର୍ଷ ହେଲା ଏମିତି ନାନା ପ୍ରତିଯୋଗିତାରେ ଜଗା ପଲେଇ କ୍ରମାନ୍ୱୟରେ ଜିତିଆସିଛି, କେବେ ହାରି ନାହିଁ । ଏଡ଼େ ବଡ଼ ସହରରେ ଯେଉଁ ଅଳ୍ପ କେତେ ଜଣ ଲୋକ ଫୁଲ୍‌କାରୁ ଓହ୍ଲାନ୍ତି କି କୁସ୍ତି କସରତ୍ ସହିତ ସମ୍ପର୍କ ରଖନ୍ତି ସେମାନେ ଜଗା ପଲେଇର ନାଁ ଜାଣନ୍ତି । ପଚାରିଲେ କହିବେ, ଟୋକାର ଦେହଟା ଲୁହାପରି, ଧରି ପକେଇଲେ ଛାଡ଼ିବ ନାହିଁ, ଅସମ୍ଭବ ପ୍ରକାରେ ତାର ଦମ୍, ତା ଗତି ବିଜୁଳୀ ପରି, ଉମର ଖଲିଫାଙ୍କଠୁ ପେଞ୍ଚ କାଇଦାଗୁଡ଼ିକ ଶିଖିନେଇଛି ସବୁ । କିନ୍ତୁ ଯେଉଁମାନେ ଏ ଖବର ରଖନ୍ତି, କ୍ୱଚିତ୍ ସେମାନେ ଅଫିସ୍ କି କଚିରି କି ସେମିତିଆ ଅନ୍ୟାନ୍ୟ ଚିହ୍ନାଜଣା ଶ୍ରେଣୀର ଲୋକ । ସେଥିଭିତରୁ କାହାର ପାନ ଦୋକାନ, କାହାର ଫଳ ଦୋକାନ, କାହାର ସାନ ଚାଉଳଡାଲି ଦୋକାନ କି ପରିବାପତ୍ର ଦୋକାନ, କିଏ ଦର୍ଜି, କିଏ କଂସେଇ, କିଏ ଶଗଡ଼ିଆ, କିଏ ମଟର ଡ୍ରାଇଭର; କିଏ ବଢ଼େଇ, କିଏ ଆଉ କେଉଁ ବୃତ୍ତିଧାରୀ । ଆପଣା ଆପଣା ବୃତ୍ତିର ଧନ୍ଦା ସେମାନଙ୍କୁ କାର୍ଯ୍ୟବ୍ୟସ୍ତ ରଖେ, ପ୍ରଚାର ସେମାନଙ୍କର ମାର୍ଗ ନୁହେଁ,

ତା' ଛଡ଼ା ଖଲିଫାଙ୍କର କଟକଣା ଅଛି । ଆଖଡ଼ାର କଟକଣା ମାନିବାହିଁ ସମ୍ମାନକର । ତେଣୁ ସେମାନେ ଲୋକ ଭେଳେଇ ବାହାବଳ ଦେଖାଇ ହୁଅନ୍ତି ନାହିଁ । ଦୁର୍ବଳ ଲୋକ ଦେଖିଲେ ତା ହାତ ମୋଡ଼ନ୍ତି ନାହିଁ, କାନ୍ଧକୁ ଟାକନ୍ତି ନାହିଁ, ଛାତି ଫୁଲାନ୍ତି ନାହିଁ । ପରପୀଡ଼ା ପାଇଁ ବା ପ୍ରଚାର ପାଇଁ ସେ ବଳ ଖର୍ଚ୍ଚ ହେବ ନାହିଁ, ଏହିପରି ତାଙ୍କର ଉପଦେଶ । କେବଳ ଦଶହରାରେ, ମହରମ୍‌ରେ ତାଙ୍କରି ଥାଟ ଖେଳ ଦେଖାଇ ବୁଲିବାର ପ୍ରଥା ଅଛି, ଆଉ କେତେବେଳେ ସେମାନେ ପ୍ରତିଯୋଗିତାରେ ମିଶନ୍ତି ।

ଆଖଡ଼ାରେ ଅଭ୍ୟାସ କରୁକରୁ ଶରୀର ପରିପୁଷ୍ଟ ହୋଇ ପହିଲ୍‌ମାନ ହେଲା ଭିତରେ ଢଗା ପଲେଇ ଆହୁରି ଅନେକ ପ୍ରକାର ବୃତ୍ତି ଯଚାଯଚିକୁ ପ୍ରତ୍ୟାଖ୍ୟାନ କରିଥିଲା । ଢଗୁଆଳି ହେବାକୁ ସେ ନାନା ସ୍ଥାନରୁ ଡ଼କରା ପାଇଛି, ପୋଷାକ ପିନ୍ଧି ବନ୍ଧୁକ କି ଠେଙ୍ଗା ଧରି କାହାର କେଉଁ ଘର ଦୁଆରମୁହଁରେ ଟହଲିବା କାମ । ଭଲ ଦରମା । ଆଉ ପ୍ରସ୍ତାବଟି ଆହୁରି ଚମକପ୍ରଦ । ପ୍ରଚୁର ଖୋରାକି ମିଳିବ, ମାସକୁ ମାସ ଦରମା, ତା ଛଡ଼ା ବିଶିଷ୍ଟ କାର୍ଯ୍ୟ ପାଇଁ ଉପଯୁକ୍ତ ପାରିଶ୍ରମିକ । କାର୍ଯ୍ୟ ବି ଅତି ପ୍ରାଚୀନ କାଳର, -କୀଚକପଣ, ଆଜିକାଲି ଯାହାକୁ କହନ୍ତି ଗୁଣ୍ଡାମି । କୀଚକ ବାହାବଳରେ ବିରାଟ ରାଜା ହୋଇ ବସିବ । ବୃତ୍ତି ବ୍ୟବସାୟର ନାନା କ୍ଷେତ୍ରରେ ରାଜତ୍ୱ ଖୋଲିଯାଇଛି, କୀଚକ ଦରକାର । କିଏ ଶତ୍ରୁ ସେକଥା ଖାଉନ୍ଦ ଚିହ୍ନେଇଦେବ । ଆଖି ତରାଟିବାଠୁଁ ଗୋଡ଼ ଛୋଟା କରିବା, ମୁଣ୍ଡ ଫଟାଇବା, ବଳେ ବଳେ ଧରି ଘର ଭିତରେ ପୂରାଇ ତାଲା ପକାଇ ନିର୍ଦ୍ଦିଷ୍ଟ ସମୟଯାକେ ଅଟକାଇ ରଖିବା, ରାତିରେ କାହା ଘରକୁ ଟେକା ପକାଇବା, ବାଟରେ ଧରି ବେଇଜ୍ଜତ୍ କରିବା, ଏହିପରି ନାନା କାର୍ଯ୍ୟ । ମକଦ୍ଦମା ଲାଗିଲେ ଖାଉନ୍ଦ ପିଠି ପଡେଇଦେବ, ନିଜେ ପଛେ ଚିହ୍ନା ନ ପଡୁ, ଓକିଲ ଲାଗିବେ, ମକଦ୍ଦମା ଲଢ଼ା ହେବ । ଆଉ ପ୍ରସ୍ତାବଟି ଥିଲା ଘରଜୋଇଁଆ ହୋଇ କୋଠାବାଡ଼ି ସମ୍ପତ୍ତି ଭୋଗ କରିବା ପାଇଁ । ତାର ସ୍ୱାସ୍ଥ୍ୟ ଓ ରୂପ ଉପର ମାହାଲାର ଝରକା ବାଟେ କାହାର ପସନ୍ଦ ହୋଇଛି । ତାକୁ ବି ସେ ନାସ୍ତି କରିଦେଇଥିଲା ।

ଖାଲି ସେହି ପୁରୁଣା କାମ, କୁଣ୍ଡା ସରସର, ସିମେଣ୍ଟ୍‌ଗୁଣ୍ଡ ସରସର ଧୂସର ହୋଇ ବସ୍ତା ବୋହି ଏଠୁ ନେଇ ସେଠି ଥୋଇବା, ବସ୍ତାପିଛା ମୂଲ ।

ସେଦିନ କୁସ୍ତି ସରିଲା ମାତ୍ରେ ଖଣ୍ଡେ ଦୂରରେ ଯେତେବେଳେ ତା ପାଖକୁ ଆସିବାକୁ ଲୋକେ ଠେଲାପେଲା ଲଗାଇଥିଲେ ସେ ଦେଖିଲା ଯେ ବହୁତ ଅଚିହ୍ନା ଲୋକ ତାକୁ ଘେରିଗଲେ । ବହୁତଆଡୁ ତା ଉପରେ ଝଙ୍ଗଝକ ହୋଇ ଆଲୁଅ ପଡ଼ିଲା, ତା ଶରୀରର ନାନାପଟୁ ଲୋକେ ଫଟୋ ଉଠାଇନେଲେ । ତା'ପରେ ବୃଷ୍ଟି ହେଲା ପ୍ରଶ୍ନବାଣ, କାନରେ ବାଜିଲା, ଉତ୍ତର ନ ଦେଉଣୁ ଆହୁରି ଆହୁରି ପ୍ରଶ୍ନ-

ଆପଣ କେତେ ବର୍ଷ ହେଲା କୁସ୍ତି କରୁଛନ୍ତି ? ଗୁରୁ କିଏ ? ଏଁ ? ଉମର୍ ଖଲିଫା ? ୟା ପୂର୍ବରୁ କେବେ କାହାକୁ ଜିତିଥିଲେ ? ତାଲିକା କୁହନ୍ତୁ । କି କି ପୁରସ୍କାର ପାଇଥିଲେ ? ଆପଣ କ'ଣ କ'ଣ ଖାଆନ୍ତି ଓ କେତେ ପରିମାଣରେ ? ଆପଣ ବିଭା ହୋଇଛନ୍ତି କି ନାହିଁ ? କେତୋଟି ପିଲା ? ଦେହକୁ ଠିକ୍ ରଖିବାପାଇଁ ଆପଣ କି ପ୍ରକାରେ କ'ଣ ଯତ୍ନ ନିଅନ୍ତି ? ମଣିଷ ସୁସ୍ଥ ସବଳ ହୋଇ ଦୀର୍ଘଜୀବନ ପାଇବା ସକାଶେ କ'ଣ କ'ଣ ଦରକାର ବୋଲି ଆପଣ ଭାବନ୍ତି ?

ଘେର ଭିତରୁ କିଏ ପାଟିକଲା - ଭେଜିଟେବୁଲ୍ ଘିଅ ସ୍ୱାସ୍ଥ୍ୟକୁ ତାଜା ରଖିବାପାଇଁ ଅତି ଚମତ୍କାର, ଏ କଥା ଆପଣ ସ୍ୱୀକାର କରନ୍ତି କି ନାହିଁ ? ଏଁ ! କେବେ ଖାଇ ନାହାନ୍ତି ? ନାଇଁ, ନାଇଁ, ସେପରି କୁହନ୍ତୁ ନାହିଁ ।

ଆହୁରି ପ୍ରଶ୍ନ । ଆପଣ ଦିନକୁ କେତେଥର ଚାହା ପିଅନ୍ତି ? ଜମା ପିଅନ୍ତି ନାହିଁ ? ମିଛ କଥା, କହନ୍ତୁ ଆଜ୍ଞା -

ଆପଣ କି ବିଡ଼ି ପାନ କରନ୍ତି ?

କି ଗୁଡ଼ାଖୁ ଘଷନ୍ତି ?

ଆପଣ କେଉଁ ପାର୍ଟିର ସମର୍ଥକ ?

ଦେଶରେ ଏ ଯେଉଁ ପରିବର୍ତ୍ତନମାନ ଘଟୁଛି ସେ ବିଷୟରେ ଆପଣଙ୍କର ମତାମତ କଅଣ ? କେତେବେଳେ ଗଲେ ଆପଣଙ୍କ ସଙ୍ଗେ ଦେଖାହେବ ? ଆପଣଙ୍କ ଫଟୋ, ତା' ତଳେ ଆମ ପଦାର୍ଥ ବିଷୟରେ ଆପଣଙ୍କର ମତ, ତା'ତଳେ ଆପଣଙ୍କ ଦସ୍ତଖତ ଏମିତି ଆମେ ଛାପିବୁ ଆଜ୍ଞା, ସିନେମାରେ ସ୍ଲାଇଡ୍ ଦେବୁଁ, ଦେବା ନେବା କଥା ବି ତୁଟିଯିବ, ସେଥିରେ କ'ଣ ଅଛି ?

ଆଜ୍ଞା ଟିକିଏ ଦସ୍ତଖତ, ଆପଣଙ୍କ ଅଟୋଗ୍ରାଫ୍ । ଠେଲାପେଲା କହୁଣିଆ ବେକ ଧରାଧରି ଗୋଡ଼ କୁଦାକୁଦିର ହାବୁକା ଉଠିଲାମାତ୍ରେ ଅନେକ ପ୍ରଶ୍ନର ଆପେ ଆପେ ସମାଧାନ ହୋଇଗଲା, କୌଣସି ପ୍ରଶ୍ନକର୍ତ୍ତା ନିଜ ସ୍ଥାନରୁ ମୁହୂର୍ତ୍ତକରୁ ଅଧିକ ବେଳ ଠିଆ ହୋଇ ରହିପାରିଲେ ନାହିଁ । ଜଗା ପଲେଇକୁ ଛଟପଟ ଲାଗିଲା । ସେ ଗୁମ୍ ହୋଇ ଠିଆ ହୋଇ ରହିଲା । ତା'ପରେ ହାତ ଯୋଡ଼ିଲା, ତା'ର ବି ଫଟୋ ଉଠାଗଲା । ତା'ପରେ ଗୋଟାଏ କରକୁ ବୁଲିପଡ଼ି ଭିଡ଼ଭିତରେ ଠେଲାପେଲି ହୋଇ ଧାଇଁ ପଳାଇଯାଇଥିଲା । ଡର ମାଡୁଥାଏ, କାଳେ ସେମାନେ ତା ପିଛା ନେବେ !

ଆଗ ଗଲା ତା ଗୁରୁ ଖଲିଫାଙ୍କ ପାଖକୁ । ଗୋଡ଼ତଳେ ପଡ଼ିଲା । ତାକୁ ଉଠାଇ କୁଣ୍ଢେଇ ତା ଛାତିରେ ପିଠିରେ ଦାଢ଼ି ଘଷି ଘଷି ଖଲିଫା କହିଲେ, ''ୱାଃ ପଠ୍ଠେ, ମୋ ନାଁ ରଖିଲୁ, ବେଟା !''

ବାକି ଲୋକେ ଯେତେ ପ୍ରଶଂସା କଲେ ସେ ତା ନିଘାରେ ପଡ଼ିଲା ନାହିଁ, ଯାହା ବା ଶୁଣିଲା ସେ ତାକୁ କାନକୁ ନେଲା ନାହିଁ । ଜଣେ ଜିତେ ଆଉ ଜଣେ ହାରେ । ସେମିତି ସେ ଆର ଜଣକ ହାରିଗଲା, ସେ ନିଜେ ଜିତିଲା, ଘଟନାରୁ ଏତିକି ତାତ୍ପର୍ଯ୍ୟ ସେ ଘେନିଥିଲା ।

ଖଲିଫାଙ୍କ ପାଖକୁ ଲେଉଟି ସେ କାହାକୁ କିଛି ନ କହି ନଣ୍ଡା ଦେଉଳକୁ ଚାଲିଗଲା । ସେଠି କିଛିବେଳ ଖଞ୍ଜଣିପିଟା ଶୁଣି ଦେହକୁ ମନକୁ ଟିକିଏ ଶାନ୍ତ କରିସାରି ଘରକୁ ଆସିଲାବେଳେ ବାଟରେ ଶୁଣିଲା, ଦୋକାନମାନଙ୍କରୁ ରେଡ଼ିଓରେ ସେହି କୁସ୍ତି ଖବର ପ୍ରଚାର କରାଯାଉଛି । ଆଉ ଅଳ୍ପ ସମୟ ପରେ ଖବରକାଗଜ ବିକାଳିମାନେ ଯେତେବେଳେ ବଣ୍ଡୁଲା ବଣ୍ଡୁଲା ଖବରକାଗଜ କାଖେଇ ପାଟି କରିକରି ଧାଇଁଗଲେ, ସେତେବେଳେ ସେ ସେହି ଖବର ବାରମ୍ବାର ଚିତ୍କାର କରାହେଉଥିବାର ଶୁଣିଲା । ତା ମୁଣ୍ଡ ଝାଇଁ ଝାଇଁ ଲାଗିଲା । ସେ ଆଉ ଘରକୁ ନ ଫେରି ସିଧା ଚାଲିଲା କାଠଯୋଡ଼ି ବନ୍ଧଆଡ଼େ । ବହୁତ ରାତିରେ ଘରକୁ ଫେରିଲାମାତ୍ରେ ଦେଖିଲା, ଘରର ଲୋକେ ଅତି ଯତ୍ନରେ ତା ପାଇଁ ଭଲ ଭୋଜନ ସଜାଡ଼ି ରଖିଛନ୍ତି, ଅର୍ଥାତ୍ ଭାତ, ଡାଲି, ଆଳୁଭରତା ସାଙ୍ଗକୁ ସେଦିନ ହୋଇଛି ବାଇଗଣ ଭଜା ଓ ମାଛ ଝୋଳ । ସେମାନେ ତାକୁ କୁଣ୍ଢେଇ ଆଉଁସି ନାନା ପ୍ରକାର ପ୍ରଶଂସା କରି

ଆପଣା ଉପାୟରେ ସମ୍ବର୍ଦ୍ଧନା ଜଣାଇଲେ । କେତେଜଣ ସାହିଲୋକଙ୍କ ଛଡ଼ା ଆଉ ତାକୁ କେହି ଖୋଜିବାକୁ ଆସିଲେ ନାହିଁ । ସେ ଆଶ୍ୱସ୍ତ ହେଲା । ତହିଁ ଆରଦିନ ପୁଣି ପାହାନ୍ତିଆରୁ କସରତ୍ ଓ ତା' ପରେ ବସ୍ତାବୁହା କାମ ।

ଆପଣା ବୃତ୍ତି କି ବ୍ୟକ୍ତିଗତ ଜୀବନ ବିଷୟରେ କାହାକୁ କିଛି ସେ କହିନାହିଁ । ଖବରକାଗଜ ଏତିକି ଛାପିଥିଲା ଯେ ସେ ଶ୍ରମିକ ।

ତା'ପରେ କେମିତି କେମିତି ହୋଇ ତା'ର ପରିଚୟ ପ୍ରଚାର ପାଇଥିଲା ସେ ଜାଣେ ନାହିଁ । କିନ୍ତୁ ମାଲଗୋଦାମର ଯେଉଁ ଅଞ୍ଚଳରେ ସେ ବୋଝ ଉଠାଏ, ଜୀବିକା ଅର୍ଜନ କରେ, ତାର ପ୍ରଶଂସାର ଚହଳ କୁହୁଡ଼ି ପରି ସେଠି ବି ପହଞ୍ଚିଯାଇଥିଲା ଓ ତାର କାମ ଅଟକାଇ ଲୋକେ ତାକୁ ସେ କୁସ୍ତି ବିଷୟରେ ଓ ତା ନିଜ ବିଷୟରେ ପଚାରିଲେ । ବାହାବା ଦେଇଥିଲେ । ଭାରତର କୁସ୍ତି କ୍ଷେତ୍ରରେ ତାର କେତେ ଉଚ୍ଚ ଆସନ ଓ ତାରି ଯୋଗୁ ଓଡ଼ିଶାର କେଡ଼େ ନାଁ ହେଲା ସେ ବିଷୟରେ ତାକୁ ବୁଝାଇଥିଲେ । ତା ଆଖି ଆଗରେ ତା ଭବିଷ୍ୟତର ଛବି ଉଙ୍କେଇ ଆଙ୍କି ଦେଇଥିଲେ ଯେ ଏହା ପରେ ସେ ଯଦି ଶେଷ ପ୍ରତିଯୋଗିତାରେ ଜିତିଯିବ ତା' ହେଲେ ଆହୁରି ବିପୁଳତର ପ୍ରଶଂସା ପାଇବା ସଙ୍ଗେ ସଙ୍ଗେ ତା'ର ବାଟ ଫିଟିଯିବ ଓଡ଼ିଶା ବାହାରକୁ କ'ଣ ଭାରତ ବାହାରକୁ ବି ଯାଇ କୁସ୍ତି ଲଢ଼ିବା ପାଇଁ । ସେତେବେଳେ ଯେ ଯିବ ଲଙ୍କା, ଶିଙ୍ଗାପୁର, ମଙ୍ଗୋଳିଆ, ପେକିଂ, ଜାପାନ୍, ରୁଷ, ଜର୍ମାନି, ଆମେରିକା, ଆଫ୍ରିକା, ନାନା ଦେଶ । କେତେ ସମ୍ମାନ ପାଇବ, କେତେ ଧନ ବି ଅର୍ଜିବାବେଳ ଆସିଗଲା । ଆଗରୁ ଚେଷ୍ଟା କରି ନି.ଭା.କୁ.ପ୍ର.ର ଶେଷ କୁସ୍ତିରେ ତାକୁ ଜିତିବାକୁହିଁ ପଡ଼ିବ ।

ସେମାନେ ତାକୁ ଉପଦେଶ ଦେଲେ ଯେ ସେ ତା'ର ଖାଦ୍ୟ, ସ୍ୱାସ୍ଥ୍ୟ ଓ କୁସ୍ତି ଅଭ୍ୟାସ ବିଷୟରେ ଆହୁରି ଯତ୍ନ ନେବା ଉଚିତ । ଫଳ, ମାଂସ, ଦୁଧ, ଭିଟାମିନ, ତା'ର କେତେ କଥା ଖାଇବା ଉଚିତ । ହୁସିଆର, ଓଡ଼ିଶାର ନାଁ ରଖିବାକୁ ପଡ଼ିବ, ତା ପରେ ଭାରତର ନାଁ ରଖିବାକୁ ପଡ଼ିବ ।

ସେହି ଉପଦେଶ ଶୁଣି ଶୁଣି ସେ ଦୀର୍ଘଶ୍ୱାସ ପକାଇଥିଲା । ମାଂସ ସହିତ ତାର ଦେଖାସାକ୍ଷାତ ହୁଏ ବାଟରେ ଗଲାବେଳକୁ । ଦୁଧ ସେ ଖାଇବାକୁ ପାଏ ନାହିଁ । ଫଳ କହିଲେ ସେ ବୁଝେ କେବେ କେବେ କଦଳୀ, ନଡ଼ିଆ । ତା'ର ଇଚ୍ଛା, ସେ ଦିନକୁ ସେରେ ଚୂଡ଼ା ଚୋବାନ୍ତା; କିନ୍ତୁ ଅଧସେରରୁ ବେଶି ଖାଇବାକୁ ତା'ର ଘରୋଇ ଅଟକଳ ସୁବିଧା ଦିଏ ନାହିଁ, ସବୁ ଟାଣଟୁଣ ।

ତହିଁର କେତେ ଦିନ ପରେ ପରିବାର ସଙ୍ଗରେ ଧରି ଦକ୍ଷିଣ ଆଡୁ ବହୁତଗୁଡ଼ିଏ ବସ୍ତାଟେକା ଶ୍ରମିକ ଆସି ପହଞ୍ଚିଗଲେ । ସେମାନେ ଗଛମୂଳେ ରହନ୍ତି । ଫୁଙ୍ଗାରେ ମଡ଼ନ୍ତି । କୌଣସିମତେ କିଛି ଉପାର୍ଜନ କରି ଏ ସଂସାରରେ ମାଟି କାମୁଡ଼ି ପଡ଼ି ରହିବାକୁ ସେମାନଙ୍କର ପ୍ରବଳ ଆଗ୍ରହ ।

ବସ୍ତାବୁହା ମୂଲ କମିଗଲା । ଏମିତି ଦିନେ ଜଗାର ସାନ ଭାଇ ଖଗା କାମ ସାରି ବିଡ଼ି କମ୍ପାନୀରୁ ଘରକୁ ଲେଉଟିଲାବେଳେ ତା ସଙ୍ଗରେ କାହାର ମଟର ଧକ୍କା ହେଲା । ତାର ଗୋଡ଼ ଭାଙ୍ଗିଲା । ଦେହ ଜଖମ ହେଲା । ସେ ଡାକ୍ତରଖାନାକୁ ବୁହାହେଲା ଓ ତାର ରୋଜଗାର ବନ୍ଦ ହେବା ଯୋଗୁଁ ଘରେ ଅଭାବ ବଢ଼ିବା ସଙ୍ଗେ ସଙ୍ଗେ ଜଗାର ଦିନଗୁଡ଼ାକ କଟିଯିବାକୁ ଲାଗିଲା ଦକ ଦୁଶ୍ଚିନ୍ତାରେ ।

ସାହିମୁଣ୍ଡରେ ଜଣେ କୁଆଡ଼ର କିଏ ଗୋଟିଏ ହୋଟେଲ ଖୋଲିଲା । ସେଠି ବରା,

ପିଆଜି, ଚକୁଳି, ଏଣ୍ଡୁରିପିଠା, ଚାହା ବିକା ହୁଏ, ତା ଛଡ଼ା ଆଉ ନାନାପ୍ରକାର ପିଠା ଓ ମିଠା, ପିଠା ସଙ୍ଗରେ ତରକାରୀ ଓ ଚଟଣି ଦିଆହୁଏ, ଖାଦ୍ୟପଦାର୍ଥ ବଢ଼ାହୁଏ ଚକ୍‌ଚକ ପାତ୍ରରେ, ବସିବାକୁ ବେଞ୍ଚ, ମୁଣ୍ଡ ଉପରେ ବିଜୁଳି ପଙ୍ଖା ବୁଲେ ଓ ଖାଇ ବସିଥିଲେ କାନରେ ବାଜୁଥାଏ ରେଡ଼ିଓରୁ ସଂଗୀତ । ଜଗା ବୋଉର ପିଠାଦୋକାନରୁ ଗରାଖି କମିଗଲେ । ଚାରିଆଡ଼ୁ ଖାଇ ଗୋଡ଼ାଇଲା ଅଭାବ ।

ତଥାପି ଜଗା ପଲେଇ କସରତ୍ କରେ । ଚୂଡ଼ା ଅଧସେରରୁ ପାଏକୁ ଖସିଲା । ମୁଢ଼ି ଦିନକୁ ଚାରିଅଣାର । ନଡ଼ିଆ ତିନିଦିନକୁ ଗୋଟିଏ । ପେଜ ଭାତ ବାରିର ପୋଇପତ୍ର ପୋଇଖାଡ଼ି ଏକାଠି ସିଝାଇ ସେ ତାର ଉଦର ପୂରାଏ । ଭୋକ ଜଳୁଥାଏ ।

ଯେତେବେଳେ ବସ୍ତା ବୁହା ନ ଥାଏ କି ଜଗାକୁ କେହି ଦେଖି ନ ଯାଉଥାଏ, ଅନେକ ସମୟରେ ସେ ଗୁମ୍ ହୋଇ ବସି ଚିନ୍ତାରେ ବୁଡ଼ିଯାଏ । ତାକୁ ଲାଗେ ସେ ନିହାତି ଏକୁଟିଆ, ସାହା ନାହିଁ, ସଖା ନାହିଁ । ତାର ସେ କୁସ୍ତିର ଅଳ୍ପଦିନ ପରେ ଆଉ ତା ବିଷୟରେ କେହି ଆଲୋଚନା କଲେ ନାହିଁ ।

ତା'ପରେ ତିନିମାସ ଗଲା । ଆସିଲା ଶେଷ ପରୀକ୍ଷାର ଦିନ, ପଞ୍ଜାବର ଦଲିପ୍ ସିଂ ସହିତ ଓଡ଼ିଶାର ଜଗା ପଲେଇର କୁସ୍ତି । ଖବରକାଗଜରେ ତାର ଫଳ ଆଲୋଚନା ବାହାରିଲା । ସମସ୍ତେ ସ୍ୱୀକାର କଲେ ଯେ ଅତିକାୟ ଅତିପରିପୁଷ୍ଟ ଦଲିପ୍ ସିଂ ସହିତ ମଲ୍ଲ ଯୁଦ୍ଧରେ ଜଗା ପଲେଇ ଯେଉଁ ବଳ ଓ କୌଶଳ ଲଗାଇ ଲଢ଼ିଥିଲେ ତାହା ବଡ଼ ଉଚ୍ଚକୋଟୀର ହୋଇଥିଲା, ପ୍ରତି ମୁହୂର୍ତ୍ତରେ ଲାଗୁଥାଏ ଦଲିପ୍ ସିଂ ଏଥର ଚିତ୍ ହେବେ; କିନ୍ତୁ ଦଲିପ୍ ସିଂ ଜିତିଲେ ।

ଦଲିପ୍ ସିଂଙ୍କର ପରିଚୟ ବାହାରିଥାଏ । ବହୁଦିନୁ ବହୁତ ବଡ଼ ବଡ଼ ଲୋକ ତାଙ୍କର ପୃଷ୍ଠପୋଷକ । ସେ ବହୁତ ପ୍ରକାର ବହୁତ ଖାଆନ୍ତି । ପ୍ରତିଦିନ ତାଙ୍କର ଓଜନ ନିଆହୁଏ । ଏହିପରି ନାନା ତଥ୍ୟ ।

ଜଗା ପଲେଇ ଚିତ୍ ହେଲା ।

ପୁଣି ରେଲରେ ମଟରରେ ଗହଳି ଜାଗାରେ ଆଲୋଚନା ।

ଓଡ଼ିଶାର ଇଜ୍ଜତ ମାଟି ହେଲା ବୋଲି କେହି କେହି ତା ବିରୁଦ୍ଧରେ କଟୂକ୍ତି କରିଥିଲେ । ଅନେକ ବିଷଣ୍ଣ ହୋଇଥିଲେ । ତା' ବି ଭୁଲି ହୋଇଗଲା ।

କିନ୍ତୁ କୁସ୍ତିର ତହିଁଆରଦିନ ଜଗା ପଲେଇ ସବୁଦିନ ପରି ଯାଇଥିଲା କସରତ୍ କରିବାକୁ ଓ ତା'ପରେ ବସ୍ତା ବୋହିବାକୁ ।

# ନାଁ ମନେ ନାହିଁ

ହଠାତ୍ ଦିନେ ସକାଳ ଆଠଟା ବେଳେ ଅଶୋକ ଅନୁଭବ କଲା, ତା'ର ସ୍ମରଣରେ କ'ଣ ଗୋଳମାଳ ଘଟିଛି; ନାଁ ମନେ ରହୁନାହିଁ । ଅଶୋକ ସଭ୍ୟସମାଜର ଜଣେ ସର୍ବବ୍ୟାପୀ ଜୀବ; ରାସ୍ତାକୁ ବାହାରିଲେ ସହରର ପ୍ରଧାନ ଅପ୍ରଧାନ ରାସ୍ତା ସମେତ ଦିନକେ ଅନ୍ତତଃ ତା'ର ଦେଖା ମିଳିପାରେ ଛଅଥର । କେଉଁଠି ପ୍ରବଳ ବେଗରେ ତା'ର ପୁରୁଣା ହର୍କ୍ୟୁଲେସ ସାଇକଲ ଖଣ୍ଡି ଚଢ଼ି ଭିଡ଼ କଟେଇ ସେ ଚାଲିଥିବ । ସୁସ୍ଥ ସୁଶ୍ରୀ ନଓଯୋଆନ୍ ଭେଣ୍ଡା, ସାଇକଲ୍ ଚଲାରେ ଖୁବ୍ ବୀର ଦର୍ପ, ସାଇକଲ୍‌ର ପୁରୁଣା ହ୍ୟାଣ୍ଡେଲରେ ଧଳା ଚିକ୍ ଚିକ୍ ଏକ ପ୍ରକାଣ୍ଡ ଗୋଲ ଘଣ୍ଟି, ଘୋଡ଼ାଗାଡ଼ିର ଘଣ୍ଟିପରି ସେ ଆବାଜ କରେ ଢଣଣ ଢଣଣ ଢଂ । କେଉଁଠି  ପାନ ଦୋକାନ ପାଖେ ସେ ନୂଆ ସିଗାରେଟ ଏକ ପ୍ୟାକେଟ କିଣୁଥିବ, କେଉଁଠି ରାସ୍ତା ବନ୍ଦ କରି ସାଇକଲ୍ ଉପରେ ପିଠି ନୁଆଁଇଦେଇ ବନ୍ଧୁ ଦଳେ ଭେଳେଇ ସେ ରାଜ୍ୟର ବିଭିନ୍ନ ସମସ୍ୟା ଉପରେ ସ୍ୱାଧୀନ ତୁଣ୍ଡରେ ଟାଣୁଆଁ ବକ୍ତୃତା ଦେଉଥିବ, ମତାମତ ଶୁଣୁଥିବ, ଗୋଲ ଗୋରା ମୁହଁରେ ପ୍ରଜାପତି ନିମ୍ନ ତଳେ ଧୋବ ଦାନ୍ତ ଫାଙ୍କରେ ସିଗାରେଟର ଧୂଆଁ ଛାଡୁଥିବ ମଠେଇ ମଠେଇ, ଦୂରରୁ ବାରିହୁଏ । କାରଣ ସେ ନାତିଉଚ୍ଚ ଜନଗୋଷ୍ଠୀରେ ଅପେକ୍ଷାକୃତ ଡେଙ୍ଗା ଓ ତା'ର ଓସାର ଛାତି । କେଉଁଠି ସେ ସାଇକଲ୍‌ଟିକୁ ହାତରେ ଧରି ଦେହ ସିଧା କରି ମାର୍ଚ୍ଚ କଲା ଭଙ୍ଗୀରେ ଗୋଟିଏ ଛୋଟ ଦଳ ସଙ୍ଗେ ଚାଲିଚାଲି ଯାଉଥିବ ଏବଂ ସବୁଠି ବାଟ ମଝିରେ, ରାସ୍ତା କଡରେ, ଘରର ପିଣ୍ଡା ଉପରୁ, ଚଳନ୍ତା ଗାଡ଼ିରୁ "ନମସ୍କାର ଅଶୋକବାବୁ, ନମସ୍କାର, ନମସ୍କାର ।"

ସୁତରାଂ, ହଠାତ୍ ଯଦି ଏମିତି ଲୋକର ସ୍ମୃତିନାଶ ହୁଏ ଯେ ନାଁ ମନେ ରହେ ନାହିଁ, ବିପଦ ନିଶ୍ଚୟ ।

ଅବଶ୍ୟ ତା'ର ସ୍ମରଣଶକ୍ତିରେ ଅନ୍ୟ କୌଣସି ଉପଦ୍ରବ ଘଟିନାହିଁ, କେବଳ ନାଁ ଭୁଲିବା ଛଡ଼ା । ପରିସ୍ଥିତି ବିଷୟରେ ସେ ସମ୍ପୂର୍ଣ୍ଣ ସଚେତ, ତା'ର ବୈଷୟିକ ଜ୍ଞାନର ଏତେ ଟିକିଏ ବି କ୍ଷୟ ହୋଇନାହିଁ, ସମାନ ଭାବେ ସେ ଆଗପରି ଚଳାଇପାରୁଛି ତା'ର ଓକିଲାତି ବୃତ୍ତି, ସାଧାରଣ କିଛି ବିକାକିଣା ବେପାର, କିଛି ରାଜନୀତି ଚର୍ଚ୍ଚା ଏବଂ ନାଁ ବି ତା'ର ସବୁ ଭୁଲି ହୋଇନାହିଁ; ପର୍ବତର ନାଁ ହିମାଳୟ, ଦେଶର ନାଁ ଭାରତବର୍ଷ, ନଈ ନାଁ କାଠଯୋଡ଼ି, ସେହିପରି ଦେଶର ନାମଗଣ୍ୟ ଲୋକଙ୍କ ନାଁ । ଆଲୋଚନା ପଢ଼ିଲେ ଖବରକାଗଜର ବଡ଼ ବଡ଼ ନା ଟିକିଟିକି ହୋଇ ତା'ର ମନେ ଅଛି । ସେ ଖେର୍ ଓ ଖାରେ ଏ ଦୁଇ ନାଁର ଦୁଇ ଲୋକଙ୍କ ବିଷୟରେ ଅଲଗା ଅଲଗା ସବୁ କହିପାରେ; ସେହିପରି କାରିଅପ୍‌ପା ଓ କୁମାରପ୍‌ପା । କିନ୍ତୁ ଭୁଲିଯାଉଛି ସାଧାରଣ ଲୋକଙ୍କ ନାଁ, ଚିହ୍ନାଜଣା, ବନ୍ଧୁବାନ୍ଧବ, କିଏ ସାଙ୍ଗପଠୁଆ, କିଏ ସହକର୍ମୀ, କାହାଠୁ ଟଙ୍କା ଧାରିଛି ତ କାହାଠି ପାଉଣା ଅଛି କିଛି, ଏହି

ନିତିଦିନିଆଁ ଲୋକେ- ଯାହାଙ୍କ ବିଷୟରେ ସେ ସବୁ ଜାଣେ । ସେମାନେ ତା ପକ୍ଷରେ ଖେଳ୍ ବା ଖାରେ ନୁହନ୍ତି, ନୁହନ୍ତି ହିମାଳୟ ବା ଭାରତବର୍ଷ, ଅଥଚ ନିଶ୍ୱାସ ନେଉଥିବା ପବନ ପରି, ପିଉଥିବା ପାଣି ପରି ସେମାନେ ତା'ର ସବୁଦିନିଆ- ନାଁ ମନେ ନାହିଁ ।

ସକାଳ ଆଠଟା ବେଳ । ଶାଗବିକା ବୁଢ଼ାଟି ଆସିଛି । ଚାହା ଖାଉ ଖାଉ ଅଶୋକ ମୁହଁ ଟେକି ଚାହିଁଲା । ମୁଣ୍ଡରେ କୋତରା ଠେକା, ଛାତିବାଳ ଧଳା, ପେଟ ଉପରେ ଯାଦୁ ଅରାଏ । ଏଇ ତ ସେ । କ'ଣ ନାଁଟା ଟି ? ଗୋପିଆ ? ମଧୁଆ ? ଜଗୁଆ ? ନୁହେଁ । ବୁଢ଼ା ବିଷୟରେ ସବୁ ସେ ଜାଣେ । ଜାଣିବାର କାରଣ ଅଛି ବି । ଭାବିଲେ ଦିଶିଯାଏ ତା'ର ଦି' ବଖୁରିଆ ଚାଳଘର, ବୁଢା ବାରି । ସାହିଠୁ ଅଲଗା । ବୁଢ଼ାର ଯୁବତୀ ଝିଅ ସ୍ୱାମୀଠୁ ଅଲଗା । ଦିନେ ଆସି ବୁଢ଼ା କହିଥିଲା- ''ବାବୁ, ମୋ କଥା ଟିକିଏ ବୁଝିଦେବ ନାଇଁ ? ବାଢ଼େଇ ପିଟି ଘରୁ ତଡ଼ିଦେଲା; ଆଉ ଗୋଟାଏ ଆଣିଲା । ତେଣେ ସେ ଦୁଧରେ ଆଞ୍ଜୋଇ ଘିଅରେ ପାଣି ସାରୁଚି, ଏଣେ ଯେ ଉପାସରେ ଗଡୁଚି । ଦିଅନ୍ତ ଭଲା କାନ ମୋଡ଼ି ଖୋରାକ ପୋଷାକ ଅସୁଲ କରି ବାବୁ, ତମ ଯଶ ରହନ୍ତା, ବୁଢ଼ା କଇଲାଣ କରନ୍ତା ।''

''ହଉ, ଯିବା ତୋ ସାଙ୍ଗେ ତୋ ଘରକୁ ଦିନେ; ଝିଅଠୁ ସବୁ କଥା ବୁଝି ତା ପରେ ଉପାୟ କରିବା ।''

ଯାଇଥିଲା । ସେ ସ୍ମୃତି ବି ମନେ ଅଛି । ଭଗବାନ ଅବହେଳାରେ ସଢ଼ିବାକୁ ଏତେ ରୂପ ଦିଏ ? ପାଠ ନ ପଢ଼ିଥିବା ସାଧାରଣ ମନରେ ଦିଏ ଏତେ ଚତୁରପଣ ପୁଣି ଏତେ କବିତା ? ବର୍ଷେକାଳ ସେମାନଙ୍କ ସଙ୍ଗେ ସମ୍ବନ୍ଧ । ଖୋରାକ ପୋଷାକ ହେଲା, ଆହୁରି କିଛି ବି ହେଲା, ଶେଷରେ ଦିନେ ଅକାଳରେ ବସନ୍ତ ରୋଗରେ ଅଦିନରେ ମଉଳି ପଡ଼ିଲା ଫୁଲ । ଝିଅ ଚାଲିଗଲା । ବୁଢ଼ା ତଥାପି ଶାଗ ବିକୁଛି । ତା'ର ସ୍ମୃତି ଭୁଲି ହୁଏ ନାହିଁ । କିନ୍ତୁ ନାଁଟି କ'ଣ ? ଉମା, ରମା, ମଲ୍ଲୀ, ମନେ ନାହିଁ ?''

''ଆରେ ହେ, ହେ ବୁଢ଼ା !''

ନାଁ ପଚାରିବ ? କାଳେ କ'ଣ ଭାବିବ ଏ ବୁଢ଼ା । ଧୋବଧାଉଳିଆ ବାବୁ ଯେତେ ସମସ୍ତଙ୍କର ଏମିତିଆ ମନ; କାମ ସରିଗଲେ ମନରୁ ଅନ୍ତର । ଏତେ ସ୍ନେହ ଆଦର; ଏତେଦିନର ସୁଖର ସ୍ମୃତି । ମନର ତଳେ ତଳେ ଅଦ୍ୟାପି ସେ ରହିଛି । ଭାବିଲେ ଆଖି ପାଣିଚିଆ ହୁଏ । ତାର ନାଁ ମନେ ନାହିଁ ! ଆପଣାର ମନ କହୁଛି, ପଚାରିଦେଲେ ବୁଢ଼ା କ୍ଷମା କରିବ ନାହିଁ । ହଳଦିଆ କୋଟଲିଆ ଆଖି ଗାରଡ଼େଇ ଚାହିଁବ, ଯେମିତି ସେ ଚାହୁଁଥିଲା ତା'ର ଜ୍ୱାଇଁ କଥା ପଡ଼ିଲେ ।

''କ'ଣ କହୁଚ, ବାବୁ ?''

ପାଖେ କଥା ବାଆଁରେଇ ପାଖେ ଅତୀତରେ ଭାସିଯାଇ ଅନ୍ୟମନସ୍କ ହେଲାପରି ଅଶୋକ କହିଲା, ''ପଚାରୁଚି, ଆମ୍ବଡ଼ା ବିକି ଆଣିଛୁ କି ?''

''ଆମ୍ବଡ଼ା ? ଆମ୍ବଡ଼ା ତ କେବେ ଆଣେ ନାଇଁ, ବାବୁ ! ଏ ଦିନେ କି ଆମ୍ବଡ଼ା ? କସି ବି ଧରି ନ ଥିବ ଗଛରେ ।''

ଆଶ୍ଚର୍ଯ୍ୟ ହୋଇ ବୁଢ଼ାଟି ଅନେଇଁ ରହିଲା ।

ଅଶୋକ ଉଠି ଚାଲିଗଲା ଘର ଭିତରକୁ ।

ସେତେବେଳଠୁ ସେ ଘାରିହେଉଛି, ପ୍ରକୃତରେ ତା'ର ନାଁ ମନେ ରହୁନାହିଁ । କେବଳ ଆଜି ନୁହେଁ, ଭାବିଲେ ଜଣାପଡୁଛି, କେତେଦିନ ହେଲା ଏପରି ଅବସ୍ଥା ତା'ର ଆସିଲାଣି । କାଲି ସନ୍ଧ୍ୟାରେ ଜଣେ ବଡ଼ଲୋକଙ୍କ ଘରେ- ପାର୍ଟିରେ ଜଣେ ଆଗନ୍ତୁକଙ୍କ ଆଗରେ ଦୁଇଜଣ ଭଦ୍ରମହିଳାଙ୍କୁ ଚିହ୍ନା କରେଇ ଦେଉ ଦେଉ ସେ ସେମାନଙ୍କ ସ୍ୱାମୀ ଦୁହିଁଙ୍କ ନାଁକୁ ଓଲଟପାଲଟ କରିଦେଇଥିଲା- ''ଯେ ହେଉଛନ୍ତି ମିସେସ୍ ବିଶ୍ୱନାଥମ୍ , ଯେ ମିସେସ୍ ପରୀକ୍ଷିତନ୍ ।'' ଠିକ୍ ତା'ର ମୁହଁ ଉପରେ ମିସେସ୍ ବିଶ୍ୱନାଥମ୍ ଚିତ୍କାର କରି ଉଠିଥିଲେ, ''ଆପଣ ଭୁଲ୍ କହିଲେ ଯେ, ମିସେସ୍ ପରୀକ୍ଷିତନ୍ ହେଇ ସେ ।'' ଆଗନ୍ତୁକ ତା'ରି ମୁହଁକୁ ହସି ହସି ଚାହିଁଥିଲେ, ଯେପରି କି ତାକୁ ସେ ବୁଝେଇବାକୁ ଚାହାନ୍ତି ଅପରିପକ୍ୱ ଜ୍ଞାନର ପରିଣାମ ।

ତା ପରେ ଆଜି ସକାଳେ ଏ ବୁଢ଼ା ।

କେବଳ ଏତିକି ନୁହେଁ, ରାସ୍ତାକୁ ବାହାରି ଚିହ୍ନା ଲୋକଙ୍କୁ ଅନେଇଁ ନାଁ ଭାବେ, ଦେଖେ, ନାଁ ମନେ ନାହିଁ । ଯେତେ ଅଧିକ ଭାବେ ସେତେ ଅଧିକ ଭ୍ରମରେ ପଡ଼େ । ଠିଆ ହୋଇଛନ୍ତି ମାଧବବାବୁ । ପାନ କିଣୁଛନ୍ତି । ପାଞ୍ଚମାସ ତଳେ ବହି ଦି'ଖଣ୍ଡ ପଢ଼ି ଫେରେଇଦେବେ ବୋଲି ନେଇଥିଲେ, ତା'ପରେ ଆଉ ଦେଖା ନାହିଁ । ଅଶୋକ ଚିତ୍କାର କଲା, ''ଶଙ୍କରବାବୁ ହୋ ଶଙ୍କର ବାବୁ !'' ମାଧବବାବୁ ଶୁଣୁନାହାନ୍ତି; ନିରୁଦ୍‌ବିଗ୍ନ ମନରେ ପାନ କିଣୁଛନ୍ତି- ''ଭୁଲ୍‌ରେ ଖଇର ଦେଇଦେଲ ଯେ ! ଆଉ ଖଣ୍ଡେ ଭାଙ୍ଗ । ଦେଖ, ଚୂଆମିଶା ଗୁଣ୍ଡି ଦେବ ନାହିଁ ।'' ବାରମ୍ବାର 'ଶଙ୍କରବାବୁ' 'ଶଙ୍କରବାବୁ' ଡ଼ାକିଲେ ବି ଟିକିଏ ଅନେଉନାହାନ୍ତି । ଅଶୋକ ପହଞ୍ଚୁ ପହଞ୍ଚୁ ସେ ପାନ କିଣିସାରି ସାଇକେଲରେ ପାଦ ଥୋଇଲେଣି । ଆଗରୁ ଓଗାଳି ଅଶୋକ କହିଲା, ''କଣ ଆଜ୍ଞା, ଡ଼ାକିଲେ ବି ଶୁଣୁନାହାନ୍ତି ଯେ ? ଭାରି କାର୍ଯ୍ୟବ୍ୟସ୍ତ ନିଶ୍ଚୟ ?'' ହସି ହସି ମାଧବବାବୁ କହିଲେ, ''କାର୍ଯ୍ୟର କଥା ଆଉ କହନ୍ତୁ ନାହିଁ ଆଜ୍ଞା, ଆପଣଙ୍କ ପରି ସ୍ୱାଧୀନ ଲୋକ ହୋଇଥିଲେ ଆଉ କଥା ନଥିଲା । ଯା ହଉ, ଦେଖା ହେଲେଇଁ ବହୁତ ଦିନରେ । ସବୁ ଭଲ ତ ?''

''ଚାଲିଚି'', ଅଶୋକ କହିଲା, ''ଡ଼ାକି ଡ଼ାକି ଯୋଉଠୁ ଜବାବ୍ ନପାଇଲି, ଭାବିଲି ଆପଣ ଭୁଲିଗଲେଣି ।''

''ମତେ ଡ଼ାକୁଥିଲେ ଆପଣ ।''

''ହଁ, ଖୁବ୍ ବଡ଼ପାଟିରେ ।''

''ଆଶ୍ଚର୍ଯ୍ୟ ! ତେବେ ମୋର କାନ ଦି'ଟା ଥିଲା କୁଆଡ଼େ ? ହେଇ ତ ଶୁଣୁଥିଲି ଢେଙ୍କୁରା ଦେଇ ଦେଇ ଜଣେ ଗଲା, ମ୍ୟୁନିସିପାଲିଟି ହତାରେ ଗୋରୁ ପୂରେଇଲେ କାଞ୍ଜିଆଉଦାରେ ଦେବେ । ତା ପରେ ଡ଼ାକି ଡ଼ାକି ଗଲା ପରିବାବାଲା 'ଲବ-ଲହର ଜହ୍ନି ।' ହଁ, ଭୁଲିଯାଉଚି, ଜଣେ କିଏ 'ଶଙ୍କରବାବୁ ଶଙ୍କରବାବୁ' ପାଟି କରି କରି ଗଲେ । ବୋଧହୁଏ ପଛରେ ଦୋକାନ ଅଛି ଶଙ୍କର ପାନବାଲାର; ତାକୁହିଁ ଖୋଜୁଥିବେ । ଆଜିକାଲି ସମସ୍ତେ ବାବୁ କିନା ! - ଆଉ ମତେ କେତେବେଳେ ଆପଣ ଡ଼ାକିଲେ ?''

ଅଶୋକର ମୁହଁରୁ ଝାଳ ବୋହିବାକୁ ଆରମ୍ଭ କଲାଣି । ଜଣାଗଲା, ଏ ଶଙ୍କରବାବୁ ନୁହନ୍ତି । ନାଁ ଆଉ କିଛି । ''ଛାଡ଼'', ସେ କହିଲା, ''ମୁଁ ତ ଆଉ ବୋବୋଉ ନଥିଲି । ଆସ୍ତେ ଆସ୍ତେ

ଡ଼ାକୁଥିଲି ।''

''ତେବେ ବି ନ ଶୁଣିବି କାହିଁକି ? କାନରେ ନିରୋଳା ସୋରିଷତେଲ ପଙ୍କାଏଁ, ଆଜ୍ଞା, ଡ଼ାକିଲେ ଆଉ ଥରେ କେମିତିଆ ଡ଼ାକୁଥିଲେ ।''

''ଥାଉ, ଆପଣ ଯାଇହଉ କାନରେ ସୋରିଷତେଲ ପକାନ୍ତି । ନାକରେ ପକାନ୍ତି ନାହିଁ ତ ? ନିଅନ୍ତୁ ସିଗାରେଟ୍ । ହଁ, ବହି ଦି'ଖଣ୍ଡ ପଢ଼ା ସଇଲା ?''

''କୋଉ ବହି, କହିଲେ ?''

ଫେର୍ ବିପଦ । ବହିର ନାଁ ମନେ ନାହିଁ । ''ସେଇ ମ, ଆପଣ ଯୋଉ ବହି ଦି'ଟା ମୋଠୁଁ ଆଣିଥିଲେ- ପଢ଼ିସାରିଲେଣି ଯଦି ଫେରେଇଦେଲେ ଭଲ ହୁଅନ୍ତା । ନ ପଢ଼ିଛନ୍ତି ଯଦି, ରଖନ୍ତୁ ଆଉ ସାତ ଆଠ ଦିନ, କଣ ହେଲା ?''

''ବଡ଼ ଆଶ୍ଚର୍ଯ୍ୟ କଥା ! ଅଶୋକବାବୁ, ଆପଣ ମତେ ବିଶ୍ୱାସ କରନ୍ତୁ, ମୁଁ ଆପଣଙ୍କର କୌଣସି ବହି ନେଇନାହିଁ । କି ନାଁ କହିଲେ- ସବୁ ବହି ତ ଦାଣ୍ଡଘର ଆଲମିରାରେ ଥାଏ; ମୁଁ ହେଲେ ଖୋଜି ଦେଖିବି ।''

''ଥାଉ, ଆପଣ କଣ ଅନ୍ୟ କାର୍ଯ୍ୟରେ ଯାଉଛନ୍ତି, ନାଁ ଭୁଲିଯିବେ । ଆପଣ କେତେବେଳେ ଘରେ ଥିବେ, କହିଲେ ?''

''ଆଜି ତ ଛୁଟି, ବର୍ତ୍ତମାନ ବଜାରରୁ ବୁଲିସାରି ମୁଁ ଏଗାରଟା ପରେ ବରାବର ଘରେ ଅଛି । ଆପଣ ଆସନ୍ତୁ । ନିଜେ ଟିକିଏ ଖୋଜି ଦେଖିବେ । କାଳେ ବହି ଥାଏ । କିନ୍ତୁ ମୋର ଠିକ୍ ମନେ ଅଛି, ବହି ନାହିଁ । ଆଣିନାହିଁତ ଥିବ କୁଆଡୁ ? ଆପଣ ହେତୁ କରନ୍ତୁ । ହଉ, ନମସ୍କାର ।''

ସେ ଚାଲିଗଲା ପରେ ଅଶୋକ ତାଙ୍କ ପଛେ ପଛେ ଚାହିଁରହିଲା ବହୁତ ବେଳ । ରାଗ ଆସିଲା, ମଣିଷ ଏମିତି ଭୁରୁଡ଼େଇ ଦେଇ ପାରେ ? ଦୁନିଆର ରୀତି କଥା ଭାବି ରାଗି ରାଗି ଚାଲୁ ଚାଲୁ ମନର ଅନ୍ୟମନସ୍କପଣ ଭାଙ୍ଗିଲା କାହାର 'ଅଶୋକବାବୁ, ଅଶୋକବାବୁ' ଡ଼ାକରେ । ଅତି ଆଗ୍ରହରେ ଦି'ହାତ ବଢ଼େଇଦେଇ ମାଡ଼ି ଆସୁଛନ୍ତି ବନ୍ଧୁବର । ହସରେ ସୁନାତାରରେ ବନ୍ଧା ଲମ୍ବ ଲମ୍ବ ପୋକରା ଦାନ୍ତ ଛବି । ଖଣ୍ଡେ ସାବଜା ହାଓ୍ୱାଇ ସାର୍ଟ, ଖାକି ପ୍ୟାଣ୍ଟ, ମୁଣ୍ଡରେ ନାସ-ବର୍ଣ୍ଣର ଫେଲଟ୍ ଟୋପି, ହାତରେ ଚମଡ଼ା ମୁଣି ।

''ହେଲୋ,-ହେଲୋ,-ୟୁ ସି- ୟୁ ସି- ଅଶୋକବାବୁ, କଣ କେମିତି ଚାଲିଚି, ଦୁନିଆର ଖବର କଣ, ହାଉ ଡୁ ୟୁ ଡୁ, ସବୁ ଭଲ ତ ?''

ଆଦୌ ମନେ ପଡୁନାହିଁ ଏ କିଏ; ଅଥଚ ଲାଗୁଛି, ଚିହ୍ନା ଚିହ୍ନା । ଅଶୋକର ମନ ତୀବ୍ର ଭାବେ ଭାବି ଲାଗିଲା ଯେ କିଏ ହୋଇପାରନ୍ତି; ପାରିଲା ନାହିଁ ।

ଏଣେ ବନ୍ଧୁ- ଖାକି ପ୍ୟାଣ୍ଟର ପକେଟ୍‌ରୁ ସିଗାରେଟ୍ ଟିଣ କାଢ଼ି ବଢ଼େଇ ଧରିଲେ, କହିଲେ, ''କେମିତି ? ୟୁ ସି- ବହୁଦିନ ପରେ । ହ୍ୟାଭ୍ ଓ୍ୱାନ୍, ତା'ପରେ ସବୁ ଭଲ ତ ?''

ଲୋକଟା କିଏ ? ଏତେ ଆପଣାର ପରି କଥା ହେଉଛି । ବେଶଭୂଷା, କଥାର ଭଙ୍ଗୀ, ଚେହେରା, ସବୁଥିରୁ ଅନୁମାନ ଉଠାଇ ଅଶୋକ ଅନୁମାନ କଲା ଏ କେହି ଏ. ସି. ଏସ୍. ଓ. ସମ୍ଭବତଃ ଗଡ଼ଜାତରେ ପୋଷ୍ଟିଂ । ସି. ଏସ୍. ଓ. ନୁହନ୍ତି, ନୁହନ୍ତି ସୁପରଭାଇଜର, ନିଶ୍ଚୟ ଏ. ସି. ଏସ୍. ଓ.

ହଠାତ୍ ଏ ସିଦ୍ଧାନ୍ତରେ ପହଞ୍ଚିବାର ବି ସେ ସ୍ଥୂଳ କାରଣ କିଛି ପାଇଲା ନାହିଁ । ଗୋଟାଏ କିଛି ଅନୁମାନରେ ବାଢ଼େ, ତା'ପରେ ମନଯାକ ସତେ କି ଚହଲ ପଡ଼େ; ଭାବେ, ଏଇ ଠିକ୍, ଏଇ ଠିକ୍ ।''

''କଣ ଆପଣଙ୍କ କଥା କୁହନ୍ତୁ ଆଗ, ବହୁଦିନ ପରେ ଦେଖା ।''

''ହଁ, ଚାଲିଚି; ମନ୍ଦ ନୁହେଁ, ୟୁ ସି ।''

''ତା ତ ଚାଲିଥିବ । ତା'ପରେ ?''

''ୟୁ ସି- ଫାଦର ଇନ୍ ଲ' ଏକ୍ସପାୟାର କଲେ ।''

''କରନ୍ତେ ତ, ବୁଢ଼ା ହୋଇଯାଇଥିଲେ ।''

''ହ୍ୱାଟ୍ ଡୁ ୟୁ ମିନ୍ ? ବୁଢ଼ା । ପଇଁଚାଳିଶି ବର୍ଷର ଲୋକଙ୍କୁ ବୁଢ଼ା କୁହାଯାଏ, ୟୁ ସି !''

''ବୁଢ଼ା ଆଜିକାଲି ସମସ୍ତିଙ୍କି କୁହାଯାଇପାରେ, ଆଜ୍ଞା, ଦୁନିଆର ଯେଉଁ ଅବସ୍ଥା, ମିଶା ତେଲ, ମିଶା ଘିଅ, ପାଣି ଦୁଧ ଖାଇ ସ୍ୱାସ୍ଥ୍ୟ ବି ଯାଉଛି । ଅର୍ଥଚିନ୍ତା କରୁ କରୁ ମନ ଭାଙ୍ଗିପଡୁଛି । ଅବଶ୍ୟ ସେ ଚିନ୍ତା ଆପଣଙ୍କର ନାହିଁ ।''

ବନ୍ଧୁ କିପରି ଯେପରିକି ଅପ୍ରସ୍ତୁତ ହେଲେ, କହିଲେ, ''ଛାଡ଼ନ୍ତୁ, ଆମେ ବେଶି ପର୍ସନାଲ୍ ହେଇଯାଇଛୁ, ୟୁ ସି-''

''ଆଚ୍ଛା, ଏଥର ତେବେ ଇମ୍ପର୍ସନାଲ୍ ହେଉଁ । ଆପଣଙ୍କ କାମ କେମିତି ଚାଲିଚି ?''

ବନ୍ଧୁ ହସିଲେ, କହିଲେ, ''ଆମ କାମ ଆପଣ ଖବରକାଗଜରୁ ଦେଖି ପାରୁଥିବେ ।''

''ଦେଖୁଛୁ ତ । ତା ସତ୍ତ୍ୱେ ? ଆପଣ କଣ ଭାବୁଛନ୍ତି ?''

ବନ୍ଧୁ ମୁହଁ ଭୁରୁକୁଣ୍ଡେଇଲେଣି । ଗମ୍ଭୀର ହୋଇ କହିଲେ, ''କାମ ଚାଲିଛି ଯେମିତି ଚାଲିବା କଥା, ମୁଁ ଆଉ ଭାବିବି କଣ ।''

''ଆପଣଙ୍କ କଲେକ୍ଟର କେମିତି ଅଛନ୍ତି ?''

''କଲେକ୍ଟର ? ହ୍ୱାଟ ଡୁ ୟୁ ମିନ୍ ? ୟୁ ସି, କି କଲେକ୍ଟର ?''

ହଠାତ୍ ଅଶୋକର ଧୈର୍ଯ୍ୟଚ୍ୟୁତି ଘଟିଲା । ଲାଗିଲା, ତେବେ ଏ ଲୋକ ଏ. ସି. ଏସ୍. ଓ. ବି ନୁହନ୍ତି । ତେବେ କଣ କିଏ ବାଜେ ଲୋକ ? ନା, କେହି ଇନ୍‌ସ୍ୟୁରେନ୍ସ ଭାଲୁ, 'ଆମ କାମ ଆପଣ ଖବରକାଗଜରେ ଦେଖିପାରୁଥିବେ', ହାତରେ ମୁଣି । ଉପରେ ପଡ଼ି ଆକ୍ରମଣ, ହଠାତ୍ ସିଗାରେଟ୍ ଯଚା, ଯାବତ କଥାର ଫନ୍ଦି । ସମୟ ବହେ ଗଲାଣି । ଅଶୋକ ବିରକ୍ତ ହୋଇ କହିଲା, ''କ୍ଷମା କରିବେ ଆଜ୍ଞା, ଆପଣଙ୍କ ନାଁଟା କଣ କହିଲେ ? ମୋର ଆଦୌ ମନେ ପଡୁନାହିଁ ।''

ବନ୍ଧୁ ମୁହଁ ଲମ୍ବେଇ ସୁ-ସୁ ଶବ୍ଦ କରି ପବନ ଶୋଷିଲେ ଦୁଇ ମିନିଟ୍ । ବଡ଼ ବଡ଼ ଆଖିର ଦୃଷ୍ଟି ଅଶୋକବାବୁଙ୍କ ମୁହଁରେ ସ୍ଥିର ରଖିଲେ । କହିଲେ, ''ଗୁଡ୍ ହେଭେନ୍ସ୍- ୟୁ ସି ! କି ତାଜୁବ୍ କଥା ! ଭୁଲିଗଲେ ? ଆପଣଙ୍କ ସାନଭାଇକି ଟିଉସନ୍ କରୁଥିଲି ଏକବର୍ଷ-''

''ଅନେକ ତ ପଢ଼ୋଉଥିଲେ ।''

''ଏକାଠି ଲ' ପରୀକ୍ଷା ଦେଲେ-''

''ସେ ତ ଅନ୍ତତଃ ଅଢ଼େଇଶ ଜଣ ଦେଇଥିଲେ ।''

''ଆପଣଙ୍କ ବାପାଙ୍କ ସଙ୍ଗେ ମୋର ଏତେ ଘନିଷ୍ଠତା-''

''ବାପାଙ୍କ ବନ୍ଧୁଙ୍କ ସଂଖ୍ୟା ଶୁଣିଲେ ଆପଣ ଆଶ୍ଚର୍ଯ୍ୟ ହେବେ ।''

''ତା'ପରେ କଚିରୀରେ ଦେଖାଦେଖି- କ'ଣ ଆପଣ କହୁଛନ୍ତି, କିଛି ମନେ ନାହିଁ ?'' ତାଙ୍କର ଆତ୍ମାଭିମାନ ଅପମାନ ଦାଉରେ ଚିତ୍କାର କରିଉଠିଛି । କିନ୍ତୁ ଅଶୋକର ବିରକ୍ତି ବଢ଼ୁଛି । ସାଇକ୍ଲରେ ଏକ ଘୋସରା ଦେଇ କହିଲା, ''ଲମ୍ବ କାହାଣୀ ଛୋଟ କରିଦେଇ କହନ୍ତୁ ନାଁ, ଆଜ୍ଞା, ଆପଣଙ୍କ ନାଁ-''

''ଓ ! ଆଇ ସି-'' ବନ୍ଧୁ କହିଲେ, ''ମୋ ନାଁ ନୀଳମାଧବ ଦାସ । ଆଇ.ଏ.ଏସ୍. ହେଲା ପରେ ବର୍ତ୍ତମାନ କାଶ୍ମୀର କମିଶନରେ ଅଛି । ଫାଦର ଇନ୍ ଲ' ହଠାତ୍ ଏକ୍ସାୟାର କଲେ କିନା, ତେଣୁ ଛୁଟିରେ ଆସିଥିଲି, ୟୁ ସି । ଭୁଲିଗଲେଣି ତା ହେଲେ ? ହଉ, ଆପଣଙ୍କ ଦୟା- ନମସ୍କାର ।''

ଲଜ୍ଜାରେ ଥର ଥର ହେଲା ଅଶୋକ, କହିଲା, ''ଓଃ, ଏତେ ଦିନ ଏତେ ରାତି ଏକାଠି । ଆପଣ ଚପ୍ ଖାଇବାକୁ ଭଲ ପାଉଥିଲେ, ତେଣୁ ପାର୍କ ହୋଟେଲ-ନରିବାବୁ-ଆଉ-ଛାଡ଼ନ୍ତୁ ! ସବୁ ମନେ ଅଛି, ଆଜ୍ଞା । ଆପଣଙ୍କୁ ଭୁଲିପାରେ ? ଆପଣ ଦୁଃଖିତ ହେବେ ଶୁଣି, ମୋର ନର୍ଭସ୍ ବ୍ରେକ୍‌ଡ଼ାଉନ୍ ହୋଇଛି । ସବୁ ଭୁଲିଯାଉଛି । କ'ଣ କରିବି, କୁହନ୍ତୁ ?''

କିନ୍ତୁ ବନ୍ଧୁ ଯେପରିକି ବିଶ୍ୱାସ କଲେ ନାହିଁ- ବୁଲିପଡ଼ିଲେ-କହିଲେ, ''ହଉ, ନମସ୍କାର ।''

''କାଶ୍ମୀର ପହଞ୍ଚି ଚିଠି ଦେବେ ଆଜ୍ଞା ।''

ବନ୍ଧୁ ନ ଶୁଣିଲାପରି ଚାଲିଯାଉଚନ୍ତି ।

ତା'ପରେ ରାସ୍ତାରେ ସବୁଦିନ ପରି ଚାରିଆଡୁ ''ନମସ୍କାର, ନମସ୍କାର'', ''କି ଅଶୋକବାବୁ, କେମିତି ଅଛନ୍ତି ?'' ଅଭ୍ୟାସ ଅନୁସାରେ ତା ତରଫରୁ ବି ପ୍ରତି-ନମସ୍କାର, ଦୁଃଖସୁଖ । କିନ୍ତୁ ଆଜି ସେ ନାଁ ଖୋଜୁଛି, ନାଁ ପାଉନାହିଁ । ଏମାନଙ୍କ ସଙ୍ଗରେ ଏତେ ସମ୍ବନ୍ଧ, ଏତେଦିନର ହସଖେଳ, ସୁଖଦୁଃଖର ଜୀବନଯାତ୍ରା । ଅଥଚ ନାଁ ମନେ ପଡୁନାହିଁ ! ଆଶଙ୍କା ହେଉଛି, ଯଦି ପୁଣି ସେପରି ଅବସ୍ଥା ଉପୁଜେ, ଯେତେବେଳେ 'କ'ରନାଁ କୁ ସେ 'ବ' କହିବସିବ । ତେଣୁ କାହାକୁ ଡ଼ାକ ଛାଡ଼ିଲେ, ସେ ନାଁ ଧରୁ ନାହିଁ, କେବଳ ଓଡ଼ିଆ ସମ୍ବୋଧନ ପଦରେ କାମ ଚଲୋଉଛି- 'ହୋ', 'ହେ', 'ଆଜ୍ଞା', 'ରେ' ।

ବହି ଦି'ଖଣ୍ଡ ନେବାକୁ ପଡ଼ିବ । ଏହି ସେ ବାବୁଙ୍କ ବସାଘର ନା କଣ ? ଜଗତରେ ଏତେଲୋକ, ଗଏଙ୍କ ଛାଇତଳ ବିନା ବଢ଼ିପାରେ ନାହିଁ ଜଣକ । ଏକାପରି ମଣିଷ, ଏକ ନିଦାନ ଉପାଦାନ, ଦଖଲ ଘେନି ପାର୍ଥକ୍ୟ; ଯେତେ ଭାଇ ସେତେ ଘର, ଯେତେ କନିଆଁ ସେତେ ବର । କିନ୍ତୁ ନାଁ ମନେ ନରଖି ଚଳିପାରିବ କେମିତି ? ନାଁ ମନେ ରଖିବାକୁ ହେବ, ଲାଗୁ ସେଥିପାଇଁ ଯେତେ ବ୍ରାହ୍ମୀଘୃତ, ଯେତେ ଟନିକ୍, ଯେତେ ଔଷଧ । ନାଁ- ଚଳନ୍ତି ଦୁନିଆ ସହିତ ଗଣ ସହିତ ଜଣକର ଡ଼ୋର; ତାକୁ ଅତୁଟ ରଖିବାକୁ ପଡ଼ିବ ଯେ କୌଣସି ଉପାୟରେ । କିନ୍ତୁ ଭାବୁ ଭାବୁ ସ୍ମୃତି ଚହଲି ଚହଲି ଯାଉଛି; ବାମ୍ପ ହୋଇ ଉଡ଼ିଯାଉଛି ଉଗ୍ର କେନ୍ଦ୍ରିକତା । ଏହି ତ ସେ ବାବୁଙ୍କ ଦସା ନା କ'ଣ !

ଆକୁଳ ଆଖିରେ ଏପାଖ ସେପାଖ ଅନେଇଁ ଅଶୋକ ଭାବିଲାଗିଲା, ନାଁ କଣ ? କି ନାଁ ତାଙ୍କର ? ବହି ଦି'ଖଣ୍ଡ ଅସୁଲ କରିବାକୁ ହେବ ଯେ କୌଣସିମତେ । ମନେ ପଡ଼ିଯାଏ- ସହରର ଭଦ୍ରଲୋକ ଏମାନେ; ଖଣ୍ଡିଏ ଖଣ୍ଡିଏ ବହି ନେଇ ତା'ପରେ ପାସୋରି ପକାଇବାହିଁ ଏମାନଙ୍କର

ସ୍ୱଭାବ । ଏଥିରେ ଦବିଲେ, ବ୍ୟକ୍ତିଗତ ସମ୍ପତ୍ତି ବଜାୟ ରହିବା ହିଁ ଅସମ୍ଭବ । ସୁତରାଂ-

ଅତି ଜୋରରେ ଭାବି ଭୁଲିଗଲା ଅଶୋକ ଯେ ବଡ଼ ସହରରେ କାହା ଘରକୁ ଯାଇ ଡ଼ାକିଲେ ତାଙ୍କର ନାଁ ମନେ ରଖିବା ଆବଶ୍ୟକ ପଡ଼େ ନାହିଁ । କେବଳ ପଦେ 'ବେହେରା' ବା 'ପୂଜାରୀ', ତା'ପରେ ଖାଲି ଦେହରେ ଲୁଙ୍ଗୀପିନ୍ଧା ବାବୁ ନିଜେହିଁ ବେହେରା ପୂଜାରୀ ବେଶରେ ଆସି ପଚାରିବେ, ''କଣ ଆଜ୍ଞା ? କାହାକୁ ଖୋଜୁଛନ୍ତି ?''

ସାଇନ୍ ବୋର୍ଡ଼ ଦିଶୁଛି, ଇଂରାଜୀରେ ଲେଖାହୋଇଛି, ''ଏମ୍. ସି. ମହାନ୍ତି ।'' ଅଶୋକ ଆଶ୍ୱସ୍ତିର ହସଟାଏ ହସି ସେହି ଆଡ଼କୁ ଚାହିଁ ରହିଲା । ନାଁଟା ଯେପରିକି ମନେ ପଡୁ ନାହିଁ । ଜିଭ ଅଗରେ ଥାଇ ପାସୋରି ହୋଇଯାଉଛି । ଏମ୍. ସି.- ମନିଷ୍ଚନ୍ଦ୍ର, ମୋହନଚରଣ, ହଠାତ୍ ଯେପରିକି ଶୂନ୍ୟରେ ଆଲୁଅ ଝଲସିଲା, ଠିକ୍ ଠିକ୍- ମାର୍କଣ୍ଡଚରଣ- ୟୁରେକ୍‌କା । ଦମ୍ଭ ଗମ୍ଭୀର ଗଳାରେ ଦଖଲି ସ୍ୱତ୍ୱର ପୂର୍ଣ୍ଣତେଜ ଅଜାଡ଼ିଦେଇ ଅଶୋକ ରଡ଼ିଲାଗିଲା- ''ମାର୍କଣ୍ଡବାବୁ, ହୋ ମାର୍କଣ୍ଡବାବୁ, ମାର୍କଣ୍ଡବାବୁ ଘରେ ଅଛନ୍ତି ?''

ଭିତରୁ ଝରକାବାଟେ ମୁହଁ ଦେଖାଇଲେ ଜଣେ ସ୍ତ୍ରୀଲୋକ, ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହିଲେ । ଭିତରେ କାହାକୁ ଯେପରି କ'ଣ କହୁଛନ୍ତି । ଜଣେ କିଏ ପଦାକୁ ଆସିଲା, ବଚନିକା ନ କରି କହିଲା- ''ମାର୍କଣ୍ଡବାବୁ ଫାର୍କଣ୍ଡବାବୁ ନାହାନ୍ତି କେହି ଏଠି, ଆଗରେ ଦେଖନ୍ତୁ ।''

''କଣ ? ଏ ମାର୍କଣ୍ଡବାବୁଙ୍କ ଘର ନୁହେଁ ? ମୁଁ କଣ ମାର୍କଣ୍ଡବାବୁଙ୍କ ଘର ଚିହ୍ନିନାହିଁ, ଭାବିଚ ? ଯା, କହିଦିଅ, ଅଶୋକବାବୁ ଡ଼ାକୁଛନ୍ତି ?''

''କୋଉ ମାର୍କଣ୍ଡବାବୁ, ଆଜ୍ଞା ? ଆପଣ ଭୁଲ୍ କରୁଚନ୍ତି । ଏଠି କେହି ନାହାନ୍ତି କହିଦେଲି ପରା- ଯାଆନ୍ତୁ, ଆଗରେ ପଚାରନ୍ତୁ ।'' ଲୋକଟା ଅବଜ୍ଞାଭରେ ଅନ୍ୟ କଥା ନକହି ଦୂରରେ ଯାଉଥିବା ମାଛବାଲାକୁ ଦେଖି ପାଟିକଲା, ''ହେ ମାଛବାଲା, ହେ- ଆଇଲୁ ଆଇଲୁ ।'' ଅଶୋକ ବିରକ୍ତ ହେଲାଣି । ସହରର ପିଲା, ସହରର ଫାଜିଲାମି ବୁଝେ । ସାଇକଲକୁ ପିଠିପଟେ ଡ଼େରିଦେଇ ଆଉଜିପଡ଼ି ଛାତିକୁ ପୂରା ଓସାର କରିଦେଇ ସାମ୍ନାକୁ ଚାହିଁ କହିଲା-

''ହୋ !''

''କଣ ?''

''ତମ ସାଙ୍ଗେ ବୁଝାଶୁଝା ଅଛି !''

''ଏଁ, ବୁଝାଶୁଝା ?''

''ହଁ. ତମେ କିଏ କହ ତ ?''

''ମୁଁ ଏ ଘରର ଚାକର ।''

''ହଁ, କେଇଟଙ୍କା ଦରମା ପାଅ ?''

''କିଓ ବାବୁ, ମୁଁ କେତେ ଟଙ୍କା ପାଇଲେ କାହାର ସେଥିରେ କଣ ଯାଏ ?''

''ଯିବ ନାହିଁ ? ବୋକା ଚାକର ରଖିଲେ ଘରମାଲିକର ସବୁ ଯାଏ; ବଜାରି ଚାକର ରଖିଲେ ସର୍ବନାଶ ହୁଏ । ଶସ୍ତା ଚାକର ରଖିଲେ ମଣିଷ ଶେଷରେ ମହଙ୍ଗାରେ ପଡ଼େ । ଏ ଘର ଭିତରର ଅନ୍ଧିସନ୍ଧି କନ୍ଦି ବିକନ୍ଦି ସବୁ ମତେ ମାଲୁମ୍, ତମେ ଜାଣିଚ ? ଫାଜିଲାମି କରୁଚ କାହା ସଙ୍ଗେ ? ମତେ

କହୁଚ କଣ ନା ଏ ମାର୍କଣ୍ଡବାବୁଙ୍କ ଘର ନୁହେଁ, ଏଁ ? ଜାଣିଚ, ତମ ମୁନିବ ମୋର ପୁରୁଣା ବନ୍ଧୁ, ମୋର ଦୋସ୍ତ, ମଝିରେ ଦିନା କେତେ ଆସିପାରି ନାହିଁ ସିନା; ବରାବର ଏ ଘରକୁ ମୋର ଆତଯାତ ଥିଲା । ଏଇ ଦାଣ୍ଡଘରେ କେତେଥର ଯେ ବସିଉଠି ଯାଇଚି ତା'ର ଲେଖା ନାଇଁ । କଣ ଭାବିଚ ତମେ ? ମୋ ସଙ୍ଗେ ଫାଜିଲାମି ?''

କଥାଗୁଡ଼ାକ କହିବାକୁ ମନେ ମନେ ସେ ଦ୍ୟୋତନା ପାଇଲା ଘରର ଝରକାଆଡ଼କୁ ଚାହିଁ । ସେଠି ତଥାପି ରହିଛି ସେହି ମୁହଁ । ରାଗ ଭିତରେ ସାନ୍ନିଧ୍ୟର ପରିଚୟ ଦେବାକୁ ସେହି ଯେପରିକି କହିଦେଉଛି । ଘରର ଚାକର ଚିହିଁକି ଉଠି ''ଦେଖିବଟି ହୋ'' ''ଅନେଇଁବଟି ହୋ'' ବୋଲି ପ୍ରତ୍ୟାକ୍ରମଣ କରି ଉଠିଲାବେଳକୁ ସେହି ଝରକାକାଟେ ସରୁ ଗଳାରେ ଡ଼ାକ ଆସିଲା-

''ଭଗିଆ, ଭଗିଆ- ଶୁଣିଯା ।''

ଭିତରକୁ ଯାଇ ଆଖିପିଛୁଡ଼ାକେ ଫେରିଆସି ଚାକର କହିଲା-

''ଆପଣଙ୍କ ବନ୍ଧୁ ମାର୍କଣ୍ଡବାବୁ ଏ ବସାରେ କେବେ ଥିଲେ, ମା' ପଚାରୁଚନ୍ତି ।''

ଅପରିଚିତ ଲୋକ ଆଗରେ 'ମା' ପଚାରୁଚନ୍ତି' ଯୋଡ଼ିବାକୁ ଟିକିଏ ବୋଲି ବାଟୁଳି ବାଜିଲା ନାହିଁ ତା ପାଟିରେ । ନିଜର ଆତ୍ମସମ୍ମାନ ଖାତିରିରେ । କୋଉ ମାର୍କଣ୍ଡବାବୁ, ତା'ର କି ଯାଏ ?

''ବରାବର ଥିଲେ, ବରାବର ଅଛନ୍ତି,'' ଅଶୋକ କହିଲା, ''ହେଇ ତ ନ'ମାସ ତଳେ ଦେଖା ହୋଇଥିଲା ଏଇ ଘରେ ।''

ଝରକାବାଟେ ପିଚ୍‌କିନା ପାନପିକ ପଡ଼ିଲା । ମୁହଁଟି ଦିଶିଲା ଏଥର ଅତି ପରିଷ୍କାର । ଭିତରୁ, ଶୁଭିଲା, ''ଭଗିଆ, କହିଦେ- ଆମେ ଏଇ ବସାରେ ପାଞ୍ଚବର୍ଷ ହେଲା ଅଛୁଁ । ଏଠି ମାର୍କଣ୍ଡବାବୁ ଫାର୍କଣ୍ଡବାବୁ କେହି ନାହାନ୍ତି । ଏଠି ଥାଆନ୍ତି ମାଧବଚନ୍ଦ୍ର ମହାନ୍ତି, ସାଇନ୍ ବୋର୍ଡ଼ରେ ନାଁ ଲେଖା ଅଛି, କହିଦେ-''

ଅଶୋକ ଆଉ ଦଣ୍ଡେ ବି ଅପେକ୍ଷା କଲା ନାହିଁ; ସିଧା ସାଇକେଲ ମାରି ଦାଣ୍ଡେ ଦାଣ୍ଡେ । ଏତେବେଳକେ ହଠାତ୍ କୁହୁଡ଼ିଆ ସ୍ମୃତି ଭିତରେ ସତରେ ସତର ସୂର୍ଯ୍ୟ ଉଇଁଛି । ସତେ ତ ! ମାଧବବାବୁ ସେ, ଏମ୍. ସି. ମହାନ୍ତି, ନିତିଦିନର ଚିହ୍ନା ମାଧବବାବୁ । ଆଉ କେତେ ମୂର୍ଖ ସେ ନିଜେ ? ମାଧବକୁ ମାର୍କଣ୍ଡ ! ଝରକା ସେ ପାଖର ସେହି ମୁହଁ ଦିଶିଯାଉଛି । ମନେ ମନେ ଲଜ୍ଜା ଘାରୁଛି । ସେହି ମୁହଁ ସତେ କି ଦୂରକୁ ଠେଲିଦେଉଛି- ପଳା, ପଳା, ଦୂର ପଳା ।

ଦୂରରୁ ଦିଶୁଛି, ମାଧବବାବୁ ନିଜେ ଆସୁଛନ୍ତି । ଦେଖା ହେଲେ ହୁଏତ ବହି ଦି'ଖଣ୍ଡ ମିଳିପାରନ୍ତା । କିନ୍ତୁ ଯଦି ବନ୍ଧୁତାର ଆତିଶଯ୍ୟରେ ସେ ଘରକୁ ଭିଡ଼ନ୍ତି,ତେବେ? ସେହି ଝରକା- ।

ଯାଉ ପଛେ ବହି, ଯଃ ପଳାୟତି ସ ଜୀବତି ।

ଆପଣା ଘରମୁହାଁ ଖଣ୍ଡେଦୂର ଗଲାପରେ ପୁଣି ମନେ ପଡ଼ିଲା ସେହି ମୁହଁ ଓ ତା ସଙ୍ଗେ ଆହୁରି ଗୋଟିଏ ମୁହଁ- କମଳୀର । କମଳୀ ପଡ଼ୋଶୀର ଝିଅ, ଭାଇ ବୋଲି ଡ଼ାକୁଥିଲା ପିଲା ଦିନୁଁ, କମଳୀ ବିଭା ହୋଇଯାଇଛି । ତା ଛଡ଼ା, କମଳୀର ଜାତି ଭିନେ, ସେ ଏମ୍. ସି. ମହାନ୍ତିଙ୍କ ସହଧର୍ମିଣୀ ହେବା ଅସମ୍ଭବ ।

କିନ୍ତୁ କି ସାଦୃଶ୍ୟ ! ଅବିକଳ ସତେ କି କମଳୀ । ଭାବୁ ଭାବୁ ମନ ପୂରିଉଠେ; ଅତୀତର

ଯେତେ ଛିଡ଼ିପଡ଼ି ମଉଳି ପଡ଼ିଥିବା ପୃଷ୍ଠାସବୁ ସତେ କି କଅଁଳିଉଠି ସଜେଇହୋଇ ରହେ ଆପଣା ସ୍ଥାନରେ । ମହକି ଉଠେ ଚେତନା- କମଳୀ ଅବିକଳ ତ !

ଭୁଲ ମନରେ ସାନ୍ତ୍ୱନା ଆସୁଛି ଆପେ ଆପେ, ଗୁଣ ଭୁଲି ହୁଏ ନାହିଁ, ଆପଣା ଚେତନାର ଦର୍ପଣରେ ଫଳିତ ମରମ ଭାବର ଛବି ଭୁଲି ହୁଏ ନାହିଁ । ବୈଷୟିକ ସମ୍ପର୍କରେ ଭଟ୍ଟା ପଡ଼ିବ, ପଡୁ, ଜୀବନ ବଞ୍ଚିହେବ । ଗୋଟାଏ ଦେହ- ଯାହା ହେଉ ତା'ର ନାଁ- ଏକା ମନୁଷ୍ୟ ଦେହ, ସେଠି କିଛି ଅଛପା ନାହିଁ, ସବୁ ବିଧାତାର ସୃଷ୍ଟି । ଅବସ୍ଥା ଅନୁପାତରେ ଜୀବର ସେହି ଏକ ପ୍ରକାର ବ୍ୟବହାର, ସେହି ମନ, ସେଠି କିଛି ସୁଖଦୁଃଖର ଲହର, ଛାଇ ଆଲୁଅର ଖେଳ । ସେହି ଜୀବନର ଜଳ ସବୁ ଘଟରେ, ପାତ୍ରରେ ବିଚିତ୍ରତା । ଦର୍ଶନର ତଥ୍ୟ ଆନନ୍ଦ ଦିଏ ମନକୁ, ଚକ୍ଷୁ ଦିଏ ଭିତରଟା ଦେଖିବାକୁ । ସେହି ଚକ୍ଷୁରେ ସେ ଦେଖିଲାଗିଲା । ସେ ନିଜେ ବି ହୋଇପାରିଥାନ୍ତା ମାଧବବାବୁ- ।

ଆଉ ଝରକା ସେ ପାଖେ ସେ- ଅବିକଳ କମଳୀ ।

ସେ ନିଜେ ବିଭା ହୋଇନାହିଁ- ନ ହେଉ; ଦାଣ୍ଡଘରେ ଏପାଖ ସେପାଖ ଦଉଡ଼ା ଦଉଡ଼ି କରୁଥିଲା ଗୋଟିଏ ଛୋଟ ପିଲା । ସେ ହୋଇପାରିଥାନ୍ତା ତା'ରି ଆତ୍ମଜ, ତା'ରି ସନ୍ତାନ ।

ହୋଇପାରି ନାହିଁ, ନହେଉ- ନାଁ ଭୁଲିଲେ ଉପାଦାନ ସମାନ ।

ଭାବୁ ଭାବୁ କରୁଣ ହୋଇଆସୁଛି ମନ । ଦିନ ଚାଲିଯାଇଛି, ସେ ଉଡ଼ି ଉଡ଼ି ଚାଲିଛି, ବସା ଧରିନାହିଁ । ଯୌବନ ନ ସରୁଣୁ ଓହ୍ଲେଇଛି ବିସ୍ମରଣ, କାହିଁକି ? ସେ କ'ଣ ଚିଆଁ ଲଗା ମନର ହାକୁହାକୁ ଭୁଲିବା ପାଇଁ ପ୍ରକୃତିର ଅଞ୍ଜନ ?

ହେଇ, ଜଣେ ଯାଉଛି । ତିରିଶଟା ଟଙ୍କା ଧାର ସେ ଅସମୟରେ ଉଧାର ନେଇଥିଲା । ତା'ପରେ ସବୁ ଭୁଲିଯାଇଛି । ଅଶୋକ ମୁହଁ ଟେକି ଚାହିଁଲା । ନାଁଟା ମନେ ପଡୁ ନାହିଁ । ଲୋକଟା ତରତର କରି ପାଖ ଗଳିରେ ପଶୁଛି । ଅଶୋକ ଅପେକ୍ଷା କଲା ନାହିଁ । ସାଇକେଲ୍‌ରେ ବେଗ ବଢ଼ାଇ ଗିଁ ଗିଁ କରି ଉଡ଼ିଗଲା ତା'ର ପଛେ ପଛେ ।

# ଘର

## ୧

ଦକ୍ଷିଣର ରେଳଗାଡ଼ିରୁ ଜିନିଷପତ୍ର ପିଲାପିଲି ଓହ୍ଲେଇନେଇ ରାଜଧାନୀକୁ ନୂଆ ବଦଳି ହୋଇଥିବା କର୍ମଚାରୀ ସଦାଶିବ ଯେତେବେଳେ ଷ୍ଟେସନ ଫାଟକ ଟପି ପଦାକୁ ଆସିଲା, ସେତେବେଳେ ଝିଅ ମନ୍ଦାକ୍ରାନ୍ତା ଆହୁରି ଥରେ ପଚାରିଲା- "ବାପା ଆମ ଘର ?" ତା'ଠୁଁ ଦୁଇବର୍ଷ ସାନପୁଅ ଶାର୍ଦ୍ଦୁଳ ବିକ୍ରୀଡିତ ଉଲ୍ଲାସରେ ଷ୍ଟେସନ ଘର ଭିତରେ କୁଦା ମାରିଲା ପାଟି କରି କରି- "ଆମ ଘର, ଆମ ଘର ।" ସାନ ପୁଅ ଅନୁଷ୍ଟୁପ୍ ଓ ସାନଝିଅ ଗାୟତ୍ରୀ ଏତିକିରୁ ବୁଝିଲେ ଯେ, ଏ ଉତ୍ସବ ପାଳିବା ଉଚିତ । ତେଣୁ ଦୁହେଁ ବେକରେ ହାତ ଛନ୍ଦାଛନ୍ଦି ହୋଇ ଡ଼େଇଁ ଡ଼େଇଁ ବୁଲିଲେ ପାଟି କରି କରି- "ଆମ ଗଲ, ଆମ ଗଲ ।" ପଛରେ ଆସୁଛନ୍ତି ତାଙ୍କ ମା' ଦମୟନ୍ତୀ, କହିଲେ - "ପାଣି ସୋରେଇଟା କଣ ରେଳରେ ରହିଗଲା କି ?"

"ନା, ଅଛି ଟାଇ," ସଦାଶିବ କହିଲା । ପିଲାଙ୍କୁ ଆକଟି କହିଲା, "ହେଇ, ପାଟି କରନା ।"

ଲୋକେ ଚାହିଁଛନ୍ତି । ଚାହିଁବାର ବି କଥା, ମାଲ୍ ବହୁତ । "ବାବୁ, ଗାଡ଼ି ? ବାବୁ ?" କହି ଗାଡ଼ିବାଲାମାନେ ଯେତେବେଳେ ଘେରିଗଲେ, ମନ୍ଦାକ୍ରାନ୍ତା ଆଉ ଥରେ ପଚାରିଲା-"ବାପା ଆମ ଘର ଏଠୁ କେତେଦୂର ?"

ସଦାଶିବ କିଛି ଜବାବ୍ ଦେଲାନାହିଁ । ଜିନିଷପତ୍ର ପଠାପଠି କରିଦେଇ ପିଲାଙ୍କୁ ଧରି ଗୋଟିଏ ଘୋଡ଼ାଗାଡ଼ିରେ ବସି ଯାତ୍ରା ଆରମ୍ଭ କରିଦେଲା ।

ଗାଡ଼ି ଭିତରେ ସ୍ତ୍ରୀକୁ ଚାହିଁଲା, ସେ ଆସନ୍ନ-ପ୍ରସବା । "କେମିତି ଅଛ ?"

"ଭଲ ।"

"ଆରେ ପିଲାଏ ବୋଉ ଉପରେ ମାଡ଼ି ହୁଅ ନାହିଁ ।"

ଶାର୍ଦ୍ଦୁଳ-ବିକ୍ରୀଡ଼ିତ ସ୍ଲୋଗାନ୍ ଦେଲା- "ଆମ ଘର ।"

ସଙ୍ଗେ ସଙ୍ଗେ ସମସ୍ତେ ମିଶି ସମସ୍ୱରରେ ଚିତ୍କାର- "ଆମ ଘର, ଆମ ଘର ।"

ଦି' ପାଖ ସିଟ୍‌ରୁ ସ୍ୱାମୀ ସ୍ତ୍ରୀ ମୁହଁ ଚାହାଁଚାହିଁ ହେଲେ, ଦମୟନ୍ତୀ ହସିଲା, ସଦାଶିବ ମୁହଁ ପୋତିଲା ।

ବାରବର୍ଷ ପରେ ସେ ରାଜଧାନୀକୁ 'ବଦଳି' ହୋଇଛି । ମଝିରେ ବର୍ଷେ ଦି ବର୍ଷରେ ଥରେ ଅଧେ ନ ଆସିଚି ନୁହେଁ, କିନ୍ତୁ ସଂସାର ସମେତ ବଦଳି ଏଇ ପ୍ରଥମ । ଏହି ସେହି ପୁରୁଣା କଟକ,

ତାର ବାଲ୍ୟର, ଯୌବନର । ଆଉ ଏଠୁ ଚାରିକ୍ରୋଶ ଦୂରରେ ନଈ ସେପାରି ସାନ ଗାଁଟିଏ, ଯେଉଁଠି ସେ ଜନ୍ମ ହୋଇଥିଲା ।

ଜନମମାଟିର ଡିହ ଉପରେ ଲଙ୍କାମରିଚ ବାଇଗଣ ଲାଗିଥିବ, ଡିହବାଇଗଣ ଭଲ ଫଳୁଥିବ ।

ଆଉ ଥିବ କଳାମିଶ୍‌ମିଶ୍ କଖାରୁ ଡଙ୍କ, ତାର ଚେକା ଚେକା ଟାଉଁସିଆ ପତ୍ର ।

୨

କୋଠା-କୋଠା-କୋଠା ଠିଆ ହୋଇଛି, ତିଆରି ଚାଲିଛି, ଇଟା ଗଦା ହେଉଛି, ବାଲି ଗଦା ହେଉଛି । ଇଟା ବୋଝେଇ ହୋଇ ଲୁହାଛଡ଼ ବୋଝେଇ ହୋଇ ବିକଟ ବେଗରେ ଚାଲିଛନ୍ତି ଟ୍ରକ ମାଳ ମାଳ । ମଟର ଚାପି ହୋଇ ମରିଗଲା ବା କିଏ, - ଏମିତି ମରି ନ ଥାନ୍ତା ସେମିତି ମରନ୍ତା, ପ୍ରଗତି ଅଟକୁ ନାହିଁ । ଭଁ ଭାଁ ମଟରଗାଡ଼ି, କେତେ ବଡ଼ଲୋକ । ଉଦ୍‌ବୁଦ୍ଧ କଟକ, ସମୃଦ୍ଧ କଟକ । ଜାତି ଜାତି ଲୋକ, ଗହଳି ସହର ।

ବାରବର୍ଷତଳେ ଏଠୁ ଯାଇଥିଲା ସେ । ଜିଲ୍ଲାରେ ଜିଲ୍ଲା ବିଶାଳ ଓଡ଼ିଶା । ମନ୍ଦାକ୍ରାନ୍ତା ବାଲେଶ୍ୱରରେ ଜନ୍ମ, ଶାର୍ଦ୍ଦୁଳବିକ୍ରୀଡ଼ିତ କୋରାପୁଟର, ଅନୁଷ୍ଟୁପ୍‌ର ଜନ୍ମଭୂମି ବୋଡ଼ାସମ୍ବର, ଗାୟତ୍ରୀ ଭଂଜଭୂମିର ଝିଅ, ଜନ୍ମ ରସଲକୁଣ୍ଡାରେ, ଆଉ ଯେଉଁଟି ଜନ୍ମ ହେବାର ଅଛି, ତାର ପରିକଳ୍ପନା ସୁଦୂର ଅରଣ୍ୟାନି ଭିତରେ ମାଙ୍ଗଡ଼ନଚା ସବ୍‌ଡ଼ିଭିଜନ୍‌ରେ - ସେ କଟକରେ ସୂର୍ଯ୍ୟ ଦେଖିବ ।

କିନ୍ତୁ କେଉଁଠି ? କାହିଁ ତା ପାଇଁ ଘର ।

''ଏ ସହର ବଡ଼ଲୋକଙ୍କର,'' ସଦାଶିବ ସ୍ତ୍ରୀକୁ କହିଲା, ''ଆମପାଇଁ ଏଠି ସ୍ଥାନ ନାହିଁ ।''

''ଚାଲ ତ-'' ସ୍ତ୍ରୀ କହିଲା ।

''ସମସ୍ୟାଟା କଣ ଜାଣ ?'' ଦୁଃଖିତ ହୋଇ ସଦାଶିବ କହିଲା,- ''ଯେଉଁ ଯୁଗରେ ଯେଉଁମାନେ ମରିଯିବା ଉଚିତ୍ ସେମାନେ ମରନ୍ତି ନାହିଁ ।'' ''ଏତେ ବେସ୍ତ ହେଲେ କଣ ହେବ କହିଲ ?'' ଦମୟନ୍ତୀ ବୁଝେଇଲା, ''ଘର ଖଣ୍ଡେ ମିଳିଯିବ ନାହିଁ ଯେ- ।''

''ମିଳିବ ନିଶ୍ଚୟ,'' ଦାନ୍ତ ଚିପି ଚିପି ସଦାଶିବ କହିଲା, ''କିନ୍ତୁ ଡ଼େରି ଅଛି ।''

ତାର ଜଳନ୍ତା ଦୃଷ୍ଟି ଆଉ ଫମ୍ପା ଦୀର୍ଘଶ୍ୱାସ ନିଷ୍ଫଳ ରାଗରେ ଆକ୍ରମଣ କଲା ରାସ୍ତା ଧୂଳିକୁ ।

ମଟର ପଛରେ ମଟର ଚାଲିଛି, ମଟର ଚାଲିଛି ।

୩

ଗନ୍ତବ୍ୟ ଲକ୍ଷ୍ୟ ବନ୍ଧୁ ରତ୍ନାକରର ଘର; ରତ୍ନାକର ଯୁଦ୍ଧୋତ୍ତର ବଜାରରେ ଲୁହା ବ୍ୟବସାୟ କରେ । ଅଣଓସାର ବାଟଘରକୁ ଛାଡ଼ି ଖୁବ୍ ସାନ ଗୋଟିଏ ଚାଳଘରକୁ ଖଟକୁ ଖଟ ଯୋଡ଼ି ତଳେ ଜିନିଷପତ୍ର ଗଦେଇ ରଖି ଶିକାରୁ ଓହଳେଇ ବାକି ଯେତିକି ସ୍ଥାନ ଫାଙ୍କା ରହିଲା, ସେତିକିରୁ ରତ୍ନାକର ତାର

ଓ ନିଜର ପିଲାମାନଙ୍କ ପାଇଁ ନିଶ୍ୱାସ ଗ୍ରହଣ କରେ । ପିଲା ତାର ବି ପାଞ୍ଚୋଟି ସ୍କୁଲଯାତ୍ରୀ, ସ୍ତ୍ରୀ, ସେ ଓ ଚାକର ବାକର । ତା'ଛଡ଼ା ଘରେ କୁକୁର ବିଲେଇ, ମୂଷା ଓ ଗାଈଗୋରୁ ।

ଏପରି ଅବସ୍ଥାରେ ରତ୍ନାକର ଯେ ଦୂରାଗତ ବନ୍ଧୁର ଅଭ୍ୟର୍ଥନାର ଭାର ନେବ ଏଥିରେ ଆଶ୍ଚର୍ଯ୍ୟ ହେବାର କଥା, କିନ୍ତୁ ଏ ସଂସାରରେ ଆଶ୍ଚର୍ଯ୍ୟ ଅପ୍ରତ୍ୟାଶିତ ସମ୍ଭବ ହୋଇଥାଏ, - ଅପ୍ରତ୍ୟାଶିତ ଉଦାରତା, ଅପ୍ରତ୍ୟାଶିତ ନିଷ୍ଠୁରତା ଓ ଆକସ୍ମିକ ଘଟଣା, ବିଶେଷତଃ ସଦାଶିବ ସେହିପରି ଯୁକ୍ତି କରେ, କହେ ଆକସ୍ମିକତାରେ ବିଶ୍ୱାସ ନ ରଖିଲେ ଜୀବନ ରଖିବାର ପ୍ରୟୋଜନ ନାହିଁ ।

କାରଣ ନିଜର ଅବସ୍ଥା ଓ ରୋଜଗାରକୁ ଚାହିଁ ଯେଉଁ ପ୍ରକାର ସେ ଅଙ୍କ କଷେ, ସେ ଦେଖେ ଅଙ୍କର ଫଳ କେବଳ ଅନାହାର, ଋଣ, ଇନ୍‌ସଲଭେନ୍‌ସି, ତାପରେ ଅନ୍ଧକାର, ଯଦି ଆକସ୍ମିକ କିଛି ନ ଘଟିବ । ସେ ସଂସ୍କାରରେ ଗ୍ରୀକ୍ ଟ୍ରେଜେଡ଼ିରେ ଆସ୍ଥାବାନ୍ ।

ତେଣୁ ରତ୍ନାକର ଚିଠିରେ ଔଷଧ ଭିଡ଼ିଥିଲା, "ରହ ମାସେ ପକ୍ଷେ, ମୋର ଆପତ୍ତି ନାହିଁ ।"

ତାର ଗେଂଜିଗାଂଜି ବସାକୁ ଲାଗି ପଦାରେ ଖଣ୍ଡିଏ ଚାଳିଆ ଥିଲା, ଯାହା ଠିକ୍ ସଦାଶିବକୁ ହିଁ ଅପେକ୍ଷା କଲାପରି ରହିଥିଲା ।

ଝାଟିମାଟିର କାନ୍ଥ, ଉପରେ ଚାଳ, ଝରକା ନାହିଁ, ମେଲା ମେଲା ବାଉଁଶ ଜାଲିର ଦୁଆର କବାଟ, ଭିତରେ ଲୁହାର ଯନ୍ତ୍ରପାତି କିଛି, କିଛି କାଠ ଢ଼ାବଲ ଓ ଅନ୍ୟାନ୍ୟ ଅଦରକାରୀ ଜିନିଷ, ପିଲାଙ୍କ ବହି ଆଲମାରି ତିନୋଟି, ଯୋଡ଼ିଏ ଟେବ୍‌ଲ୍, ପାଞ୍ଚଟି ଚୌକି ।

ତଥାପି ତିନୋଟି ଖଟ ପଡ଼ି କିଛି ଖାଲିଯାଗା, ଦୁଇ କରରେ କିଛି ଖାଲିକୁଇଁ ।

"ଏଇ ଘର !" ସଦାଶିବ କହିଲା ।

ରତ୍ନାକର ଆଗେଇ ଆସିଲା । ପଛେ ପଛେ ତାର ସ୍ତ୍ରୀ ।

ଦୁଇପକ୍ଷର ପିଲା ଦୁଇ ପକ୍ଷକୁ ଅନାଇଁ ରହିଲେ ।

## ୪

ଅନ୍ଧାର, ପ୍ରବଳ ବର୍ଷା ।

ଖଟ ଉପରେ ବିଛଣା ବିଛେଇ ସମସ୍ତେ ଶୋଇଛନ୍ତି ।

ହଠାତ୍ ସଦାଶିବର ନିଦ ଭାଙ୍ଗିଗଲା । କାହିଁକି ସେ ଜାଣେ ନାହିଁ । ପଦାକୁ ଚାହିଁଲା । ଲାଗିଲା, ଏମିତି ଜୀବନ, ପଦାରେ ଅନ୍ଧାର ଓ ମେଘ, ଶୀତରେ ପାଣିରେ ମରିବାରହିଁ କଥା, ତଥାପି ଲୋକ ମରେ ନାହିଁ- କୌଣସି ପ୍ରକାରେ ଆକସ୍ମିକ ଆଶ୍ରୟତଳେ ମୁଣ୍ଡଗୁଞ୍ଜି ପଡ଼ିରହେ ।

ଭାଗ୍ୟପ୍ରତି କୃତଜ୍ଞତା ଜଣାଇଲା, ପୁଣି ରତ୍ନାକର ପ୍ରତି । ଚିନ୍ତାରେ ମନ ଦେଲା- ଯା ପରେ କଣ ? ଯା ପରେ କଣ ?

ହାତ ଉପରେ ଗୋଟିଏ ମୂଷା ଦଉଡ଼ି ପଳେଇବାର ଅନୁଭବ କଲା, ଚମକି ଉଠିଲା । ଏ ଘରେ ମୂଷାମାନଙ୍କର ଅବାଧ ଗତି ସେ ଜାଣେ, ଆଲୁଅ ଥାଇ ବି ସେମାନେ ଖେଳ କସରତ୍ କରନ୍ତି, ଆତଜାତ ହୁଅନ୍ତି । ଅନ୍ଧାରରେ ନିଘାକଲା ଘର ଭିତରେ ନାନାଜାତି ଶବ୍ଦ ଲାଗିରହିଛି । ତା

ପରେ ଆରମ୍ଭ ହେଲା ଗୋଟାଏ ଖଡ୍ ଖଡ୍ ଖଡ୍ ଖଡ୍, ଠିକ୍ ତାର ଶୋଇବା ଖଟତଳେ, ତା ସଙ୍ଗେ ସଙ୍ଗେ ଗୋଟାଏ ଜଣ ଗନ୍ଧ ।

ମୁଣ୍ଡତଳୁ ଟର୍ଚ୍ଚଲାଇଟ କାଢ଼ି ଜାଳି ଦେଖିଲା, ଖଟତଳେ ଗୋଟାଏ ବୁଢ଼ା କୁକୁର, ନାକ ଅଗଠୁ ଲାଂଙ୍ଗ ଅଗ ଯାକେ କେଉଁଠି ଗୋଟିଏ ବୋଲି ରୁମ ନାହିଁ, ସବୁ ଉପୁଡ଼ି ଯାଇଛି ।

ଯାର ବି ଏ ଘରେ ଦଖଲ ଅଛି ।

କିନ୍ତୁ -

ମଣିଷପଣ ବିସ୍ତାର କରି ଆତିଥେୟତାର ପ୍ରତିଦାନ ଦେବାକୁ ଯାଇ ସଦାଶିବ କୁକୁରକୁ ମାରି ଗୋଡ଼ାଇଲା । କୁକୁର ବି ଦୃଢ଼-ପ୍ରତିଜ୍ଞ ସେ ଅନ୍ଧାରକୁ ବର୍ଷାକୁ ଯିବନାହିଁ । ଏକର ସେକର ଗୋଡ଼େଇ ଯାଉ ଯାଉ ଅନେକ ପ୍ରତିବନ୍ଧକ, ଖଟ, ଆଲମାରି, ଚୌକି, ଜିନିଷପତ୍ର । ଲାଗିଗଲା ''ମତେ ଛୁଁ'' ଖେଳ, ଏପାଖୁ ସେପାଖ ସେପାଖୁ ଏପାଖ । କୁକୁର ପ୍ରଚୁର ଆଗ୍ରହରେ ଯୋଗଦେଲା ।

ଅଧଘଣ୍ଟାଏ ଏକର ସେକର ହୋଇ ସଦାଶିବ ବିଛଣାରେ ମୁହଁ ମାଡ଼ିଲା । କୁକୁର ବି ଆଉ କୁଣ୍ଡେଇ ହେଲା ନାହିଁ, କେବଳ ମଝିରେ ମଝିରେ ଫଁ ଫଁ ସଁ ସଁ ଦୀର୍ଘଶ୍ୱାସ, ଆଉ ତା ଦେହର ଗନ୍ଧ ଯେଉଁଥିପାଇଁ ସେ ଦାୟୀ ନୁହେଁ ଆଦୌ ।

ଜୀବନର ସାଲିସ ଗ୍ରହଣ କରି ନେଇ ସଦାଶିବ ବର୍ଷାର ଧ୍ୱନିକି କାନ ଡେରିଦେଇ କେତେବେଳେ ଶୋଇ ପଡ଼ିଲା ।

ଆରଦିନ ସକାଳ । ଅଳ୍ପ ଖରା ପଡ଼ିଛି ।

ଲାଗିଲା ଯେପରି କି ଦୁନିଆଁ ତାକୁ କୁମ୍ଭକର୍ଣ୍ଣ ବୋଲି ଠଉରେଇଛି ଓ ତାର ନିଦ ଭାଙ୍ଗିବାକୁ ଚାରିଆଡୁ ପଡୁଛି କାନଫଟା ପାହାର ।

ସହରର ଭାଷାରେ ପହିଲି ସକାଳର ପ୍ରଥମ ସମ୍ବୋଧନ ଶୁଣିଲା, ଲୁହାପିଟା ଲାଗିଛି ।

ମୁଣ୍ଡ ଟେକି ଅନେଇଲା, ପଲେ ମେଣ୍ଢା ଓ ଦି'ଟା ବଳଦ ତାର ଖାଲି ଦୁଆରମୁହଁ ବାଟେ ପଶି ଆସୁଛନ୍ତି । ଅପେକ୍ଷା କଲା ନାହିଁ ।

## ୪

ଘର ଖୋଜିବାକୁ ଅଣ୍ଟା ଭିଡ଼ିଛି ସଦାଶିବ, ପକେଟ୍‌ରେ ଡବାଏ ପାନ, କଠାଏ ବିଡ଼ି ଓ ଗୋଟିଏ ଦିଆସିଲି । ସାମ୍ନାରେ ଗୋଟାଏ ରବିବାର । ଏ ଦେଶ ବ୍ୟକ୍ତିଗତ ଉଦ୍ୟମର ଦେଶ, ତେଣୁ ଏଠି ଅବସ୍ଥା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଆବିଷ୍କାର କରିବାକୁ ସୁଯୋଗ ଦିଏ । ସଦାଶିବ ମନକୁ ମନ ଯୁକ୍ତି କଲା, ସାଇକ୍ଲ ଧରି ଗତି କଲା । ଅନିର୍ଦ୍ଦିଷ୍ଟ ଉଦ୍ୟମରେ । ରାଜଧାନୀକୁ  ସେ ମନେ ମନେ  ବାଣ୍ଟି ନେଲା ଚାରିଖଣ୍ଡ କରି । ଚାରିଦିନର ଯୋଜନା ।

ପାନ ଦୋକାନ, ଖଲିଫା, ପ୍ରତି ଗଳିରେ ସ୍ଥାନେ ସ୍ଥାନେ ଧୋବଧାଉଳିଆ କେହି ହାବୁଡ଼ିଲେ କେହି ଚିହ୍ନା ଲୋକ. ହୁଏତ ସମ୍ବାଦ ଦେବେ ଏହିମାନେ, ତାଛଡ଼ା ରାଜ କର୍ମଚାରୀ ବନ୍ଧୁମାନେ ।

ଅନେକ ତଥ୍ୟ ସଂଗ୍ରହ କଲା, ଅନେକ ନୂଆ ଘରର ସନ୍ଧାନ ମିଳିଲା ଓ ନୂଆ ମଣିଷଙ୍କ ପରିଚୟ । ଖବର ପାଇବା ମାତ୍ରେ ଖାତାରେ ଟିପିନେଇ ସେ ସାଙ୍ଗେ ସାଙ୍ଗେ ଧାଇଁଯାଏ ।

ଘର ନାହିଁ ।

''ହେଇ ତ ଖାଲି ଘର ।''

''ଜଣେ ବାବୁ କଥା କରି ଯାଇଛନ୍ତି ।''

''ସେଠି ଯେଉଁ ନୂଆ ଘରଟି ତୋଳା ହେଉଛି, ସରିଲେ ମିଳିବ ?''

''ଆଗତୁରା ଭଡ଼ା ଟଙ୍କାରେ ଇଟା କିଣା ହୋଇ ନିହଁ ପଡ଼ିଥିଲା ।''

ଘର ନାହିଁ ।

କିନ୍ତୁ ସହରର ଭୂଗୋଳ ବିଷୟରେ ଧାରଣା ହେଲା ପ୍ରଚୁର । କେଡ଼େ ସହର ! କେତେ ଗଳି ! କେତେ ବଡ଼ !

ସହର ବଡ଼ ହୋଇଛି । ସଦାଶିବ ଯେତେବେଳେ ତାର କର୍ତ୍ତବ୍ୟ କାର୍ଯ୍ୟରେ ବୁଲୁଥିଲା ଅରଣ୍ୟରୁ ଅରଣ୍ୟାନି, ସେତେବେଳେ ଏ ସହରର ଲୋକେ ଘର ତୋଳିଛନ୍ତି । ରାସ୍ତା ପକେଇଛନ୍ତି । ଯୁଦ୍ଧ ବଜାର, କଣ୍ଟ୍ରୋଲ କାଳ, ଲକ୍ଷ୍ମୀ ଏ ହାତରୁ ସେ ହାତ ହୋଇଛନ୍ତି ଅନ୍ଧାରେ ଅନ୍ଧାରେ । ସହରରେ ଅସଂଖ୍ୟ ବଡ଼ଲୋକ । ତା ପାଇଁ ଘର ନାହିଁ ।

ଯେଉଁ ଆଡୁ ଦେଖିଲେ ସହର ଦିଶୁଛି ଖୁବ୍ ବଡ଼ ବିସ୍ମୟ ପରି, ଚିହ୍ନା ସ୍ଥାନ ନାହିଁ, ତେଣୁ ସହରର ଚିହ୍ନୋଟି ହଜିଛି । ଯେଉଁଟା ଥିଲା ପୋଖରୀ; ହଂସ ଖେଳୁଥିଲେ, ସେଠି ଦିତାଲା କୋଠା । କେତେ ଥିଲା ଜଳାଭୂଇଁ, କରେ କରେ ନାଗଅଇରି ଦଣ, ସେଠି ବସ୍ତି । ଅଣ୍ଠାଏ ପାଣିରେ ବି ଅଦ୍ୟାପି କୋଠା ଠିଆ ହୋଇଛି, କାମ ଚାଲିଛି । ସବୁ ଯେପରିକି ସଦାଶିବକୁହିଁ ଉପହାସ କରି ତାଳିମାରି ଉଠୁଛି- ''ଆମେ ସବୁ ମାଡ଼ି ବସିଛୁଁ । ମଜୁରିଆର ଏଠି ସ୍ଥାନ ନାହିଁ, ଫେରି ଯା- ।''

ଏଇ ସହରରେ ଥିଲା ତାର ବସା ଘର ।

ବାଟରେ ଗଲେ ପୁରୁଣା ସ୍ମୃତି ଫେରିଆସେ ।

ହେଇ ତ ସେ ନିମ୍ବଗଛ । ବସାଘର ଧାଉଡ଼ିଏ ତାହାରି ତଳେ ଥିଲା । ଆଗମୁହଁ କିଛି ପରିବର୍ତ୍ତନ ହୋଇଛି । ହେଇ ସେ ଘର । ଦୁଆରମୁହଁରେ ପହଞ୍ଚିଲା । ହୋମିଓପ୍ୟାଥି ଡାକ୍ତରଖାନା ଖୋଲିଛି । ଭିତରୁ ସମ୍ଭାଷଣ, ''ଆପଣ କାହାକୁ ଖୋଜୁଛନ୍ତି, ଆଜ୍ଞା ?''

''ନା, ଏମିତି ।''

ଏ ଘର ତାର ନୁହେଁ, ତାର ଅତୀତର ।

ଆଉ ଗଳିରେ ଆହୁରି ଗୋଟିଏ ଘର, ସେଠି ସେ ଥିଲା ଚାରିବର୍ଷ । ଦୁଆର ମୁହଁରେ ଠିଆହେଲେ ଭିତରଟା ଯାକ ସବୁ ମନେ ପଡ଼େ । ଆଉ ପହିଲି ଯୌବନର ଦୃଶ୍ୟ କିଛି ।

ପଢ଼ାଘର, ସେପାଖେ ପଡ଼ିଶାଘର; ଜହ୍ନରାତି, ହାର୍ମୋନିୟମ୍ ସହିତ ଗୋଟିଏ ଝିଅର ଗଳା ।

ଦୁଆର ମୁହଁରେ ଠିଆହେଲା ।

ଭିତରୁ ଚହଳ ପଡ଼ିବ, ଦେହ ବଙ୍କେଇ ବଙ୍କେଇ ନାଟ କରି କରି ଦଉଡ଼ି ଆସିବ ତାହାର ପୋଷା କୁକୁର 'ଭାଲୁ' । ଭାଲୁ ପେଡ଼ା ଖାଏ ।

''କାହାକୁ ଖୋଜୁଛନ୍ତି ?'' ଅତି କର୍କଶ ଗଳାରେ ରୁଢ଼ ଭାବେ ଗର୍ଜି ଉଠିଲେ ଜଣେ ମୋଟା ସୋଟା ଭଦ୍ରଲୋକ । ସଦାଶିବ ଚମକି ପଡ଼ିଲା ।

''ସଦାଶିବ ବାବୁ ଏଠି ଥାଆନ୍ତି ?''

''ନା, ହେଇ ଆଗରେ ଦେଖନ୍ତୁ ।''

ମୁଣ୍ଡ ନୁଆଁଇ ଆଗକୁ ଚାଲିଲା । ଚେତା ପଶିଲା, କାହାକୁ ଖୋଜୁଛି ବୋଲି କହିଥିଲା ? ନିଜକୁ ତ ! ଆଗରେ ନାହିଁ ପଛରେ କେଉଁଠି । ପଛରୁ ମାଡ଼ି ଆସୁଛି ମଟରଗାଡ଼ି । କାନ୍ଥ କରକୁ ଲେପ୍‌ଟି ଯାଉ ଯାଉ ମଟର ଚକର ଆଘାତ ଖାଇ ରାସ୍ତାର ଗୋଳିପାଣି ପିଚକାରି ମାରିଦେଲା ତାହା ଉପରକୁ । ଇସ୍, ଦେହରୁ ଫାଳେ ଗଲା । ମଟରରେ ଗଲେ ଧୋବ ଲୁଗା ଧୋବ ପଞ୍ଜାବି ପିନ୍ଧା ଗୋଲ ଗାଲ୍ ଭଦ୍ରଲୋକ । ସେ କଣ ଜାଣିଥିବେ ? କେବେ ନୁହେଁ । ହୁଏତ ତାଙ୍କ ବେଉସା ଚିନ୍ତାରେ ମଗ୍ନ । ମଟରର ଦାସ, ମଟର ଭିତରେ ଥିବା ମନୁଷ୍ୟ । ମଟରରେ କ୍ଷତିଗ୍ରସ୍ତ ରାସ୍ତାର ପଦାତିକ । ଦୁହେଁ ଦୁହିଁଙ୍କୁ ଚିହ୍ନନ୍ତି ନାହିଁ । ମଟର ଚାଲେ ।

ରାସ୍ତାର ଅସନାପାଣି ଲୁଗାରେ ବାଜିବାରୁ ଭାବୁକପଣ ଉଭେଇଗଲା । ଏଇ ସହରରେ ଅନେକ ସ୍ଥାନରେ ଥିଲା ତାର ଘର । କେବଳ ଏ ସହରରେ କାହିଁକି, ଏ ଦୁନିଆଁରେ ଅନେକଠି ।

କେତେଠି ତାପାଇଁ ଜଳିଛି ଚୁଲି, କେତେଠି ବସି ସେ ଝାଳ ପୋଛିଛି, ବିଶ୍ରାମ କରିଛି, ବାହାର ପ୍ରକୃତିକି ଆବୋରି ନେଇ ନିଜର ଚିନ୍ତାକୁ ନିଜର ଜୀବନକୁ ରୂପ ଦେଇଛି ।

ତା ପରେ ତା ଯାଇଛି ।

ଥରେ ମାଟି ଛୁଇଁଲା ପରେ କେତେଥର କେତେଠୁଁ ସେ ନିଶ୍ଚିହ୍ନ ହୋଇଛି, ପୁଣି ନୂଆ ମାଟିରେ ପଲ୍ଲବି ଉଠିଛି, କେତେଥର ମରିଛି, ପୁଣି ବଞ୍ଚି ଉଠିଛି ।

ଶୋଚନା ନାହିଁ ।

ବୁଲି ବୁଲି ସଞ୍ଜରେ ଫେରିଲା ବେଳକୁ ମେଘ ଦଲ ଦଲ ଆକାଶ, ଗୋଟାଏ ଦିନ ଶେଷ ହୋଇଛି । ଘର ମିଳିନାହିଁ ।

## ୬

ଚାରିଦିନ ସହରଯାକ ଏମୁଣ୍ଡ ସେମୁଣ୍ଡ ପାନିଆଁରେ କୁଣ୍ଡେଇବା ଶେଷ କରିସାରି ସଦାଶିବ ତାର କାର୍ଯ୍ୟରେ ଯୋଗ ଦେଲା । ଯୋଗ ଦେଲା କେବଳ କାଗଜରେ, ବସିବାକୁ ସ୍ଥାନ ନାହିଁ । ମହୁଫେଣା ପରି କାର୍ଯ୍ୟାଳୟ, ମହୁମାଛି ପରି କର୍ମୀ । କେତେ ମାଛି ଉଡ଼ି ଆସନ୍ତି କେତେ ଯାଆନ୍ତି ଉଡ଼ି - ଏମିତି ଆବହମାନ କାଳରୁ । ତାଙ୍କରି ଭିତରେ କେଉଁ ମାଛି ଟିକିଏ ବଡ଼, ଟିକିଏ ମୋଟା, କିଏ ଟିକିଏ ସାନ, ଟିକିଏ ସରୁ । କିଏ ଘାଉଁ ଘାଉଁ ଟିକିଏ ବେଶୀ, କିଏ ଟିକିଏ କାମୁଡ଼ା, ଆଉ କେତେ-ସେମାନଙ୍କ ସମବେତ ସାନ ସ୍ୱର ଶୁଭେ କ୍ଷୀଣ କରୁଣ ଆଳାପ ପରି ।

ବହୁ ଆୟାସରେ ଯୋଗାଡ଼ କରି ପାରିଲା ସାତ ହାତର ଖଣ୍ଡେ ପିଣ୍ଡା, ବାବୁଆନିର ଭେକ ରଖିବାକୁ ଖଣ୍ଡେ ଟେବୁଲ୍, ଖଣ୍ଡେ ଚଉକି, ସାମ୍ନାରେ ଦିଖଣ୍ଡ ବେଞ୍ଚ୍ ।

ଚଉକିରେ ବସି ଟେବୁଲ୍‌ରେ ହାତ ରଖି ଅଣ୍ଟା ସଳଖେଇ ବଡ଼ ବଡ଼ ଆଖିକରି ସଦାଶିବ ସାମ୍ନାକୁ ଚାହିଁଲା । ସେ କର୍ମଚାରୀ । ଏଠି ତାର ଆଧିପତ୍ୟ ।

ଚାରିଆଡ଼କୁ ନିଘାକଲା । ଛେଳି ଲଣ୍ଡି ପଡ଼ିଛି । କିଛି ଗୋବରର ଚିହ୍ନ । ଛେଳି ଗନ୍ଧ ଯକ୍ଷ୍ମାର

ପ୍ରତିଷେଧକ କହନ୍ତି, ଗୋମୟ ଡ଼ିସିନ୍‌ଫେକ୍‌ଟାଣ୍ଟ । ଅନୁଭବ କଲା-ଏଠି ବି ସେ ଏକଛତ୍ର ନୁହେଁ ।

କିଛି ସମୟ ପରେ କୁତୁହଳୀ ହୋଇ ଆସି ପହଞ୍ଚିଲେ ଗୋଟିଏ ଛେଳି ଓ ତାର ତିନୋଟି ଛୁଆ । ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ମୁହାଁମୁହିଁ ।

୭

ସଦାଶିବ ଘର ପାଇଁ ଖଣ୍ଡିଏ ଆବେଦନ କରିଥିଲା ତାର କାର୍ଯ୍ୟାଳୟରେ । ଉପରିସ୍ଥ ଉତ୍ତର ଦେଇଥିଲେ, ''ସେ ଦାୟିତ୍ୱ ଆମର ନୁହେଁ ।'' ତାପରେ ପୁଣି ବ୍ୟକ୍ତିଗତ ଉଦ୍ୟମ । ପରାମର୍ଶ ମିଳିଥିଲା- ବ୍ୟକ୍ତିଗତ ଉଦ୍ୟମରେ କମ୍ପାନୀ ବସେ, କୋଠା ତୋଳା ହୁଏ, ଚାଲେ ଆମଦାନି ରପ୍ତାନି ବେପାର । ତେବେ ଅସମ୍ଭବ କଣ ? ନ ମିଳିଲେ ଉଦ୍ୟମର ଅଭାବ, ଅଳସପଣ, ନିହାତି ନ ହେଲେ ଭାଗ୍ୟର ଦୋଷ ।

ପଚାରିଲେ ପ୍ରତିଶ୍ରୁତି ମିଳେ, ବଡ଼ ସହରର ଭଦ୍ରଲୋକମାନେ ଯେପରି କି ସାହାଯ୍ୟ କରିବାକୁ ବ୍ୟାକୁଳ ସମସ୍ତେ । ପାଟିରେ ପାନ ଓ ହସ, ବ୍ୟବହାରରେ ଶିଷ୍ଟାଚାର, ''ଆଜ୍ଞା ମୁଁ ନିଘା ରଖିଲି । ଆପଣଙ୍କ ପାଇଁ ମିଳିବ ନାହିଁ ଖଣ୍ଡେ ଘର ?''

ଆରଦିନ ଦେଖାହେଲେ ପୁଣି ନୂଆ ହୋଇ ପ୍ରସ୍ତାବ ।

''କଣ ବୁଝିଲେ ଆଜ୍ଞା ?''

''କେଉଁ କଥା ?''

''ଘର ଖଣ୍ଡେ ବୁଝି ଦେଉଥିଲେ ପରା ?''

''ଓ, ସେ କଥା ! ବୁଝୁଛି ଆଜ୍ଞା । ପାଇଲେ କହିବି ଯେ-''ପ୍ରତିଶ୍ରୁତି ମିଳେ, ଘର ମିଳେ ନାହିଁ ।

ରତ୍ନାକର ସହିଯାଏ ।

ପ୍ରତ୍ୟହ ସଞ୍ଜବୁଡ଼େ, ଦମୟନ୍ତୀ ପଚାରେ, ''ଘର କଥା କଣ ହେଲା ?'' ନୂଆ ଶିଶୁ ପ୍ରକାଶ ପାଇଁ ଚହଳ ପକାଏ, ତାର ଘର ଦରକାର ଏହିପରି ଦିନେ, ଉଦ୍ଧାର କଲା ଦମୟନ୍ତୀ ।

ତାର ପ୍ରସୂତି କାର୍ଯ୍ୟ ପାଇଁ ଦରଖାସ୍ତ କରି ଡାକ୍ତରଖାନାରେ ମିଳିଗଲା ଖଣ୍ଡିଏ ବଖୁରିକିଆ ବସା । ସଦାଶିବ ସଦଳବଳେ ସେଠିକି ଉଠିଗଲା ।

ଶାର୍ଦ୍ଦୂଳ-ବିକ୍ରୀଡ଼ିତ ପରମ ଆନନ୍ଦରେ ବସା ସାମ୍ନାର ଘାସ ଅରାକରେ ନୃତ୍ୟ ଆରମ୍ଭ କରିଦେଲା, ''ଆମ ଘର, ଆମ ଘର ।'' ଅନୁଷ୍ଟୁପ୍, ମନ୍ଦାକ୍ରାନ୍ତା ଓ ଗାୟତ୍ରୀ ସେହି ଘରେ ଡେଇଁ ଲାଗିଲେ । ସୁନ୍ଦର ଘାସ, ସୁନ୍ଦର ନୁଆଁଣିଆଁ ଖରା ।

ପିଣ୍ଡାରୁ ଦମୟନ୍ତୀ ହସୁଛି ।

ସଦାଶିବ ମେଘକୁ ଅନାଇଛି, ଭାବୁଛି ଏଥର ଯେ ଜନ୍ମ ହେବ କଣ ହେବ ତା ନାଁ ?

ସେ ପାଖର ଖଞ୍ଜାର କବାଟ ଖୋଲିଲା, ବାହାରିଗଲା ଗୋଟାଏ ମୃତ୍ୟୁର ପଟୁଆର । ସଦାଶିବ ଚମକି ପଡ଼ି ପାଟିକଲା-''ହେ ପିଲେ, ଭିତରକୁ ଚାଲ, ଭିତରକୁ ଚାଲ ।''

# ବୁଡ଼ି

ପ୍ରକୃତରେ କଣ କେମିତି ଘଟିଥିଲା ତାର ମନେନାହିଁ, କହିଲେ କହିପାରନ୍ତେ ଅବା ମନ-ଡାକ୍ତରମାନେ । କିନ୍ତୁ ନିଜ ଅବସ୍ଥାକୁ ସେ ପରିଷ୍କାର ବୁଝିପାରିଲା, ଖଣ୍ଡେ ସାନ ଡଙ୍ଗା, ସେଥିରେ ପାଲ ନାହିଁ କି ଆହୂଲା ନାହିଁ, ଆଉ ମଣିଷ ନାହିଁ କି ମୂଷା ଛୁଆଟିଏ ବି ନାହିଁ । ସମୁଦ୍ର ଉପରେ ସେ ଭାସୁଛି ସେଥିରେ ସେ ଏକୁଟିଆ ।

ଦିନ ଝଲଝଲୋଉଛି, ଟାଇଁ ଟାଇଁ ଖରା, ଆକାଶ ଶାନ୍ତ ନେଳି, ସମୁଦ୍ର ନେଳି-ଶାଗୁଆ, ତେଲ ଜିକି ଜିକି, ପ୍ରକାଣ୍ଡ ପ୍ରକାଣ୍ଡ ଢେଉମାନେ ଗଡୁଛନ୍ତି, ଗଡ଼ି ଗଡ଼ି ଆସୁଛନ୍ତି, ଡଙ୍ଗାଟାକୁ ସତେକି ଖେଳରେ ଖେଳରେ ନଚୋଉଛନ୍ତି । ଯେମିତିକି ବିଲେଇ ମୂଷାକୁ, ଖେଳୋଉଛି,-ସେ ଜାଣେ । ସେ ବୁଝିପାରୁଛି ତା ଭବିଷ୍ୟତ, ସମୁଦ୍ରକୁ ଚାହିଁଲେ ଲାଗୁଛି ସମୁଦ୍ରର ଆଖିର ଚାହାଣି ଦେଖୁଛି, ସେ ଚାହାଣିରେ ଦୁଷ୍ଟାମି, କୌତୁକ, ହିଂସା ଆଉ ତାଚ୍ଛଲ୍ୟ । କେଉଁ ମୁହୂର୍ତ୍ତରେ ସେ ଝାମ୍ପ ମାରିବ ସେ ଜାଣେ ନାହିଁ, ଝାମ୍ପିନେବ ଯେ ଜଣେଇଁ ଜଣା । ଯନ୍ତା । ନା, ଯନ୍ତାଠୁଁ ବଳି, ବେକ ଉପରେ ହାଣ କୁର୍‌ହାଡ଼ି ଉହୁଙ୍କି ରହିଛି, ପଡ଼ିବହିଁ ପଡ଼ିବ । ଯେମିତି ପୁରୁଣା ଅମଳର ନରବଳି ପୂଜାରେ ସେ ହୋଇଥିଲା ମେରିଆ, ପୂଜାର ଆଡ଼ମ୍ବର ସରିଛି, ଯେତେବେଳେ ମେରିଆ ପ୍ରତି ନାନା ରଜ-ଉପଚାର, ସତେ ଯେମିତି ସେ କେଡ଼େ ଶରଧାର କୁଣିଆଁ, ତାକୁ ଖୁସି କରିବାକୁ ସମସ୍ତେ ବ୍ୟଗ୍ର, ଆଉ କେତେ ବାଜା, କେତେ ଧୂମ୍‌ଧାମ୍, କେତେ ଭେଟି, କେତେ ଫୁଲ ! କିନ୍ତୁ ସେ ବେଳ ଏ ନୁହେଁ, ଉତ୍ତରାକାଣ୍ଡ । ସମସ୍ତେ ଚୁପ୍, ବ୍ୟଗ୍ର, ସମସ୍ତିଙ୍କ ଆଖି ହିଂସାରେ ଜଳୁଛି, ସମସ୍ତିଙ୍କ ଛୁରୀ ଟେକି ହୋଇ ରହିଛି, ଉତ୍ତେଜନାରେ ଆସ୍ତେ ଆସ୍ତେ ଥରୁଚି, ଯେମିତି ଏ ଢେଉଗୁଡ଼ାକ । ତାପରେ ଆଗ ପଡ଼ିବ ପୂଜକ ଡିସାରିର ଚୋଟ ସେଇଠୁ ଏକାଥରକେ କାଉଳି-ବାଉଳି ହୋଇ ଆଉ ସମସ୍ତେ ଚୋଟ ହାଣିବେ । ଆସୁଛି ସେ ବେଳ ।

ସେହି ଫାଙ୍କରେ ବାରମ୍ବାର ସେ ଭାବେ, କେମିତି ଏ ହେଲା ? ଜଣା ନାହିଁ । ଉତ୍ତର ନିଶ୍ଚୟ ଅଛି ତାର ଚେତନା-ସ୍ନାୟୁମାନଙ୍କ କେନ୍ଦ୍ରରେ କେଉଁଠି ଲୁଚିଛପି, ତା ନିଜଠିଁ ତାକୁ ମିଳୁ ନାହିଁ । ବର୍ତ୍ତମାନର ଅନୁଭୂତି ଯେତିକି ଚାପି ଚାପି ଦେଉଛି ସେତିକି ସେତିକି ଲାଗୁଛି । ଏମିତିଆ ସତେ ଯେମିତି ସେ ଜନ୍ମ ହୋଇଛି, ବଢ଼ିଛି, ସମୁଦ୍ରରେ ''ଏଇ ନିଛାଟିଆ ଡଙ୍ଗାରେ, ଆଉ କେହି ନାହିଁ ।''

କିନ୍ତୁ ସ୍ୱପ୍ନ ଦେଖି ଭୁଲି ପୁଣି ସ୍ମରଣ କଲାଭଳି ଛାଇଛାଇଆ ହୋଇ ମନେପଡୁଛି, ଗୋଟାଏ ବଡ଼ ଜାହାଜ, କେତେ ଲୋକ, କେତେ ସ୍ନେହୀ, କେତେ ସାଙ୍ଗସାଥୀ । ତା ଆଗରୁ, କେତେ ମୁହଁ, କେତେ କେତେ, କେତେ ମୁହଁ ଅତି ଆପଣାର ଲାଗୁଛି, ପୁଣି ଭୁଲି ହୋଇଯାଉଛି । କିଛି ପରିଚୟ,

କିଛି ସମ୍ପର୍କ ମନେ ପଡୁନାହିଁ ।

ଚେତନା ଭିତରେ କେଉଁଠି କି ବିସ୍ଫୋରଣ ଘଟି ସବୁ ପାଶୋରି ଯାଇଛି । ଯେମିତି ସେଇଟା ଅତୀତର କେଉଁ ପୂର୍ବଜନ୍ମ, ଏ ଜନ୍ମକୁ ତା ସ୍ମୃତି ମନେପଡ଼େ ନାହିଁ । ସନ୍ଦେହ ଆସେ, ସତେ କଣ ପୂର୍ବଜନ୍ମ ବୋଲି କିଛି ଗୋଟାଏ ଥିଲା ? ନାଃ, ସବୁ ପ୍ରକୃତିରୁ ଜାତ ପରା, ଅଳ୍ପକ୍ଷଣ ତଳେ ଏଇ ସମୁଦ୍ରରୁ, ଏଇ ଡଙ୍ଗା, ଆଉ ମୁଁ, ଏକୁଟିଆ ମଣିଷ, ଯାହାଙ୍କୁ ପୁଣି ଏ ସମୁଦ୍ର ଖାଇବ ।

ବଡ଼ ପାଟି କରି କାନ୍ଦିବାକୁ ମନ ହେଲା । ମୁହୂର୍ତ୍ତେ ପ୍ରବଳ ଇଚ୍ଛା, ପୁଣି ଚାରିଆଡ଼କୁ ଚାହିଁଲା, ସମୁଦ୍ର ଆଉ ସମୁଦ୍ର, ଉହୁଙ୍କି ଆସୁଥିବା ଢେଉ, ଶୂନ୍ୟ ଆକାଶ । କାନ୍ଦଣାକୁ ଶୁଣିବାକୁ ପ୍ରଶ୍ରୟ ଦେବାକୁ କେହି ନାହିଁ, କାନ୍ଦି ହେଲା ନାହିଁ । ମୁହଁ ଖାଲି ବିକୃତ ହୋଇ ରହିଲା । କେମିତି ଦିଶିଲା ଦେଖିବାକୁ ବି ଦର୍ପଣ ନାହିଁ ।

ସେହି ଭୟଙ୍କର ଲହଡ଼ିମାନଙ୍କୁ ଚାହୁଁ ଚାହୁଁ ମନେ ମନେ ଡାକୁଥାଏ ଜପୁଥାଏ ଭଗବାନଙ୍କୁ । ଲାଗିଲା ବହୁତବେଳୁ ଡାକୁଛି, ଅତର୍କ୍କା ଭୟ ଭିତରେ, ଡଙ୍ଗା ଯେତେବେଳେ ଲହଡ଼ିପାଖେ ପହଞ୍ଚେ, ଲାଗେ ଓଲଟିବ, ପୁଣି ଉପରକୁ ଚଢ଼େ, ପୁଣି ତଳକୁ ଖସେ, ଛାତି ଭିତର ବାରମ୍ବାର ଶୁଖୁଥାଏ, ଲାଗୁଥାଏ ସେଠି କଣ ମରୁଛି ପୁଣି ସୁକୁ ସୁକୁ ହୋଇ ବଞ୍ଚୁଛି, ସେ ଭଗବାନଙ୍କୁ ଡାକୁଥାଏ ଓ ଭାବୁଥାଏ ଯେ ବେଳସୁଁ ଡାକୁଛି । ତାପରେ ହଠାତ ଲାଗିଲା, ସେ ଶୁଣିଛନ୍ତି, ସେ ପାଖେ ପାଖେ ଅଛନ୍ତି, ତା ଭିତରେ ଅଛନ୍ତି । ମନେ ମନେ ସତେକି ସେ ତାଙ୍କ ସଙ୍ଗେ କଥାଭାଷା ହେଉଛି- ଶୁଣୁଛି- ''ଆପତ୍ତି କାହିଁକି ? ସେଥିରେ ଫଳ ବା କଣ ? ମୁଁ ତ ଏପରି କରିଛି, ମୁଁ ନେଇଯାଉଛି, ପାଖେ ପାଖେ ଥିବି ମୁଁ, ଶେଷଯାକେ, ହେଇତ ଆଗରେ, ଆଉ ଟିକିଏ ତ, କିଏ ଚିରସ୍ଥାୟୀ ମୋ ଛଡ଼ା ?''

ଆଉ ସେ ଛଟପଟ ହେଲା ନାହିଁ, ଭାବିଲା ନାହିଁ, ଅଭିଭୂତ ହେଲାପରି ଆଗକୁ ଅନାଇଁ ରହିଲା । ସତେ ଅବା ଆଖିରେ ପଲକ ନାହିଁ । ଢେଉମାନେ ଉତ୍ତାଳ ହେଲେଣି । ଲାଗୁଛି ଯା ପଛେ ତହୁଁ ବଳି ତହୁଁ ବଳି, ଆସୁଛନ୍ତି, ଅଜାଡ଼ି ହେଉଛନ୍ତି, ସଳଖ ହୋଇ କାଠ ହୋଇ ବସିଛି ମଣିଷଟି, ଡଙ୍ଗାକୁ ଯାବୁଡ଼ି ଧରିଛି ।

ଗୋଟାଏ ଢେଉ ପାହାଡ଼ ତଳେ ଡଙ୍ଗାଟା ବୁଡ଼ିଗଲାବେଳେ ସେମିତି ସେ ବସିଥାଏ ।

# ଗୋପାଳ ଡାକୁଛି

ଜଗବନ୍ଧୁ ଯେତେବେଳେ ସୁଲକ୍ଷଣାଙ୍କୁ ଟାଣ କରି କହିଲେ, ''ମୁଁ କାଲି କଟକ ଯିବି'' ''ସେତେବେଳେ ସୁଲକ୍ଷଣା ସ୍ୱାମୀଙ୍କ ମୁହଁକୁ ଅନାଇଁ ଚୁପ୍ ହୋଇ ଠିଆ ହେଲେ । ସକାଳ; ହାତରେ ଓଦା ଲୁଗା, ଶୁଖାଇବାକୁ ପଡ଼ିବ । ଜଗବନ୍ଧୁ କହିଲେ, ''ମୋର କିଛି ଦରକାର ନାହିଁ । ସକାଳୁ ସକାଳୁ ପଖାଳ ଶାଗ ତ ନିଶ୍ଚୟ ମିଳିବ । ଲୁଗାପଟା ପାଇଁ କିଛି ଧନ୍ଦିହେବା ଦରକାର ନାହିଁ । ଯାହା ଅଛି ଚଳିବ । ସବୁଠି ତ ଘର, ଚିନ୍ତା କ'ଣ ?'' ସେ ହସିଦେଲେ ।

ତାଙ୍କ କଥାର ସ୍ୱର, ସେ ହସର ବାଗ ସୁଲକ୍ଷଣାଙ୍କୁ କେମିତି କେମିତି ଲାଗିଲା । ମଝିରେ ମଝିରେ ଏମିତି ସେ ଅନେକ ଥର କହନ୍ତି, ଯାଆନ୍ତି ନାହିଁ । କିନ୍ତୁ ଆଜି ସତେ ଯେମିତି ଭୀଷ୍ମ ପ୍ରତିଜ୍ଞା ।

''ଏତେଦିନ ଗଲା, ଗଲ ନାହିଁ, ଆଉ ଅଇଛା ଯେତେବେଳେ ଭୋଦୁଅ ଧାରା ଗଳୁଛି, ବର୍ଷା, ପବନ, ସେତିକି ବେଳକୁ ବୁଲି ଯିବାକୁ ମନ ହେଲା ?''

ଜଗବନ୍ଧୁ ସ୍ତ୍ରୀଙ୍କୁ କଟାସ ପରି ଅନାଇଁ ରହିଲେ, କହିଲେ, ''ତୁମେ ମନା କରିବ ମୁଁ ଜାଣିଛି । ତୁମେ ଖାଲି କହିବ ଏଇଠି ମୋ ମୁହଁକୁ ଅନାଇଁ ବସିଥା, ଆଉ କୁଆଡ଼େ ଯା' ନାହିଁ, କାହାରି ସଙ୍ଗେ କୌଣସି ସମ୍ବନ୍ଧ ନଥାଉ । ମୋର ପାଞ୍ଚ ପାଞ୍ଚଟା ଭାଇ, ତିନି ତିନିଟା ଭଉଣୀ, ଝିଆରୀ, ପୁତୁରା, ବନ୍ଧୁ ବାନ୍ଧବ, ମୁଁ ଆଉ କୁଆଡ଼େ ଯିବି ନାହିଁ, ଏଇଠି ଥିବି !''

ସୁଲକ୍ଷଣା କହିଲେ, ''ତାଲିକାରୁ ପୁଅ ଝିଅଙ୍କୁ ଛାଡ଼ି ଯାଉଛ ଯେ । ସେମାନେ କି ଅପରାଧ କଲେ ? କେଉଁକାଳୁ କାହାକୁ ଦେଖୁଛ ? ବାଲେଶ୍ୱରରୁ ସୁଦାସ ଲେଖି ଲେଖି ଥକିଲା, ବାପାଙ୍କୁ କହିବ ଟିକିଏ ଆସିବେ, ନୀଲିଟା ବିଛଣାରୁ ଉଠୁନାହିଁ, ଯେତେ ଔଷଧ ମଷୁଧି କଲେ ବାତ ଛାଡ଼ିଲା ନାହିଁ । ଚୁଂଗୁଡ଼ି ବାଛୁରି ଗୁଡ଼ିଏ, କେମିତି ଚଳୁଥିବ ମୋ ଝିଅ କେଜାଣି ।''

ସୁଲକ୍ଷଣାଙ୍କର ଅଭିମାନରେ ଆଖିରୁ ଧାରା ବୋହିଲା, କହିଲେ, ''ମୁଁ ଯେତେଥର ଯିବାକୁ ବସିଲି କୁଆଡୁ କ'ଣ ଅଡୁଆ ବାହାର କଲ । ସେମିତି ରାଉରକେଲାରେ ନାଣ୍ଟୁ, କେଉଁଦିନୁ ଆସିନାହିଁ ମୋ ପୁଅ, ଦି ମାସ ହେବ ନାହିଁ ଚିଠି ପତ୍ର କିଛି ନ ମିଳିବାର ? ବୋହୂଟା ଅସଜ ମଣିଷ । ସେଠି ଚାକର ବାକର ବି ମିଳନ୍ତି ନାହିଁ । କୋଉଠି ଯାଇ ହେଲା ? କୋରାପୁଟ ବାଲିମେଳାକୁ ଶଶୀ ବଦଳି ହେବାର ଆସି ଦେଢ଼ବର୍ଷ ହୋଇଗଲା । ସେଠି ମୋ ପିଲା ବାଘ ଭାଲୁଙ୍କ ପରି କେମିତି ଚଳୁଛନ୍ତି ତା ତ ଆଖିରେ ଦେଖିଲି ନାହିଁ । ଗୋବିନ୍ଦଟି ତ ପ୍ରାଣ ଯାଉଚି କି ଆସୁଛି, ଶଶୀ ବଣ ଜଙ୍ଗଲଯାକ କାମରେ ବୁଲୁଥିବ, ବୋହୂତ ଯାହା ଛାଡ଼, ଶୋଇ ପଡ଼ିଥିଲେ ମୂଷା ଚୁଟି କାଟିନେଲେ ଜାଣିପାରିବେ ନାହିଁ, ମୁଁ ସେଠି ଥିଲେ ତା ପିଲାଙ୍କ ଖବର ବୁଝନ୍ତି ନାହିଁ ? କୋଉଠି ଛାଡ଼ି ଦେଲ ? ଯୁଆଡ଼େ ଯିବାକୁ

ଗୋଡ଼ ଟେକିଲେ ତୁମେ ବାଧା ଦେବ ।''

ଜଗବନ୍ଧୁ ଅଣ୍ଟାରେ ହାତ ଦେଇ ଅଣ୍ଟାକୁ ଉପରକୁ ଓଟାରି ହେଲେ, କହିଲେ, ''କାହିଁକି ବାଧାଦିଏଁ ତୁମେ କଣ ଜାଣି ନାହଁ ମତେ ଉଲୁଗୁଣା ଦେଉଛ ? ଏକେତ ତୁମ ପେଟ ଅସୂତ୍ର । ଟିକିଏ ବେଟାଇମ କି ଅନିୟମ ହେଲେ ପୁଣି ପଡ଼ିଯିବ, ସେଇଠୁ ମୁଣ୍ଡ ବୁଲେଇବ ଛାତି ଥରିବ ହାତ ଗୋଡ଼ ଦରଜ ହେବ- ।''

''ହଃ, ଥାଉ ଥାଉ ସେ ସୁଆଗ କଥା,'' ସୁଲକ୍ଷଣା ଆଖି ପୋଛିଲେ ଓ କହିଲେ, ''ଯିବାର ଥିଲେତ କେଉଁ କାଳରୁ ମୁଁ ଯମ ପୁରକୁ ଯାଆନ୍ତିଣି ଆଉ ଯେ ଷାଠିଏ ବର୍ଷ ଯାକେ ମୁଁ ଏମିତି ବସିଥାନ୍ତି ?''

''ଆରେ ତୁମକୁ ଷାଠିଏ ହେଲେ ମତେ ପଁଷଠି ଯେ, ପେନସନ ପାଇକରି ଦଶବର୍ଷ ପୂରିବା ଉପରେ । ସେ ବୟସ କଥା କିଏ ପଚାରେ ? ଦେଖୁଚ ପରା ଅଶୀ ନବେ ବର୍ଷ ପୂରି ଯାଉଛି ବୋଲି କେତେ ନାଁ ଡାକ, ଲୋକଙ୍କର ଜନ୍ମଦିନ ବର୍ଷିକିଆ ସବୁ ହେଉଛି, ଖବରକାଗଜରେ ବାହାରୁଛି, ତଥାପି ସେମାନେ ବଜ୍ର ପରି ବସି ରହୁଛନ୍ତି, କେତେ କେତେ କାମ କରୁଛନ୍ତି । ଆଉ ଷାଠିଏଟା କେଡ଼େ ବର୍ଷ ? ବିଲାତ ଦେଶ ହୋଇଥିଲେ ଏଇ ଷାଠିଏ ବର୍ଷରେ ପରା ତୁମକୁ ବରଘର ଲାଗିଥା'ନ୍ତା ।''

''ଗୋଟିଏ ଠିକଣା କରିଦିଅ, ମୋ ତୁଣ୍ଡତ କ'ଣ !''

''କରିଦେବା, ମୁଁ ଏଥର କଟକରୁ ଆସେଁ ।''

''କ'ଣ ଏମିତି ବାଇ ଲାଗିଲା ପରି ଖାଲି କଟକ କଟକ ହେଉଛ ? ଭଲା କହନ୍ତ ରାଉରକେଲା କି ବାଲେଶ୍ୱର କି ବାଲିମେଲା ବୁଝନ୍ତି ଯେ ପିଲାଙ୍କୁ ଦେଖିବାକୁ ମନ ହାଇଁପାଇଁ ହେଲାଣି ।''

ଜଗବନ୍ଧୁ ପ୍ରତିବାଦ କରି କହିଲେ; ''ତୁମେତ ଜାଣିଛ ସେ ହାଇଁ ପାଇଁ ଫାଇଁ ପାଇଁ ମୋର ନାହିଁ । ଯାହା କର୍ମ ଘେନି ଯେ ଚଳିବ, ମୋ କର୍ତ୍ତବ୍ୟ ମୁଁ  କରିସାରିଛି । ବତିଶି ବର୍ଷ ଚାକିରୀ କଲି, ବୁଝି ପାରୁଚ ? ବତିଶି ବର୍ଷ-''

''ହଃ ! ସେ କଥା କହୁଚ ! ବତିଶି ବର୍ଷ ଚାକିରୀ କରି ସବୁତ ଖାଲି କରି ପକାଇଲ । ଜମି, କୋଠା, ଗାଡ଼ି, ଘୋଡ଼ା ସବୁ । ଖାଲି ମୋରି ଜୀବନଟା ହନ୍ତସନ୍ତ, ଯାହା କହନ୍ତି ବାଘ ଘୋଷରା । ଦରଭଙ୍ଗାରୁ ହଜାରିବାଗ, ହଜାରିବାଗରୁ ଜଇପୁର, ଜଇପୁରରୁ ସୁନ୍ଦରଗଡ଼, ସୁନ୍ଦରଗଡ଼ରୁ ବଉଦ, ବଉଦରୁ ରାଇରଙ୍ଗପୁର; କୁଆଡ଼େ ନାଇଁ କୁଆଡ଼େ । ବାପା ମଲେ, ବୋଉ ମଲା, ବୋଉ ମୋର କେତେ ନିକୁଟି ନେହୁରି ହେଇ ବାରମ୍ବାର ଖବର ପଠାଇଲା ମୋ ଝିଅ ଜୋଇଁକି ଟିକିଏ ଦେଖନ୍ତି, ତା ଆଉ ହେଲା ନାହିଁ, ବିଦେଶରେ ବିଦେଶରେ ତିନିପୁଅ ତିନିଝିଅ ମଲେ, ଚାକିରୀ ଖାଲି ନିହାଲ କରି ପକାଇଲା ।''

''ତମର ଆଜି କ'ଣ ହେଇଚି କହିଲ ? କଥା କଥାକେ କାନ୍ଦ ? ଆରେ ଜୀବନଟା କଣ ନାକେରା କଟିଲା ? ଏ ଗଛରେ ସେ ଗଛରେ ବସାବାନ୍ଧି ଡିମ୍ବ ଉଷୁମେଇଁ ଫୁଟେଇ ଚଢ଼େଇ କରି ଉଡ଼େଇ ଦେଲେଇଁ, ତିନିଟା ମଣିଷ ହେଲେ, ଯେ ଗଲେ ସେ ଗଲେ ଡିମ୍ବ ବେଳୁ କି କଣ୍ଟା ଆଖି ବେଳୁ, ପରମାର୍ଥ ଧରିଲ ପୁଣି ଗଲା ରହିଲାକୁ ଛଳ କରି ମନ ବ୍ୟସ୍ତ କରୁଛ ?''

ସୁଲକ୍ଷଣା କାନ୍ଦିଲେ । କହିଲେ, ''ଅନ୍ତଫାଡ଼ି ଯେ ଜନ୍ମ ଦେଇଥାଏ ସେ ସିନା ଜାଣିବ, ତୁମେ କାହୁଁ ଜାଣିବ ମା' ମନ କଣ ହୁଏ ? ଗୋଟିଏ ଯଦି ଜନ୍ମ କରିଥାନ୍ତ-''

''ହଉ ଥାଉ । ଶୁଣ । କାଲି ମୁଁ ଯାଉଛି ।''

''ବର୍ଷାଟା ସରିଯାଉ । ଦେହ ବାଧିକାରେ ପଡିଗଲେ କିଏ ପିଠିରେ ପଡ଼ିବ ?''

''ବର୍ଷା ପଛେଇ ଯାଇଛି । ପଛକୁ ଆହୁରି ବଢ଼ିବ ।''

''ତେବେ ବର୍ଷା ଋତୁଟା କଟିଯାଉ । ବାଟ ଘାଟ ସଫା ହେଉ । ଦିହେଁ ଯିବା । ପୁଅ, ଝିଅଙ୍କୁ-''

ଜଗବନ୍ଧୁ କହିଲେ, ''ତୁମ ତୁଣ୍ଡରୁ ସେହି କଥା ଶୁଣିଲେ ତ ମୋର ହାଡ଼ ଜଳୁଛି ।''

ସୁଲକ୍ଷଣା ତାଙ୍କ ମୁହଁକୁ ଟାଟକା ହୋଇ ଚାହିଁଲେ । କଳି କଜିଆ ଅଳ୍ପଦିନ ହେଲା ସରିଛି, କାଳେ ପୁଣି ଆରମ୍ଭ ହେବ । ଜଗବନ୍ଧୁ କହିଲେ, ''ତମର ଖାଲି ଆପଣା ସାର୍ଥକା କଥା । ଖାଲି ଆପଣା ପୁଅ ଝିଅ । ଆପଣା ଘର ଗେରସ୍ତ । ଆପଣା ସୁଖ ସୁବିଧା । ଜୀବନରେ ତା ବାହାରକୁ କେବେ ଚାହିଁଛ ? ମୋ ଭାଇ ଭଉଣୀମାନେ ମନେ ପଡ଼ନ୍ତି ନାହିଁ ? ଅଇଛା ସିନା ଯେଝା ସୁଖେ ଦୁଃଖେ ଯେ ଯୁଆଡ଼େ, ଦିନଥିଲା, ଯେତେବେଳେ ଏଇ ହାତରେ ପରା ତୁମେ ତାଙ୍କୁ ମଣିଷ କରିଥିଲ ?''

ସୁଲକ୍ଷଣା ପୁଣି କାନ୍ଦିଲେ । କହିଲେ, ''ଗଲାକଥା ଗଲାଣି, ମୁଁ କାହାର କଣ ଉପକାର କରିଛି ? ଯଦି କେତେବେଳେ କରିଥିଲି, ସେ ସ୍ନେହର କିଏ କି ମର୍ଯ୍ୟାଦା ରଖିଲେ ଯେ ମୁଁ କାହାରିକୁ ପଚାରିଲି ନାହିଁ । ଦୋଷୀ ହେଲି ମୁଁ ?''

''କଣ ତୁମକୁ ଅମର୍ଯ୍ୟାଦା କଲେ ?''

ଲୁହ ପୋଛୁ ପୋଛୁ ସୁଲକ୍ଷଣା କହିଲେ, ''ନାହିଁ, ମତେ କାହିଁକି କିଏ ଅମର୍ଯ୍ୟାଦା କରନ୍ତା ? ଯେଝା ଯେଝା ପଖି ଲାଗିଲା ସେ ଉଡ଼ିଗଲେ । ଆଉ ମୁଁ କାହାର କି କାମରେ ଆସିବି ? ଅଇଛା ମୋଠିଁ ତାଙ୍କର କି କାମ ? ମୁଁ ତ କାହାକୁ ନିନ୍ଦେ ନାହିଁ ।''

''ଆଛା ଆଣ୍ଠୁଆ ଧରିଛ । ସମସ୍ତେ ନିଜ ନିଜ କାମ ଦୁଃଖ ଧନ୍ଦାରେ ବୁଲୁଛନ୍ତି ନା କିଏ ବସିଛି ତମ ପାଖକୁ ନ ଆସିଲା ? କାହାର କି ଅସୁବିଧା ସେ କଥା କିଏ ବୁଝୁଛି ?''

''ହେଲା, ତୁମେ ତ ସର୍ବଜ୍ଞ ପୁରୁଷ ସବୁ ଜାଣୁଛ, ଅଇଛା ବାହାରିଛ କାହିଁକି ?''

''ଯିବାକୁ ଭାରି ମନ ହେଉଛି ହୋ । ସୁଇଁ ସେଇ ଲୋକ, ଏତେ ଆଡ଼ ବୁଲୁଥିଲି । ଭଲା ଏ ମଫସଲରେ ମୁଁ ବସି ପଡ଼ିଲି ଯେ ବସି ପଡ଼ିଲି । ସତେ ଯେମିତି ମଣିଷ ନୁହେଁ ଯେ ଗୋଟାଏ ଆମ୍ବଗଛ ହେଇଗଲି ।''

''ସେଇଠୁ ? ବୁଲି ଆସିଲେ ଆଉ କି ଗଛ ହେବ ? ନଡ଼ିଆ ଗଛ ?''

''ଓଃ ! ତମେ ତ ବୁଝିବ ନାହିଁ ।''

''କାହିଁକି ବୁଝିବି ନାହିଁ ? ସବୁ ବୁଝିଛି । ତମର ବୁଲିବାକୁ ମନ ହେଉଛି । ବୁଲ । ସୁଖକର । ଖାଲି ମୋତେ ଟିକିଏ ମୋ ଝିଅ ପାଖେ ଛାଡ଼ିଦେଇ ଆସ, ସେଇଠୁ ଦି ପୁଅଙ୍କ ପାଖକୁ ଯିବି । ମୋ ମନ ଏଠି ମୋଟେ ଭଲ ଲାଗୁନାହିଁ । ତମର ତମେ ବୁଲୁଥା ।''

"ହେଉ । ପଛେ ମୋ ଦୋଷ ଦେବ ନାହିଁ । ଯେ ଘର, ବାରି, ଗାଈ, ଗୋରୁ କାହା ମାର୍ଫତ୍ ଦେବ ତୁମେ ଭାବ । ଘରେ ଯାହାକୁ ରଖିଛ ତୁମ ଇଷ୍ଟ ଦେବ ଗୋପାଳ ସେ ପାଣି ଟିକିଏ ନ ପାଇ ନିପାଣିଆ ହୋଇଗଲେ ମୋର ଦୋଷ ନାହିଁ । ବୁଝିଲ ? ଏ ପର୍ଯ୍ୟନ୍ତ ଯାହା ଯେମିତି ଚାଲିଛି ସବୁ ତାହାରି ଦୟାରୁ, ଡାକିଲେ ସେ ଓ' କରେ । ତମେ ନ ଅନେଇଲେ ଭାବିଛ ପଦିଆ ନନା ଆସି ତା କଥା ବୁଝିବ ? ମାସକୁ ଟଙ୍କାଏ ଆଶାରେ ? ସେ ଆଶା ବୃଥା ।"

"ସବୁ ତ ବୁଝୁଛ ପୁଣି ତୁମ ଗୋଡ଼ ଖଲଖଲ ହେଉଛି କାହିଁକି ?"

"ତୁମକୁ ବୁଝାଇବା ସମ୍ଭବ ନୁହେଁ । ବସି ଯାଇଛି ସିନା, ମୋର ପରା ବତିଶି ବର୍ଷର ବୁଲା ।"

"ସେ ବୁଲାରେ କଣ ପେଟ ପୂରିଲା ? ନା ଯେ ବୁଲାରେ କ'ଣ ହେବ ? ନା କେହି ତୁମକୁ ଅପେକ୍ଷା କରି ବସିଛି, ନଗଲେ କାନ୍ଦିବ ?"

"ତୁମେ ଜୀବନଯାକ ଯେତେ ଯେତେ ପିଠା କରି ଲୋକଙ୍କୁ ଖୋଇଛ ସୁଆଦିଆ ତରକାରି ସବୁ ରାନ୍ଧିଛ, ସେଥିରେ କ'ଣ ହେଲା ନ ହେଲା ତାର ଡାଇରି ରଖିଛ ? ମୋର ବି ସେମିତି । ଥିଲି ପଶୁ ଡ଼ାକ୍ତର । ରାଜ୍ୟ ସାରା ବୁଲି ବୁଲି ପଶୁ ମାନଙ୍କ ସେବା କରିଛି । ଯେତେ ପଶୁ କି କୁକୁଡ଼ା ଚିକିତ୍ସା ପାଇଥିଲେ, ଯେତେ ମଡ଼କ ରୋଗ ଭଲ ହେଲା, ଯେତେ ଭଲ ଜାତିଆ ଗୋରୁ ଗାଈ କି ଛେଳି ମେଣ୍ଢା କି କୁକୁଡ଼ା ନୂଆ କରି ଯେଉଁ ଇଲାକାରେ ପୂରା ହେଲେ ବଢ଼ା ହେଲେ ସେ ସବୁ ସେ କାଳର ଦିନ ଦିନକର ଇତିହାସ, ଆଉ କାହାରି ମନେ ନଥିବ । ଯାହା କଲେ କଲେ, ସେ ଗଲା, ଭୁଲି ହୋଇଗଲା । ଆଉ ପଛ କଥା ଭାବି ଲାଭ କଣ ? କୋଳି ଖାଇ କିଏ ମଞ୍ଜି ପୋତିଛି ?"

କଥାବାର୍ତ୍ତା ସେତିକିରେ ବନ୍ଦ ହେଲା । ଜଗବନ୍ଧୁ ଗଲେ ନିତିଦିନର କାମ କରି । ଗାଁ ଛେଦରେ ଅଲଗା ହୋଇ ତାଙ୍କର ଘର । ପେନସନ୍ ନେବାର ଛଅବର୍ଷ ଆଗରୁ ସେ ନିଜ ରୁଚିରେ ଏ ସ୍ଥାନଟି ବାଛିଥିଲେ, ମାଟି ନେସା ଇଟା କାନ୍ଥ ଓ ଟାଇଲ ଛାତ କରି ଚାରି ବଖରା ଘର ତୋଳିଥିଲେ, କୂଅ ଖୋଳାଇ ଥିଲେ, ଟୁବି ଗାଡ଼ିଆକୁ ଫରଚା କରି ଖୋଳାଇ ସାନ ପୋଖରୀଟିଏ କରିଥିଲେ, ତୋଟା ଲଗାଇଥିଲେ । ଜମି ଛ ମାଣ କିଣିଥିଲେ । ସେ ଥିଲା ଗୋଟିଏ ବିଶ୍ରାମ ଜୀବନର ଯୋଜନା । ପୈତୃକ ଘର ଗାଁର ଆର ମୁଣ୍ଡରେ, ଭାଇ ଭାଇକେ ଚେନାଏ ଚେନାଏ । ବଂଶର ଲୋକେ ସେଠି ପାରା ଖୋପ କରି ସାନା ସାନ ବଖୁରୀରେ ଥାଆନ୍ତି । କେତେବେଳେ ସୀମା ସରହଦ ଘେନି ସେମାନଙ୍କ ଭିତରେ କଳି ଲାଗେ, ଖୁପୁରା ଖୁପୁରୀ ଲାଗେ । ଜଗବନ୍ଧୁ ଓ ତାଙ୍କ ଆଉ ପାଞ୍ଚ ଭାଇଙ୍କର ଭାଇତିରି ସାନ ଅଂଶରୁ ପ୍ରାୟ ବାରଣା ସେହି ବଂଶ ଭାଇମାନଙ୍କ ଦଖଲରେ, ଆଉ ଚାରଣା ଭାଗ ଗୋଟିଏ କରକୁ ଅରମା ହୋଇ ପଡ଼ିଥାଏ, ସାହି ଯାକର ଅଳିଆ ଆବର୍ଜନା ପଡ଼ି ପଡ଼ି ସେ ଢ଼ିପ ହେଉଥାଏ । ସେଠି ଖାଲି ଗୋଟିଏ ଝଙ୍କା ସଜନା ଗଛ, ବହୁତ ଛୁଇଁ ଓହଳେ ବଢ଼େ, ପୁଣି କୁଆଢ଼େ କୁଆଢ଼େ ଅଦୃଶ୍ୟ ହୋଇଯାଏ ।

ପୁରୁଣା ଚଳଣିରେ ପରିବର୍ତ୍ତନ ଆରମ୍ଭ ହୋଇଥିଲା ଯେତେବେଳେ ଜଗବନ୍ଧୁଙ୍କ ବାପା ନରୋତ୍ତମ କିଛି ଇଂରେଜି ପାଠ ପଢ଼ି ଟ୍ରେନିଂ ନେଇ ମୟୂରଭଞ୍ଜରେ ମାଇନର ସ୍କୁଲରେ ଶିକ୍ଷକ ହେଲେ । ପଛେ ପିଲା ପିଲି ଗଲେ । ସାବକ ଘର ଖାଲି ପଡ଼ି ରହିଲା, ଭାଙ୍ଗିଲା । ଚାକିରୀର ଶେଷ

ମୁଣ୍ଡ ଆଡ଼କୁ ପୁଣି ଥରେ ଘର ତୋଳି ରହିବାର ଉଦ୍ୟମ ହେଲା, ସେତେବେଳେ ଯୋଡ଼ିଏ ଝିଅଙ୍କୁ ଆଣି ଗାଁରେ ରହି ପାତ୍ର ଖୋଜି ବିଭା ଦେବା ଦରକାର ପଡ଼ିଲା । କିନ୍ତୁ ସେ ଘର ବି ଆଗ ଘରଠୁ ବହୁ ପରିମାଣରେ ଅଳ୍ପ ଜାଗା ଦଖଲ କଲା, ପଡ଼ିଶା ଭାଇଡିଆରିମାନେ ବାକି ଅଂଶ ମାଡ଼ି ବସିଥିଲେ ଶିକ୍ଷକ ନରୋତ୍ତମ ଠେଙ୍ଗାବାଡ଼ି ନଚେଇବା କାର୍ଯ୍ୟରେ ଅଭ୍ୟସ୍ତ ନଥିଲେ ।

ତାପରେ ପୁଣି ସେ ପିଲାପିଲି ନେଇ ଚାଲିଗଲେ । ଜଗବନ୍ଧୁ ଚାକିରି କରିଥିଲେ, ଆଉ ତିନିଭାଇ ବୃତ୍ତିରେ ଲାଗ ଲାଗ ହୋଇ ଆସୁଥିଲେ, ଦିଜଣ ପଢୁଥିଲେ, ଗୋଟିଏ ଝିଅ ଅବିବାହିତା । ହଠାତ୍ ଦିନେ ସ୍କୁଲରେ ପଢ଼େଇ ଘରକୁ ଆସି ନରୋତ୍ତମ ବାଁ ପାଖ ଛାତିକୁ ଚାପି ଧରି ବିଛଣାରେ ଗଡ଼ିପଡ଼ିଲେ । ସେତେବେଳକୁ ସେ ହୋଇଥିଲେ ହେଡ଼ ମାଷ୍ଟର ।

ନରୋତ୍ତମଙ୍କ ମୃତ୍ୟୁପରେ ଜଗବନ୍ଧୁ ସେ ପରିବାରର ଭାର ତୁଲାଇଲେ । ତା ପରେ ବିବାହ, ମା'ର ମୃତ୍ୟୁ କ୍ରିୟା, ଭାଇମାନଙ୍କ ପାଠପଢ଼ା, ସାନ ଭଉଣୀର ବିବାହ ସବୁ ହେଲା ବିଦେଶରେ ବିଦେଶରେ । କ୍ରମେ ଭାଇମାନେ ଆପଣା ଆପଣା ଚାକିରି ଗାଁରେ ଆପଣା ରୋଜଗାରରେ ଚଳିଲେ, ଯାହାର ଯେଉଁଠି ଇଚ୍ଛା ହେଲା ସେଠି ସେ ଘର କଲେ । କାହାରି ଆଉ କାହା ଉପରେ ନିର୍ଭର ନାହିଁ, ତେଣୁ ସମ୍ବନ୍ଧ ବି ଶିଥିଳ ହେଲା । ଖାଲି ରହିଗଲା ଏକା ମା ପେଟର ବୋଲି ମମତା ଟିକିଏ, ଆଉ ନୂଆ ଯେଉଁମାନେ ଜନ୍ମ ହେଲେ ବଡ଼ ତାଙ୍କ ପକ୍ଷରେ ତା ଖାଲି ଗୋଟିଏ ଐତିହାସିକ ସ୍ମୃତି ।

ଜଗବନ୍ଧୁ ତଳେ ହରିବନ୍ଧୁ ହାଇସ୍କୁଲରେ ଶିକ୍ଷକ, ଦୀନବନ୍ଧୁ ଡାକ୍ତର, ଶ୍ୟାମବନ୍ଧୁ ଇଂଜିନିୟର, ପ୍ରାଣବନ୍ଧୁ ପୁଲିସ ଇନିସପେକ୍ଟର, ବ୍ରଜବନ୍ଧୁ କୋ-ଅପରେଟିଭ ଆସିଷ୍ଟାଣ୍ଟ ଡିରେକ୍ଟର । ହରିବନ୍ଧୁ ଦୀନବନ୍ଧୁ ଅନୁଗୁଳରେ ଟୋଟା ବାରି ଘର କରି ରହିଲେ । ଶ୍ୟାମବନ୍ଧୁ ବଡ଼ ବଗିଚା ବହୁତ ଚାଷ ଜମି ସମେତ ସୁନ୍ଦରଗଡ଼ରେ ଘର କଲେ, ପ୍ରାଣବନ୍ଧୁଙ୍କର କଟକ ତୁଳସୀପୁରରେ ମହାନଦୀ ଉପରେ କୋଠା, ବ୍ରଜବନ୍ଧୁଙ୍କର କଟକ ଖପୁରିଆରେ କୋଠା, ତା ଛଡ଼ା ଏମାନଙ୍କର ଆଉ ଯେଉଁଠି ସେଠି ଘର । ସେମାନଙ୍କ ପିଲାମାନେ ବି ବିଭିନ୍ନ ବୃତ୍ତିରେ ରହି ଯାଇଥିଲେ । କିଏ ଡାକ୍ତର, କିଏ ଇଂଜିନିୟର, କିଏ ଅଧ୍ୟାପକ, କିଏ ଡ଼ିପୋଟି, କିଏ ସେକ୍ରେଟେରିଏଟରେ ହେଡ଼ ଆସିଷ୍ଟାଣ୍ଟ, କିଏ କିଏ ପଢୁଥିଲେ ।

ନିଆଳି ମାଧବ ପାଖରେ ଗଣ୍ଡ ମଫସଲରେ ପୈତୃକ ଗାଁରେ ଘର କରି ରହିଥିଲେ ଏକା ଜଗବନ୍ଧୁ । ତାଙ୍କ ବଡ଼ ପୁଅ ନାଣ୍ଟୁ ରାଉରକେଲାରେ ଏକାଉଣ୍ଟେଣ୍ଟ, ତା ତଳେ ଝିଅ ନୀଳି, ତା ସ୍ୱାମୀ ସୁଦାସ ବାଲେଶ୍ୱରରେ ଚାଉଳକଳ ମ୍ୟାନେଜର, ସବା ସାନ ଶଶୀ ବାଲିମେଳାରେ ଆସିଷ୍ଟାଣ୍ଟ ଇଂଜିନିୟର । ପୁଅ ଦିହେଁ ବିଭା ହେଲେଣି, ଛୁଆ ପିଲା ଘେନି ସଂସାରର ଜଂଜାଳରେ ବାନ୍ଧି ହେଲେଣି । ଜଗବନ୍ଧୁ ଟାଣ କରି ମନା କରି ଦେଇଥିଲେ ପୁଅମାନେ ଘରକୁ ଟଙ୍କା ପଠାଇବେ ନାହିଁ । 'ନିଜ ଗୋଡ଼ରେ ଜୀବନ ଯାକ ଠିଆ ହୋଇଛି ଶେଷ ଯାକେ ସେହିଆ ହେବ,' ଏହିପରି ତାଙ୍କର ପଣ । ତଥାପି ପିଲାଏ କୌଣସି ପତିଆରାରେ ହେଲେ ଲୁଗାପଟା କି ଅନ୍ୟାନ୍ୟ ଉପାୟରେ କିଛି କିଛି ଦେଇ ଯାଉଥିଲେ । କାଳକ୍ରମେ ବାଉଁଶ ବଢୁ ବଢୁ ଯହୁଁ ପୋଲବି ବଢ଼ି ଚାଲିଲା ତା ବନ୍ଦ ହୋଇଗଲା । କାମ ଛାଡ଼ି ଗାଁକୁ ଆସିବାକୁ ଛୁଟି ନାହିଁ, ଆଜି ଭାରିଜା ଦେହ ବେମାର କାଲି କେଉଁ ପିଲାର ଦେହ ବେମାର ନହେଲେ ଆଉ କେଉଁ ଜରୁରି ସରକାରୀ କାମ । ମାସ ପରେ ମାସ ଯାଏ, ବର୍ଷକେ ଥରେ କିଏ ଆସି ପାରିଲେ ବହୁତ । କିନ୍ତୁ ସେମାନେ ଜିଗର ଧରି ଚିଠି ଲେଖନ୍ତି 'ବାପା ଆସନ୍ତୁ, ବୋଉ ଆସୁ,

ଗାଁରେ ପଡ଼ି କଣ ବା ଲାଭ ? ଦେହ ମୁଣ୍ଡ ହେଲେ କିଏ ଦେଖିବ ?' ମା' ମନ ଉଚ୍ଛନ୍ନ ହୁଏ । ଜଗବନ୍ଧୁ ଅନାନ୍ତି ତାଙ୍କ ଇଷ୍ଟଦେବ ଆଣ୍ଠୁଆ ଗୋପାଳ ବିଗ୍ରହଙ୍କୁ, ଶାଗୁଆ ମୁଗୁନି ଶିଳାରେ ଚାଖଣ୍ଡେ ଉଚ୍ଚ ମୂର୍ତ୍ତି, ଆଣ୍ଠେଇ ପଡ଼ି ହସୁଛନ୍ତି, ନରୋତ୍ତମ ମୟୁରଭଞ୍ଜ ଖିଞ୍ଚିଂରୁ କରାଇ ଆଣି ପ୍ରତିଷ୍ଠା କରାଇଥିଲେ । ସୁଲକ୍ଷଣା ବ୍ୟାକୁଳ ହେଲେ ଜଗବନ୍ଧୁ ବୁଝାନ୍ତି ।

''ପିଲାଏ ମଣିଷ ହେଲେ, ତାଙ୍କ କଥା ସେ ବୁଝିବେ, କିନ୍ତୁ ଗୋପାଳ ତ ଯେମିତି ସେମିତି । ଯେ ବିଶ୍ୱବ୍ରହ୍ମାଣ୍ଡର କର୍ତ୍ତା ସେ ଏଠି ଶିଶୁ ନାରାୟଣ । ତାଙ୍କୁ ଅବହେଳା ହେଲେ ଯେ ପ୍ରାଣ ସହିବ କେମିତି ?''

ସେଇଠି ଜଗବନ୍ଧୁଙ୍କର ଦିନ କଟି ଯାଉଥିଲା । କଣ ନୂଆ କିଛି ଘଟିବ, ନୂଆ କିଛି ଶୁଣିବେ ବୋଲି ଆକାଙ୍‌କ୍ଷା ନଥିଲା । ଚିଠି ଆସିବ ବୋଲି ଛନ ଛନ ହୁଅନ୍ତି ନାହିଁ । ଦୈନିକ ଖବରକାଗଜ ପଢ଼ନ୍ତି ନାହିଁ । ଯଦି କେବେ ଠୁଙ୍ଗାରେ ପୁଡ଼ିଆରେ ପୁରୁଣା ଖବରକାଗଜ ହାବୁଡ଼େ ଚଷମା ଲଗାଇ କୌତୁକ ଓ କୁତୂହଳରେ ତା ଉପରେ ଆଖି ବୁଲାନ୍ତି । ସବୁଦିନେ ସେହି ସେହି ସମୟରେ ସେହି ସେହି କାମ, ପାନ ଛେଚିବା କି ଅରାଏ ଘାସ ଓପାଡ଼ିବା କି ଗୋପବନ୍ଧୁଙ୍କ ଖବର ବୁଝିବା କି ଗାଧୋଇବା କି ଖାଇବା କି ଭୁଲିଯାଇ କାହା ପିଣ୍ଡାରେ ତୁନି ହୋଇ ବସି କଣ ସୁଖ ଦୁଖର ସ୍ମୃତି ଭାବି ହେବା । ସବୁ ଅଭ୍ୟାସ ।

ହଠାତ୍ କିଛି ଦିନ ତଳେ କୁଆଡୁ କେଉଁ ଭାବର ହାବୁକାଏ ଆସି ତାଙ୍କ ମନରେ ବାଜିଥିଲା । ଦ୍ୱିପ୍ରହର । ପିଣ୍ଡାରେ ବସି ପଦାକୁ ଅନାଇଁଥିଲେ । ଧଳା କଳା ପାଉଁଶିଆ କହରା ହୋଇ ଭିଣିଭିଣା ମେଘ । ତା' ଉହାଡ଼ରେ କାହିଁ କେଉଁ ଦୂରରେ ଚିକ୍କଣ ନେଳି ଟୋପାଏ ଟୋପାଏ ଚାରିଆଡୁ ମେଘ ଯେତେ ଚାପି ଚାପି ଆସେ, ବୁଜି ବୁଜି ଆସେ, ତା ଉହାଡ଼ରେ ଦୂରରେ ଦିଶୁଥାଇ ସେହି ନେଳି । ତାଙ୍କ ଛାତି ଭିତରେ କଣ ମନ୍ଥା ଚକଟା ଲାଗିଗଲା । ମନ ଲମ୍ବିଗଲା କେଉଁ ଅକଳନ ଅଛିଣ୍ଡା ଅତୀତକୁ । ଆଖି ଆଗରେ ମେଘ ଝୁରୁଝୁରୁ ବରଷି ଗଲା । ସତେ ଯେମିତି କାହାର କାନ୍ଦଣା । ଜଗବନ୍ଧୁଙ୍କ ମୁହଁ ଶୁଖିଯାଇଥାଏ । ପଲକ ପଡ଼ୁଥାଏ କି ନାହିଁ । ନିଶ୍ୱାସ ବହୁଥାଏ କି ନାହିଁ । ଅନ୍ତର ସତେ କି ସ୍ତବ୍ଧ ।

ନିଘା ଲେଉଟିଲା । ପଡ଼ିଲା ଗଛ ବୁରୁଛ ଉପରେ । ଛନ ଛନିଆ ଶାଗୁଆ ଦିଶୁଛି ।

ତାପରେ ସେ ଦେଖିଲେ, ଗହଳି ଅମରିବାଡ଼ରେ ପ୍ରତି ପତ୍ରରେ ଜାଲି ଫୁଟିଲାଣି । ଟେକା ଟେକା ବହଳ ବ୍ରଜମଲ୍ଲୀ ପତ୍ରକୁ ଢ଼େଇଁଲାଣି । ଉପରକୁ ମୁହଁ ଟେକି ଜଗବନ୍ଧୁ ଭାବିଲେ, ଏ ମେଘ ପୂର୍ଣ୍ଣତାର ପ୍ରେତ, ପୋକରା, ଜାଳିଜାଳି ସେତେ ଆପଣା ବୟସ ମନେପଡ଼ିଥିଲା ଆଉ ତା ସଙ୍ଗେ ସଙ୍ଗେ ଅତୀତ ।

ଗୋଟାଏ ଉଦ୍ଧତ ଗୁଣ୍ଡା ପଣ୍ଡା ଚେହେରା କଳା ମିଶ ମିଶ ହାଫ ପ୍ୟାଣ୍ଟ ହାଫ ସାର୍ଟ ପିନ୍ଧି ସାଇକଲ ଚଢ଼ି ସହରର ରାସ୍ତାରେ ଚାଲି ଗଲାବେଳେ ଦୋକାନର ଆରସିରେ କି କାଚ ଆଲମାରିରେ ସେ ଚେହେରାର ଛାଇ ଦେଖିବାକୁ ବେଳଠୁଁ ମୁହଁ ତେରେଛା ହୋଇଯାଏ । ମନେ ପଡ଼ିଗଲା, ସେତେବେଳେ ବାଟ ଚାଲିଲେ ଜଙ୍ଘକୁ ଜଙ୍ଘ ଘଷି ହେଉଥିଲା, ସେ ଦେହରେ ଜୁଆର ଆସିଥିଲା, ଚାଲି ଯାଇଛି ।

ଏ ଦେହଟା ଭିନେ । ଆପଣା ଆଗରେ ଆପେ ଦେଖାଇ ହେଲା ପରି ଯେତେ କୋଡ଼ି

ହାଣିଲେ, କୁରାହଡ଼ି ଚଳେଇଲେ ଗୋରୁ ମୋହିଁଲେ କି ଘରକାମ କଲେ, ଖାଲି ବାରମ୍ବାର ହାରିବା ଘୋଳି ହେବାର ଦୟନୀୟ କାହାଣୀ ।

ତହିଁର କିଛିଦିନ ପରେ । ଖାଲିଟାରେ ଦୂରକୁ ଚାହିଁ ଏକୁଟିଆ ବସିଥିଲା ବେଳେ ଜଗବନ୍ଧୁ ସତେ ଯେମିତି ସିନେମା ଦେଖୁଥିଲେ । ସେ ଦୃଶ୍ୟ ଜୀଅନ୍ତାମାନଙ୍କର ନୁହେଁ । ସହପାଠୀ ଗଙ୍ଗାରାମ ଓଝା, ସୌମ୍ୟ ମୂର୍ତ୍ତି, ଶାନ୍ତ ଆଖି, ମିଠା କଥା । ଓଭରସିଅର ରାବଣାୟ, ମୋଟାମୋଟା ଧଳାନିଶ, ଅଜାଡ଼ି ହୋଇ ପଡ଼ିଲା ପରି ବଡ଼ ମୁହଁ, ମୋଟା ପାପୁଲି ଯୋଡ଼ିକରେ ଥର ଥର ଆଙ୍ଗୁଠି ଆଗକୁ ପଛକୁ ହୋଇ ଯେମିତି ସୂତା ବୁଣୁଥାଏ, ଘଡ଼ଘଡ଼ି ପରି ମଝିରେ ମଝିରେ କଥା, ଭୁଲ ବ୍ୟାକରଣରେ ଗୁନ୍ଥା ହୋଇ ତେଲୁଗୁ ଓଡ଼ିଆ ମିଶାମିଶି, ଶୁଣିବାକୁ କୌତୁହଳ ଲାଗେ । ଷଣ୍ଢ ଖଲାସି ଚମରୁ ନାଏକ, ସରୁ ସରୁ ଲହ ଲହ ହୋଇ ତାର ବିନୀତ ବଡ଼ ହାକିମ ନିହାଲ ସିଂ ଅତିକାୟ ହରିଆନା ଷଣ୍ଢର ବେକ ତଳ କମ୍ବଳକୁ ଆଉଁସୁଥିଲା ବେଳେ ମାନେ ଭଲ, ଦୁହେଁ ଭାଇ ଭାଇ । ବୁଢ଼ୀ ପିଉସୀ ଶୁକ ଅପା ବଙ୍କା ହୋଇ ବାଡ଼ି ଠୁକୁ ଠୁକୁ କରି ଏକର ସେକର ହେଉଥାନ୍ତି, ଡାକ ଛାଡ଼ିଥାନ୍ତି- ଜଗୁଆରେ, ମୋ ଜଗୁଆ କାହିଁ ଗଲା ? ବାପା, ବୋଉ ବଡ଼ ବାପା ଦାଦି ଖୁଡ଼ୀ, ଆପଣା ଗଞ୍ଜାର ଲୋକ, ଗାଁର, ବିଭିନ୍ନ ସ୍ଥାନର ସହକର୍ମୀ । କାହାର କେଉଁ ଗୁଣ । କେଉଁ କେଉଁ ହାବଭାବ । କାହା ସହିତ କେଉଁ ସମ୍ପର୍କର ଅନୁଭୂତି ସମଷ୍ଟିଙ୍କୁ ଏକାଠି କରି ଦେଖି ହେଉଥାଏ, ପୁଣି ଗୋଟି ଗୋଟି କରି ।

ତା ଉତ୍ତାରୁ ଅନେକ ସମୟରେ ମନ ବଳୁଛି ସବୁ ମଲା ଲୋକଙ୍କୁ ଜୀଅନ୍ତା ଅବସ୍ଥାରେ ଏକାଠି କରି ଆଖି ଆଗରେ ଥୋଇ ଦେଖିବାକୁ । ସେମାନେ ସଭାକଲା ପରି ବସି ପଡ଼ନ୍ତି, ଗାଁରେ କି ସାହିରେ ଏକାଠି ହୁଅନ୍ତି । ଜଗବନ୍ଧୁ ଶୂନ୍ୟକୁ ଅନାଇଁ ସେମାନଙ୍କୁ ଦେଖୁଥାନ୍ତି । କେତେବେଳେ ମନେ ପଡ଼େ ।

'ସେମାନେ ମରିଛନ୍ତି । ମୁଁ ଅଛି ।' ମନ ଭୁଲାଇବାକୁ ଉଠି ପଡ଼ନ୍ତି । ଅସହାୟ ଲାଗେ ।

ଦିନ କେତେ ହେଲାଣି ମନେ ପଡ଼ୁଛି ଗୋଟାଏ ହଜି ଯାଇଥିବା ଜୀବନ ଭିତରେ ସ୍ନେହ ସହାନୁଭୂତିର କେତେ ସରୁ ସରୁ ଶୁଖିଲା ଧାର । ଯେମିତି ଏ ବରଷାରେ ବାଲିପଟା ଉପରେ କେତେ ମଲାଧାର କଅଁଳି ଉଠୁଛି, କୁଳୁକୁଳୁ ହୋଇ ଅଛିଣ୍ଡା ସୁଅ । ସେଥିରେ କାହୁଁ କାହୁଁ ମୀନପଲ ପହଁରୁଛନ୍ତି । ଦୁଇ କରରେ ଶିଉଳି, ଶାଗୁଆ ଘାସ, ଡଗ ଡଗ ବଗ । ଛୁଇଁବାକୁ ହାତ ବଢ଼ାଇଲେ ସେ ଧାର ଦୂରେଇ ଯାଉଛି ।

ଏମିତି ଥରେ ବସି ଭାବୁଥିଲା ବେଳେ ଗୋଟିଏ ଧାରଣା ଆସିଲା । କେଉଁଠି ଜନ୍ମ ହୋଇ ଜୀବନ ଗୋଟାକ କେଉଁଠି କେଉଁଠି କଟିଗଲା ! କେଉଁ ସ୍ଥାନରେ କେତେ ବର୍ଷ ତଳେ କାହାଠୁ ସେ କି ସ୍ନେହ କି ଉପକାର ପାଇଥିଲେ । କିଏ ତାଙ୍କୁ କଣ ଦେଇଛି, କଣ ଖୋଇଛି, କେମିତି ଭଲ ପାଇଛି; ଆପଣାର କରିଛି, ରୋଗଶୋକ ଦୁର୍ଦ୍ଦିନରେ କେତେ ସାହାଯ୍ୟ କରିଛି । ସେତେବେଳେ ସେହି ଅତୀତରେ ସେ ପ୍ରତିଜ୍ଞା କରୁଥିଲେ ।

''ଜୀବନ ଯାକ ଲାଗି ପାଗି ଏ ଉପକାରରେ ଏ ସ୍ନେହର ମୁଁ ପ୍ରତିଦାନ ଦେଉଥିବି । ଧାରୁଆ ହେବି ନାହିଁ ।''

ପୁଣି ସେ ଚେଇଁ ଉଠିଲେ । ପଛକୁ ଚାହିଁଲା ବେଳକୁ ଯେ ଯୁଆଡ଼େ ଗଲେଣି । କାହାର

ନାଁ ମନେ ପଡୁନାହିଁ ଚେହେରା ମନେ ପଡୁଛି ଅସ୍ପଷ୍ଟ ହୋଇ ।

''ଖେଳ ତ ସରି ଆସିଲା !'' ମନଭିତରେ ତୁହାଇ ତୁହାଇ ଝଙ୍କାର ଉଠିଲା ।

ତାପରେ ରବିବାର ସଞ୍ଜବୁଡ଼େ । ଗୋରୁ ବାନ୍ଧିସାରି ଟିକିଏ ବେଳ ଅପେକ୍ଷା । ଆଗରେ ନଳ୍ପଟଣ ଥୋଇ ଭାଗବତ ଅଧାୟେ ହେବ । ଲାଗୁଥାଏ ଏଥର ଦୂରରୁ ଖଣ୍ଡିକାଶ ଶୁଭିବ, ବୁଢ଼ା ଅନୁମଳିକ ଦୁଃଖ ସୁଖ ହେବାକୁ ଭାଗବତ ଶୁଣିବାକୁ ଏତିକିବେଳେ ଆସେ । ସୁଲକ୍ଷଣା ଚୂଲିପାଖେ ଥିଲେ । ଜଗବନ୍ଧୁ ଚେକା ପକାଇ ବସି ହାଇ ମାରୁଥିଲେ, ହଠାତ୍ ମନେ ପଡ଼ିଗଲେ ଶଙ୍କର ବାବୁ । ମୟୂରଭଞ୍ଜ କିଲ ଝୁରିରେ ସେ କିରାନୀ ଥିଲେ । ନିଃସନ୍ତାନ । କିନ୍ତୁ ଘରେ ପଲେ ଛୁଆପିଲା । ନାନା ଜାତିର, ସାନ୍ତାଳ, ପାଣ, ବ୍ରାହ୍ମଣ, କରଣ, ତନ୍ତୀ । ନିଜର ହୋଇ ଭାଇବନ୍ଧୁ କେହି ନଥିଲେ କିନ୍ତୁ ତାଙ୍କ ଘର କୁଣିଆ ଗହଳିରେ ଫାଟି ପଡୁଥାଏ । ଶଙ୍କର ବାବୁଙ୍କ ସ୍ତ୍ରୀ ସବୁବେଳେ କାର୍ଯ୍ୟରେ ଲୋଟୁଥାନ୍ତି, ସବୁ ବେଳେ ଚିନ୍ତା, କେଉଁ ପିଲାର କି ସମସ୍ୟା । କାହାକୁ କାଛୁ ଛାଡୁନାହିଁ, କାହାର ଡାଳି ବିଇଛି, କାହାର ନାକ ଝାଡ଼ା, କିଏ ପାଠ ମନେ ରଖି ପାରୁନାହିଁ, କ୍ଲାସରେ ଫେଲ ହୁଏ, ସେମିତି କେଉଁ କୁଣିଆଙ୍କୁ ମାଛ ନହେଲେ ଭାତ ରୁଚେ ନାହିଁ, ଏଣେ ଫୁଲବାଣୀରେ ମାଛ ମିଳେ ନାହିଁ, କିଏ ନିରାମିଷାଶୀ, ବ୍ରତ ଏକାଦଶୀ କରନ୍ତି । କିଏ ତାଙ୍କ ହାତ ସରୁ ଚକୁଳିକୁ ପ୍ରଶଂସା କରୁଥିଲେ, ଆହୁରି ଖାଇବାକୁ ଆଶା । ସମସ୍ତିଙ୍କୁ ପ୍ରସନ୍ନ କରିବାକୁ ପଡ଼ିବ । ଶଙ୍କର ବାବୁଙ୍କର ସଉକ, ସଞ୍ଜେ ସକାଳେ ପିଲାଙ୍କୁ ପାଠ ପଢ଼ାଇବେ । ତାଙ୍କ ତୁଣ୍ଡରେ ସବୁବେଳେ ବଡ଼ ବଡ଼ କଥା, ଦେଶ, ସ୍ୱାର୍ଥତ୍ୟାଗ, ଆଦର୍ଶ, ଚରିତ୍ରବଲା, କର୍ତ୍ତବ୍ୟ, ସଦ୍‌ଗୁଣ; ଏହି ସବୁ ବିଷୟରେ, ଦେଶକୁ ଗଢ଼ିବାକୁ ପଡ଼ିବ, ଦେଶର ମନୁଷ୍ୟହିଁ ଦେଶ, ସେ କହୁଥାନ୍ତି । ସାଙ୍ଗମାନେ ଚିହ୍ନାମାନେ କେବେ କେବେ ଭୋଜି ଖାଇବାକୁ ଆସନ୍ତି । ବିଚରା ନିରୀହ ପାଗଳ ଲୋକ ଅନେକଙ୍କର ଅଭିମତ ଶୁଣାଯାଏ, ''ଏଡ଼େ ଲୋ, କିଏ ପଇସା ଆଣି ଗୁଞ୍ଜିଲେ ବି ନେବ ନାହିଁ । ପର ପିଛା ଉଡ଼େଇ ଉଡ଼େଇ ଖପ୍ପି । ପୁରୁଣା ଖାନ୍ଦାନି ଘର ଲୋକ କିନା, ଯେମିତି ବଡ଼ ଚେହେରା ସେମିତି ବଡ଼ ମନ ବଡ଼ ଆଖି, ହେଲେ କଣ ହେବ, ମୁଣ୍ଡର ଖିଲ ହୁଗୁଳା ।''

ସେତେବେଳେ ମୟୂରଭଞ୍ଜରେ ଟଙ୍କାକୁ କୋଡ଼ିଏ ସେର ଚାଉଳ । ଅଥଚ ଶଙ୍କରବାବୁଙ୍କର ବଜାରରେ ଶହ ଶହ ଟଙ୍କା କରଜ । ତଥାପି କରଜ ମିଳେ । ଯେଉଁମାନେ ଚାକିରୀରେ ସହକର୍ମୀ ନୁହନ୍ତି ତାଙ୍କ ଆଖିରେ ସେ ଦେବତା । ଦୁଃଖୀରଙ୍କି ବିପଦ ପଡ଼ିଲେ ତାଙ୍କରି ପାଖକୁ ତ ଧାଇଁବେ, ଆଉ କିଏ ଅଛି ? ଜଗବନ୍ଧୁ ସେ ଶଙ୍କର ବାବୁଙ୍କୁ ସତେକି ଆଖି ଆଗରେ ଦେଖୁଥିଲେ । କଳା ପଥରରେ ତିଆରି ହେଲା ପରି ପ୍ରକାଣ୍ଡ ଶରୀର କୁନ୍ଦା ନୁହେଁ, ବୋଦକା ନୁହେଁ, ଓଜନ, ବଡ଼ ମାଉଁସିଆ ମୁହଁ । ଗୋଲ ଗୋଲ ଆଖି ଯୋଡ଼ିକ ପିଲା ଆଖି ପରି ନିରୀହ । ଜେଲଖାନା କଇଦିଂକ ବାଳପରି କଟା ହୋଇଥିବା ମୁଣ୍ଡବାଳ, ତହିଁରେ ଗୋଟିଏ ଚୁଟି । ନାଲି ଗାମୁଛାଟାଏ ବେଢ଼େଇ ହୋଇ ସେ ବସିଛନ୍ତି । ଚାରିକରେ ପଲେ ପିଲା । ଆରିସା ପିଠା ଖିଆ ହେଉଛି । ହସି ହସି ହାଣ୍ଡିରୁ ଆହୁରି କାଢ଼ି କାଢ଼ି ବାଣ୍ଟୁଛନ୍ତି ତାଙ୍କ ସ୍ତ୍ରୀ ଅରୁନ୍ଧତୀ ଦେବୀ ।

ସେହି ଶଙ୍କର ବାବୁ ତାଙ୍କରି ବି ବହୁତ ଉପକାର କରି ଥିଲେ । ଖାଲି ସଦୁପଦେଶ ଦେଇ ନୁହେଁ ଖାଲି ଦୁଇଓଳି ମାଗଣାରେ ପାଠପଢ଼ାଇ ନୁହେଁ, ଶରଧାରେ କେତେବେଳେ ନୁଗାପଟା ସାହାଯ୍ୟ, ବହିପତ୍ର ସାହାଯ୍ୟ, ଯେତେବେଳେ ଗଲେ ପେଟ ପୂରା ଜଳଖିଆ, ଓଳିଓଳିକେ ଦାମୀ

ଭୋଜନ, କେତେ ବୁଦ୍ଧି କେତେ ଆଶା ସବୁ ସେ ଦେଇଥିଲେ ଚାରିବର୍ଷ ପର୍ଯ୍ୟନ୍ତ, ପଶୁ ଡ଼ାକ୍ତରି ସେ ପଢ଼ିଥିଲେ ତାଙ୍କରି ଉପଦେଶ ମାନି, ପ୍ରବେଶିକା ଖର୍ଚ୍ଚ ବି ସେ ଦେଇଥିଲେ । ତାଙ୍କ ଆଖିରେ ଶଙ୍କର ବାବୁ ଦେବତା ।

"ଯେ ହୀନବଳ ତାକୁହିଁ ସାହାଯ୍ୟ କରିବ । ଯେ ନିଃସହାୟ ତାହାରି ତୁମେ ସହାୟ ହେବ । ପଶୁର ଚିକିତ୍ସା ଓ ସେବା ଛଡ଼ା ସଂସାରରେ ଆଉ କି ଉପାଦେୟ କାର୍ଯ୍ୟ ଥାଇପାରେ ?

ଟଙ୍କା ସମସ୍ତେ କମେଇପାରିବେ, ଅସତ୍ ମାର୍ଗ ଧରିଲେ ତ ହୁହୁ କରି ଟଙ୍କା ବଢ଼ିଯିବ । କିନ୍ତୁ ମୋର ବଡ଼ ଇଚ୍ଛା ତୁମେ ଟଙ୍କା ଲୋଭ ଛାଡ଼ି ମଣିଷ ହୁଅ, ଭଗବାନ ଖାଇବାକୁ ଦେବେ ପୋଷିବେ ପାଳିବେ ଆଉ ଅଧିକ ତୁମେ ମାଗ ନାହିଁ," ସେହି ଶଂକର ବାବୁ ତାଙ୍କୁ କହିଥିଲେ । ତାଙ୍କ ଆଗରେ ଠିଆ ହେଲେ ଦେହ ଥରୁଥିଲା, ଆଖି ତଳକୁ ହେଉଥିଲା, ବାରମ୍ବାର ଆଶଙ୍କା ହେଉଥିଲା 'ତାଙ୍କ କଳ୍ପିତ ଆଦର୍ଶରୁ ମୁଁ ତଳକୁ ଖସି ପଡ଼ି ନାହିଁତ ।' ତାଙ୍କର ଗୋଲ ଗୋଲ ଆଖି ସତେକି ସବୁ ଦେଖୁଥିଲା ସବୁ ବୁଝୁଥିଲା ଯେ କିଏ କେଉଁ ପ୍ରକାରେ ବାଟବଣା ହେଉଛି କି, କି ଭୁଲ କରୁଛି । ସେ ଠିକଣା ସମୟରେ, ଠୋକର ଦେଉଥିଲେ । ପିଲା ଦିନରୁ ଜଗବନ୍ଧୁଙ୍କ ଛାଞ୍ଚ ନରୋତ୍ତମ ନୁହନ୍ତି, ଶଙ୍କର ବାବୁ । ସେ ପ୍ରଶଂସା କରି ହସିଲେ ଜଗତ ଆଲୁଅ ହୋଇଗଲା ପରି ଲାଗେ, ସେ ମୁହଁ ଶୁଖାଇଲେ ଲାଗେ ଜଗତ ଅନ୍ଧକାର । ବଡ ହେଲେ ଏହିପରି ହେବି, ସେ ଅନେକ ସମୟରେ ଭାବୁଥିଲେ ଅନାଟନ ଘଟିଲେ ଦୁଇଓଳିରେ ଓଳିଏ ଚୁଲି ଜଳିବ, ଖଡ କରରେ ବଢ଼ିଥିବା କଣ୍ଟା ଶାଗ ଆଉ ପଖାଳ ତୋରାଣିରେ ଚଳିଯିବ, କିନ୍ତୁ ଗରିବ ପିଲାଏ ଘରେ ରହି ପାଠ ପଢ଼ିବେ, ଦୁଃଖୀରଙ୍କି ସାହାଯ୍ୟ ପାଇବେ, ସମାଜ ପାଇବ ସେବା ଓ ଉପକାର ।

ସେଇ ତ ଆଦର୍ଶ ଜୀବନ ! ମୁଁ କଣ କଲି ? ଜଗବନ୍ଧୁ ଭାବୁଥାନ୍ତି, ଆଖିରୁ ଧାର ବାହୁଥାଏ । ମନେ ପଡୁଥାଏ, ଶଙ୍କର ବାବୁ ବୁଢ଼ାହୋଇ ମଲେ, କିନ୍ତୁ ରୋଗରେ କଷ୍ଟ ପାଇପାଇ ଅଭାବରେ ହନ୍ତସନ୍ତ ହୋଇ ହୋଇ । ଔଷଧ କିଣିବାକୁ ବି ପଇସା ନଥିଲା । ଯେଉଁମାନଙ୍କୁ ସେ ଆପଣାର କରି ଥିଲେ, ମଣିଷ କରିଗଲେ, ତାଙ୍କୁ ସାହାଯ୍ୟ ଦେବାତ ଦୂରର କଥା, ଅନେକେ ଟିକିଏ ଦେଖିବାକୁ ବି ଗଲେ ନାହିଁ ।

"ଆଉ ମୁଁ ବା କାହାର କଣ କଲି ?" ଜଗବନ୍ଧୁ ଭାବିଲେ, "ଖାଲି ମୋରି ଭାରିଜା, ମୋରି ଛୁଆପିଲା, ମୋରି ସୁଖଦୁଃଖ । ଆଉ ହୃଦୟ ଭିତରେ ବୋଝେ ସଦିଚ୍ଛା, କାହାର କିଛି କରିବାକୁ ମନ, କାର୍ଯ୍ୟରେ କିଛି ନାହିଁ । ସେ ରାତି ଉତ୍ତାରୁ ସେ ଶଂକର ବାବୁଙ୍କୁ ପୁଣି ମନେ ପକାଇଥିଲେ । କେତେବେଳେ କାମ କରୁକରୁ ହାତ ରହିଯାଏ, ଆଖି ଡ଼ୋଳା ଡେରିହୋଇ ଅଟକି ଯାଏ । ଥୋମଣି ଓହଳି ପଡ଼େ । ନିଜ ସ୍ତ୍ରୀଂକ ସଙ୍ଗେ କଳି କରିବା ସେ ବହୁଦିନଠୁଁ ଛାଡ଼ି ଦେଇଥିଲେ, କିନ୍ତୁ ମଙ୍ଗଳବାର ସଞ୍ଜରେ ସେମାନଙ୍କର ଝଟାପଟା ଲାଗିଗଲା, ଆରମ୍ଭ ହେଲା ପଦେ କଥାରୁ, ଗାଁ ଆଡୁ ବୁଲି ଆସି ଜଗବନ୍ଧୁ କହିଲେ, "ଆଜି ବିନୋଦା କୁମ୍ଭାର ମରିଗଲା । ମସଲା ଦିଆ ଗୋଟା ଆମ୍ବ ଆଚାର ଟିକିଏ ପାଟିରେ ଲଗାଇବ ବୋଲି କେତେ କରି କହି ପଠାଇଥିଲା । ଦେଇଥିଲ ?"

"ମଲା ମୋ ପୋଡ଼ା ମନ, ବୁଢ଼ାଟା ସତେ ମରିଗଲା ?"

"ଓ ! ତାହେଲେ ତୁମେ ଦେଲ ନାଇଁ । ମୁଁ ପରା ଜାଣେ ।"

"ଆରେ ! ମୁଁ କଣ ଜାଣିଥିଲି ବୁଢ଼ାଟା ମରିଯିବ ବୋଲି ?"

"ନିଶ୍ଚୟ ଜାଣିଥିଲ । ବୁଢ଼ାକୁ ସତାଅଶୀ ଚାଲିଥିଲା । ଆହା; ପିଲାଦିନେ ମତେ କେତେ କାଖେଇଚି । ମୋ ବୋଉ ତା ବାପାକୁ ଭାଇ କରିଥିଲା । ଧାରୁଆ କରି ରଖି ଦେଇଗଲା । ଦେଖୁନା ଏ ଯେଉଁ ଚଉଁରା ହାଣ୍ଡିଟି ସେ ଗଢ଼ି ଦେଇ ଯାଇଛି, ପୋଡ଼ା ମାଟିର ଚିଜ ସିନା, ସେଥିରେ କି ଛୁଞ୍ଚ୍ କାମ କାରିଗରି ! କେଡ଼େ ଦମ୍ଭ କାମ ! କେତେବର୍ଷ ହେଲାଣି କହିଲ । ଏବର ପିଲାଙ୍କର ସେ ହାତ ନାହିଁ । ଛାଡ଼ । ଆଚାର ଟିକିଏ, ସୁନା ରୁପା ନୁହେଁ, ଦେଇ ନାହିଁ । ଜୀବନଯାକ ତୁମେ ସେଇଆ ପରା । ଛୋଟ ମନ ।"

ବୁଜା ମୁଠା । ଛୋଟ ମନ । ଆଉ ଏତେ ଚେକା ମହୁଲି ପକାଇ ଆଖି ବୁଜି ଜ୍ୟୋତିକୁ ବସି ଧ୍ୟାନ କଲେ କଣ ଜ୍ୟୋତି ଦିଶିବ ? ଖାଲି ଅନ୍ଧାର । ଅନ୍ଧାର । ସୁଲକ୍ଷଣା କାବା ହୋଇ ଅନାଇଥାନ୍ତି । ଜଗବନ୍ଧୁ କହି ଯାଉଥାନ୍ତି, "କାହିଁକି ତୁମ ମନଟା ଛୋଟ ଜାଣିଛ ? ତୁମର ଦୋଷ ନାହିଁ । ସବୁ ତୁମ ବାପ ଘରର ପ୍ରଭାବ । ସେମାନେ ଆମ ପରି ଉଜାଡ଼ି ଉଜାଡ଼ି ଗରିବ ହେବା ଜାଣନ୍ତି ନାହିଁ । ସେ ଶିଖିଛନ୍ତି ମହୁମାଛି ପରି ଚାରିଆଡୁ ଆଣି ସଞ୍ଚି ସଞ୍ଚି ବଡ଼ ଲୋକ ହେବା । ତେବେ, ଫେଣା ଭାଙ୍ଗି ଚିପୁଡ଼ି ନେବାକୁ ଆଉ କେହି ଥାଏ, ଯେମିତି ଦେଖିଲ ଜମିଦାରି ବି ଉଠିଗଲା । କଣ ଭଲ ମାଡ଼ିଗଲା ?"

ସୁଲକ୍ଷଣା ପଦପଦ କରି କଥାଗୁଡ଼ାକ ଗିଳୁଥିଲେ । କାନମୁଣ୍ଡା ତାତିଲା । ନାକ ନାଲି ପଡ଼ିଗଲା, ତାପରେ ପାଟି, ଗାଲ, ବେକ, ମୁଣ୍ଡକୁ ତାତି ଚଢ଼ିଲା । ଆଖିରୁ ଧାର ବୋହିଲା । ଏପରି ଅବସ୍ଥାରେ ଦଶବର୍ଷ ତଳେ ଯାହା ଯେମିତି ହେଉଥିଲା ପୁଣି ଅଭ୍ୟାସ ଅନୁସାରେ ସବୁ ଘଟିଗଲା । କଥାର ସୁଅ ଛୁଟିଥିବା ଯାକେ ସେ କିଛି କହୁ ନଥିଲେ । ତାପରେ କାନ୍ଦୁରା ପାଟିରେ ସଁ ସଁ ହୋଇ ହଠାତ୍ ଗୋଟାଏ ବୋବାଳି, ଜଗବନ୍ଧୁ ଚମକି ପଡ଼ିଲେ, ତାପରେ ହାତୀ ଶୁଣ୍ଢରେ ମେଘ ଗାଳିଲା ପରି ତୁହାକୁ ତୁହା ଗଞ୍ଜଣା, ଢୁ ଢୁ କରି ତଳେ ମୁଣ୍ଡ ବାଡ଼ିଆ, ପଁ ପଁ କରି କାନ୍ଦଣା ନାନା ସ୍ୱରରେ । "ମୋ ହାଡ଼ ମାଉଁସ ରକତ ଝୁଣି କରି ଖାଇ ମୋତେ ଜୀବନଯାକ ଜାଳିପୋଡ଼ି ମାରି ଶେଷରେ ବୁଢ଼ୀ ଦିନକୁ ଆହୁରି ଯେ ଅପବାଦ ଶୁଣିବା ବାକି ଥିଲା । ହାରେ ଦଇବ । ମୁଁ ନମରି ରହିଚି କାହିଁକି ? ଟାଇଫଏଡ୍‌ରେ ପଡ଼ିଥିଲି ମରିଥିଲେ ଦଶ ବର୍ଷ ହୋଇ ଯାଆନ୍ତାଣି, ନମରି ବଞ୍ଚିଛି କାହିଁକି ?"

ତୋଫାନ ଚାଲିଛି । ଜଗବନ୍ଧୁ ଆତଙ୍କରେ ଅପେକ୍ଷା କରି ରହିଥାନ୍ତି । ଏ ସେହି ଅବସ୍ଥା ଯେତେବେଳେ ମାତୃମୂର୍ତ୍ତି ସତେକି କରାଳୀ ହୋଇଯାଏ । ଦୟା ନାହିଁ ମାୟା ନାହିଁ, ସମ୍ପର୍କ ନାହିଁ, ସମ୍ବନ୍ଧ ନାହିଁ, ସବୁ ଭିଣିଭିଣା ହୁଏ, ସୁଲକ୍ଷଣାଙ୍କ ଅନ୍ତର ଭିତରର ସବୁ ସଞ୍ଚିତ ତିକ୍ତତା ପଦାକୁ ବାହାରି ଗରଳ ହୋଇ ତାଙ୍କ ବ୍ୟକ୍ତିତ୍ୱରେ ମାଖି ହୋଇ ରହେ । "ଯେ କଣ ହେଲା ।" ଜଗବନ୍ଧୁ ବୁଝୁଥିଲେ । ସେ କଣ ଏପରି କହିଛନ୍ତି, ତାଙ୍କର ମନେ ପଡୁ ନଥାଏ । ଲାଗୁଥାଏ କାହିଁ, ସ୍ତ୍ରୀକୁ ଗାଳି ଦେବା କି ଅପମାନ ଦେବା କି ଘରେ ଅଶାନ୍ତି ଲଗାଇବା ଉଦ୍ଦେଶ୍ୟରେ ସେ ତ କିଛି କହି ନାହାନ୍ତି ! ପାଟି ଶୁଖିଯାଉଥାଏ । ଛାତି ଭିତରେ ଗଣ୍ଡଗୋଳ । ମନେ ପଡ଼ିଲା, ଆଗେ ଏପରି ବର୍ଷକେ ଦୁଇ ତିନିଥର ହେଉଥିଲା । ଥରେ ଅବତାର ଘୋଟିଥିଲା, ସେ ଲାଗି ରହେ ସପ୍ତାହେ ଅଧ ଯାକେ, ସେତେବେଳେ ଫୋପଡ଼ା କଚଡ଼ା ଭଙ୍ଗାରୁଜା ନିଜ ମୁଣ୍ଡ ବାଡ଼ିଆ, ଅହରହ କନ୍ଦାବୋବା ଚିତ୍କାର, ନିଜ ହାତରେ

ମୁଠାମୁଠା କରି ମୁଣ୍ଡ ବାଳ ଓଟରା, ଲୁଗାପଟା ଅସମ୍ଭାଳ, ସାହି ପଡ଼ିଶା ପର ଆପଣା ଖିଆଲ ନରଖି ସ୍ୱାମୀଙ୍କର ବିରୁଦ୍ଧରେ ନାନା ଅଭିଯୋଗ ଘୋଷଣା, ଯେ ସେ ନିଷ୍ଠୁର, ରାକ୍ଷସ, କର୍କଶ, ପିଙ୍ଗଳ, ସେ ଅତ୍ୟାଚାରୀ, ସେ ତାଙ୍କ ଜୀବନକୁ ଭସ୍ମ କରିଛନ୍ତି, ତାଙ୍କଠି ଏତେ ଟିକିଏ କାହା ପ୍ରତି ଦୟାମାୟା ନାହିଁ ।

ତାପରେ ଆସେ ଶୀତଳ ଯୁଦ୍ଧର ଦିନ, ଘରେ ପଶିଲେ ସବୁ ତୁନି ତାନି, ତାହାରି ଭିତରେ ସ୍ପଷ୍ଟ ବାରିହୁଏ, ଯୁଦ୍ଧ ଚାଲିଛି, ତାର ତାତି ନିଆଁର ନୁହେଁ ବରଫର ।

ତାପରେ ସେ ଯୁଦ୍ଧର ସମାପ୍ତି କେବେ ହଠାତ୍ ହୁଏ ଅଧା ଚିଆଁ ଅଧାଶୁଆ ଅବସ୍ଥାରେ ବିଛଣା ଉପରେ, ସେତେବେଳେ ଅଭିଯୋଗ ନଥାଏ, ନିଃଶବ୍ଦରେ ଖାଲି, ଚିରଚିର ଲୁଣି ଲୁହ । ଜୀବନଯାକ ପରସ୍ପର ପ୍ରତି ଆତ୍ମସମର୍ପଣ ବିଶ୍ୱାସ ଓ ସ୍ନେହ ସେହି ଲୁହରେ ଲହୁରେ ଚିହ୍ନାଚିହ୍ନି ହୁଅନ୍ତି । ଇନ୍ଦୁ ପୂର୍ଣ୍ଣମୀର ମଝି ରାତିରେ କଳାମେଘର ଓଢ଼ଣା ତଳେ ସଫା ଜହ୍ନ ଉଏଁ, ଉଇଁଲା ପରି, ଯେତେବେଳେ ଶୁଭୁଥାଏ ଦୂର, କୋହ୍ଲ ପଲ୍ଲୀରୁ ଭାସି ଆସୁଥିବା ମଧୁର ମାଦଳ ଧ୍ୱନି ସହିତ ମନ ଉଲୁସା ନାଚର ସଙ୍ଗୀତ, ଓଦା ଓଦା କଳା ଛାଇ ବୋଳା ସ୍ପଷ୍ଟ ଅସ୍ପଷ୍ଟ ପୃଥିବୀ ଲାଗୁଥାଏ ଅତି ଆପଣାର ହୋଇ ମନୋହାରିଣୀ ।

ସବୁ ତୋଫାନ ଶାନ୍ତ ହୁଏ, ଶାନ୍ତ ହେବ । କିନ୍ତୁ ସେ ପର୍ଯ୍ୟନ୍ତ ?

ସୁଲକ୍ଷଣାଙ୍କଠି ଏପରି ଉପସର୍ଗ ଦେଖିଲେ ଜଗବନ୍ଧୁ ତାଙ୍କ ପାଇଁ ସହାନୁଭୂତିରେ କାତର ହୋଇ ପଡ଼ନ୍ତି ଓ ନିଜଠି ନାନା ତ୍ରୁଟି ଆବିଷ୍କାର କରନ୍ତି । ଆପଣା ସ୍ତ୍ରୀକୁ ଯେତେ ନିଘା ଦେବା ଉଚିତ ସେ କ'ଣ ତହିଁରୁ କାଣିଚାଏ କେବେ ଦେଇଛନ୍ତି ? ''ଯେଉଁ ପଶୁଙ୍କୁ ସେବା କଲ ବୋଲି ଏତେ ବଡ଼ାଇ କରୁଛ ତାଙ୍କଠି ହେଲେ ବିଚାର ଅଛି, ତୁମଠି ନାହିଁ, ତାଙ୍କର ଆଖି ଅଛି, ତୁମେ ଅନ୍ଧ ।''

ଢାଇ ଢାଇ ବାଜୁଛି କଥାଗୁଡ଼ାକ ଛାତିରେ ଲାଗୁଛି ସବୁ ସତ । କିନ୍ତୁ ଆଉ ଉପାୟ କଣ ଥିଲା ? ଜୀବନଟା ସତେକି ଅଥଳ ଅକୂଳ ସମୁଦ୍ରରେ ଗୁଡ଼ାଏ ଅଜଣା ସୁଅର ତୋଡ଼ରେ ଭାସିଲା ପରି, ନିଜର ବିଚାର ଆଉ ଇଚ୍ଛାରେ ଟିକିଏ ବାଟ ପହଁରି ଯାଉ ଯାଉ ପୁଣି ସେ ଯୁଦ୍ଧ ତୋଡ଼ରେ ଆଉ କୁଆଡ଼େ ଭାସିଗଲା ପରି । ''ଶୁଣ,-ମତେ ଭୁଲ ବୁଝନା,'' ଶୁଣ-ଶୁଣିବାରେ କିଛି ନାହିଁ, ଖାଲି ଶୁଣାଇବାର, କିନ୍ତୁ ସେଦିନ ସୁଲକ୍ଷଣା ଆଉ ବେଶି ବେଳ ଯାକେ ଯୁଦ୍ଧ ଚଳାଇପାରିଲେ ନାହିଁ । ଅଳ୍ପ ସମୟେ ପରେ ରୋଷେଇ ଘରୁ ଯୁଦ୍ଧ ବନ୍ଦ ହେବାର ଘୋଷଣା ଶୁଭିଲା -''ହଉ ଯାହା କହିବ କହ, ଯାହା ଦୋଷ ଦେବ ଦିଅ, ଜୀବନଯାକ ତ କହିଛ, ଯାହାର ଯାହା ସ୍ୱଭାବ ସେ ଆଉ ବଦଳିବ ?''

ପରୀକ୍ଷା କରିବାକୁ ଜଗବନ୍ଧୁ କହିଲେ, ''ପାନ ଆଣ, କଣ ଆଜି ଦବ ନାହିଁ ?''

''ଖାଲି ପାନ କଣ ମାଗୁଛମ'' ତମ ପାଇଁ ଜଳଖିଆ କରି ପରା ଥୁଆ ହୋଇଛି । ଆଜି ତମର କଣ ଘୋଟିଛି କି ?''

''ଆଜି ଥାଉ ।''

''କାହିଁକି ଥିବ ? ଜଳଖିଆ ଖାଇବ, ଚାହା ଖାଇବ, ବେଳ ଅବେଳା ହୋଇଗଲେ ତୁମ ଦେହ ଖରାପ ହୁଏ ।'' ପୁଣି ଟାଣ କରି କହିଲେ, ''ଏଇ ଚୁଲିମୁଣ୍ଡକୁ ଆସ, ଥୋଇଲି । ତେଣେ ଘର ଅନ୍ଧକାର ।''

ସାନ ପିଲା ମା' ମାଡ଼କୁ ଡରି ଖାଇ ବସିଲା ପରି ଜଗବନ୍ଧୁ ଯାଇ ଖାଇ ବସିଲେ । କିନ୍ତୁ ମନଟା ଉଡୁଥିଲା ।

ସୁଲକ୍ଷଣାଙ୍କ ତରଫରୁ ଆହୁରି ଗାଳି ଗଞ୍ଜଣା ଶୁଣିଥିଲେ ମନ ଟଳଟଳ ହୋଇ ନଥାନ୍ତା, ସବୁଥର ପରି ନିଜକୁ ଅପରାଧୀ ଭାବି ସେ ତାଙ୍କ ଉପରେ ସହାନୁଭୂତି ଅଜାଡ଼ି ଦେଇ ଥାଆନ୍ତେ । କିନ୍ତୁ ସେଥିରୁ ଅବ୍ୟାହତି ପାଇଲା ମାତ୍ରେ ତାଙ୍କ ମନ ଅଭିମାନରେ ପୂରି ଉଠିଲା, ଲାଗିଲା ସେ ଅତ୍ୟାଚାରୀ ନୁହଁନ୍ତି ଅତ୍ୟାଚାରିତ ।

ଏ ସଂସାରରେ ଆପଣା ଭାରିଜା ବି ସାମାନ୍ୟ କଥା ପଦେ ସହି ପାରିବ ନାହିଁ, ଗଣ୍ଠି ପକାଇ ଧରିବ, ଛଳ କରିବ, ତେବେ ଏ ସଂସାର ଘରକରଣାର ଅର୍ଥ କଣ ? ଏମିତି ତ କାଳକ ଗଲା । ସେ ତୁନି ହୋଇ ଭାବୁଥାନ୍ତି, ଆଖି ଛଳଛଳ ହୋଇ ଆସୁଥାଏ ।

କିଛି କହିଲେ ନାହିଁ । ଖାଇସାରି ଉଠି ଆସି ପିଣ୍ଡାରେ ବସିଲେ । ମେଘୁଆ ଅନ୍ଧାରି ଆକାଶରେ ଗୋଟି ଗୋଟିକିଆ ତରା । ବଗିଚାରେ କଳା କଳା ହୋଇ ଗଛ ଗୁଡ଼ିକ ନଡ଼ିଆ, କଲମୀ ଆମ୍ବ, ପିଜୁଳି, ପଣସ । ମିଞ୍ଜିମିଞ୍ଜି ଜୁଳୁଜୁଳିଆ ଏକର ସେକର ଉଡୁଛନ୍ତି । ପୋଖରି ଉପରେ ଅରାକ ଫରଚା ଦିଶୁଚି । ଯେପରି ଯାହାର ଯେ ଅଲଗା ଅଲଗା, କାହାର କାହା ସଙ୍ଗେ ସମ୍ବନ୍ଧ ନାହିଁ, କାହାର କାହାକୁ ଅପେକ୍ଷା ନାହିଁ । କେହି କାହା କଥା ବୁଝୁ ନାହିଁ । ଏଇ ସଂସାର । କେଡ଼େ ନିଛାଟିଆ ।

ମଣିଷ ଜୀବନରେ ଯାଠୁଁ ବଳି ଦୁଃଖ ଅଛି ? ଏଇ ନିଃ-ସମ୍ପର୍କ ଏକୁଟିଆ ପଣଠୁଁ ଅଧିକା କିଛି ? ସେ ଥକ୍କା ହୋଇ ଚାହିଁ ରହି ଆପଣାକୁ ମନେ ମନେ ପଚାରିଲେ, ସତେ ଯେପରି ନିଜ ଭିତରେ ଆଉ ଜଣେ କିଏ ସାକ୍ଷୀ ହୋଇ ବସିଛି, ସେ ତାର ଉତ୍ତର ଦେବ । ଜୀବନ ଭିତରେ ପହଁରି ପହଁରି ଯାଇ ଶେଷରେ ଦମ୍ ନେଲା ବେଳକୁ ନିଛାଟିଆ ମରୁଦ୍ଵୀପ, ସେଠି ବାଲି ପଟା ତାଚ୍ଛଲ୍ୟରେ ହସୁଛି, ଯେମିତି ହସୁଛି ଏ ଅନ୍ଧାର । ଉପମାଟା ମନକୁ ଛୁଇଁ ଦେଲା । ଯେମିତି କବିତାର ଧାଡ଼ିଟିଏ । ମନେ ପଡ଼ିଲା, କବିତା ବି ଲେଖିଥିଲି ଦିନେ । ଗୋପନ କଥା । ସେ ସେହି ପଶୁ ଡାକ୍ତରି ପଢ଼ିବା ଦିନର କଥା । ପାଟ୍‌ନା । ନିଶ ଉଠିବାର ଚାରି ପାଞ୍ଚବର୍ଷ ହୁଏ କି ନ ହୁଏ । ସେ ନିଶ ରଖୁଥିଲେ । ହଷ୍ଟେଲର ଝରକା ସାମ୍ନାରେ ଦିଶୁଥିଲା, ବଡ଼ କୋଠା କରରେ ଗୋଟାଏ କୁଜା ଖପର୍ଲି ଘର, ସେଥିରେ ଗୋଟିଏ ଗଉଡ଼ ପରିବାର, ସେଠି ଗୋଟିଏ ପରିଶ୍ରମୀ ଯୁବତୀ । ସବୁବେଳେ ତା କାମ ବାହାରେ ବାହାରେ । ବଡ଼ ବଡ଼ ଗାଈ ବନ୍ଧା ହୁଅନ୍ତି, ସେ ତାକୁ ଖୁଆଏ, ଦେହରେ ମର୍ଦ୍ଦନ କରେ, ବାଲ୍‌ଟିରେ ଦୁଧ ଦୁହେଁ, ଗରାଖି ଆସନ୍ତି ଦିନକୁ ଦି ଥର । ଘର କାମରେ ଲାଗିଥାଏ ।

ତିନିବର୍ଷ ସେ ସେହି ପଟ୍ଟଭୂମିର ଅଂଶ ହୋଇ ରହିଥିଲା ତାଙ୍କ ଝରକା ସାମ୍ନାରେ । ଦିନେ ପଦେ କଥା ଭାଷା ନାହିଁ । କିନ୍ତୁ ଅନେକଥର ସେ କୁଜା ଖପର୍ଲି ଘରେ ମିଟିମିଟି ନଳଟଣ ନିଭିଗଲା ଉତ୍ତାରୁ ସେ ସେହି ଘର ଆଡ଼କୁ ଅନାଇଁ ଥିରି ହୋଇ ବସି ରହନ୍ତି ଆଉ ଭାବନ୍ତି, କଣ କରୁଥିବ ସେ !

ବହୁତ କବିତା ଲେଖା ହୋଇ ରହିଥିଲା । ନିଜେ ପଢ଼ିଲେ ଖୁସି ଲାଗୁଥାଏ । ଆଉ କାହାକୁ ଶୁଣାଇବାକୁ ପ୍ରବୃତ୍ତି କି ସାହସ ନ ଥାଏ । ତା'ପରେ କୁଆଡ଼େ ସେ କବିତା ଖାତା ହଜିଗଲା । ସେଥିପାଇଁ ମନରେ ଦୁଃଖ ହୋଇନାହିଁ । ଖୁସିରେ ସିଟି ମାରିଲା ପରି କି ଗୀତ ପଦେ ଗୁଣୁ ଗୁଣୁ

ହେଲା ପରି ସେ କବିତା ଲେଖା ହୋଇଥିଲା ଜଗବନ୍ଧୁ ଗ୍ରନ୍ଥାବଳୀ ଛପାଇବା ଉଦ୍ଦେଶ୍ୟରେ ନୁହେଁ ।

ହାରିଲା ହାରିଲା ନିଉନ ମନକୁ କରକୁ ଠେଲି ପୋପାଡ଼ି ଦେଇ କେତେବେଳୁ ସେ ଜୀବନର ଉଚ୍ଛ୍ୱାସରେ ମନେ ମନେ ଫୁଲି ଫୁଲି ନାଚିକୁଦି ଅମଡ଼ା ମାଡ଼ି ବୁଲୁଥିଲେ ଖିଆଲ ନଥିଲା । ଖାଲି ଦିଶୁଥିଲା ଅତୀତର ଅଗଣନ ସମ୍ପର୍କ ମାଳମାଳ ଅନ୍ଧାର ଭିତରେ ମାଳମାଳ ହୋଇ ଦୂରର ଦିଆଲି, ଯେପରିକି ସତ ସେହି ଦିଆଲିବତୀ, ଅନ୍ଧାର ସତ ନୁହେଁ ।

ସଂସାର ଦୂରେଇ ଯାଇ ନାହିଁ ମୁଁ ଦୂରେଇ ଯାଇଛି ସଂସାରଠୁଁ, ସଂସାରର ଦୁଆରତ ସବୁଦିନେ ଖୋଲା, ସବୁଠି ସବୁଦିନେ ନିମନ୍ତ୍ରଣ । ତାଙ୍କ ମନ ତାଙ୍କୁ ବୁଝାଇଲା, ମୁଁ ଆଗେଇ ଗଲେ ମୁହଁ ମୋଡ଼ି ଦିଅନ୍ତା କିଏ ? ପୁଣି ଜିଭ ସୁଆଦ ଟକଳା ହେଲା ଏପାଖ ସେପାଖ ଲେଉଟ ପାଉଟ ଜୀବନ ଦର୍ଶନ ଚର୍ଚ୍ଚାର ଉପସଂହାର କଲା ପରି ବିଳି ବିଳେଇ ଉଠିଲେ । ''କହିଥିଲ ପରା ପାଣି କଖାରୁ ପତ୍ର ଚାଉଳବଟା ଆଉ ପିଆଜ ଦେଇ ଭାଜିବ ବୋଲି, କରିଛ କି ନାହିଁ ?''

ସେ ଘରୁ ଶୁଭିଲା ସୁଲକ୍ଷଣାଙ୍କର କିରି କିରି ହସ । କହିଲେ, ''ବସି ବସି ସେଇଆ ଭାବୁଥିଲ ପରା । ହାତଟା ବିନ୍ଧୁଛି ଅରୁଆ ଚାଉଳ ଆଜି ବାଟି ପାରିଲି ନାହିଁ । ବେସନତକ ଗମରା । ଅଟା ଦିଟା ପକାଇ ଭାଜି ଦେବି ଚଳେଇ ନିଅ ।''

ଖାଇ ବସିବା ପୂର୍ବରୁ ଆଣ୍ଠୁଆ ଗୋପାଳଙ୍କୁ ପୂଜା । ପ୍ରଣିପାତ କରି ଠାକୁରଙ୍କ ମୁହଁକୁ ଭାବ ଗଦ୍‌ଗଦ ହୋଇ ଚାହିଁ ରହିଲା ବେଳକୁ ମନେ ମନେ ଜଣାଣ କଲେ - ଗୋପାଳ ତୁଇ ଶିଖାଇଲୁ ମନୁଷ୍ୟ ଜନ୍ମରେ ସାଙ୍ଗସାଥୀ ହୋଇ ସମ୍ପର୍କ ଲଗାଇ ଆନନ୍ଦ କରିବାହିଁ ଧାର, ଗୋଠର ପ୍ରତି ଗୋରୁଙ୍କ ସଙ୍ଗେ ତୋର ସମ୍ପର୍କ, ପ୍ରତି ଗଉଡ଼ ପ୍ରତି ଗଉଡୁଣୀଙ୍କ ସଙ୍ଗେ ତୋ ସମ୍ପର୍କ, ତୁ ମନଖୋଲା ସାଙ୍ଗ ମେଳା ଆଡ଼୍‌ଡ଼ା ମଉଜର ଦେବତା, ମୋ ସମ୍ପର୍କ ମୋ ସମ୍ବନ୍ଧ ମୋତେ ତୁ ଫେରାଇ ଦେ, ମୁଁ ପଦାକୁ ଯିବି ।

ସେ ଆକାଙ୍‌କ୍ଷା ସୁଲକ୍ଷଣା ଜାଣିବାର ଉପାୟ ନ ଥିଲା । ସେ ଦୁଆର ବନ୍ଧ ପାଖେ ଲମ୍ବ ହୋଇ ପଡ଼ି ମୁହଁ ମାଡ଼ି ଜଣାଣ କରୁଥିଲେ - ଗୋପାଳ ଯାଙ୍କୁ ଦମ୍ଭ ରଖିଥା ଯାଙ୍କ ଶରୀର ନିରୋଗ ରଖିଥା, ମୋ ପିଲା ଛୁଆଙ୍କୁ ଘଣ୍ଟ ଘୋଡ଼େଇ ରଖିଥା, ଯାଙ୍କ ପାଦରେ ମୁଣ୍ଡ ରଖି ଯେମିତି ମୋ ଜୀବନ ଯାଉ ।

ସେତିକିବେଳୁ ଜଗବନ୍ଧୁଙ୍କୁ ବାଇ ଲାଗିଥିଲା ଯେ ସେ ପଦାକୁ ଯିବେ । ଦୁଇଦିନ ପର୍ଯ୍ୟନ୍ତ କଥାଟା ମନେ ମନେ ରଖିଲେ । ତା'ପରେ ସେଦିନ ସୁଲକ୍ଷଣାଙ୍କ ଆଗରେ କହିଲା ବେଳକୁ ପ୍ରତିଜ୍ଞା ଅଟଳ ହୋଇ ସାରିଥିଲା ।

ଆୟୋଜନରେ ଆଡମ୍ବର ନଥିଲା । ଶୁକୁଟା ମା ପଧାନୁଣୀ ଜଗବନ୍ଧୁଙ୍କ ଅନୁପସ୍ଥିତିରେ ସୁଲକ୍ଷଣାଙ୍କ ପାଖରେ ରହିବ । ମୂଳିଆ ଗଉଡ଼ ତ ବାରିଘର କାମ କରେ, ଗୋରୁଙ୍କ ଖବର ବୁଝେ, ଜଗବନ୍ଧୁ ନ ଆସିବା ଯାକେ ସେ ରାତିରେ ବି ଶୋଉଥିବ । ପଦିଆ ନନା ଦିନରେ ଥରେ ଆସି ଗୋପାଳଙ୍କୁ ପୂଜା କରିଦେଇଯିବେ । କିନ୍ତୁ ଅସଲ ପୂଜାତ କରିବେ ସୁଲକ୍ଷଣା, ''ଗୋପାଳ ସେତିକିରେ ସନ୍ତୁଷ୍ଟ ହେବ,'' ଜଗବନ୍ଧୁ ନିର୍ଭର ଦେଇ କହିଥିଲେ । ଏଥର ଯେ ଦଶଦିନିଆ ଗସ୍ତ । ଆଗ ପାଞ୍ଚଦିନ ପାଇଁ ତିନିଖଣ୍ଡ ଲଫାପାରେ କେଆର ଅଫ୍ ପ୍ରାଣବନ୍ଧୁ । ପୁଲିସ ଇନିସପେକ୍ଟର ତୁଳସୀପୁର,

କଟକ ବୋଲି ଠିକଣା ଲେଖା ହୋଇ ରଖିଦିଆ ହେଲା, ମାଧବ ଗାଁରେ, ଡାକଘରେ ପକାଇବା ଭାର ରହିଲା ପଦିଆ ନନା ଉପରେ । ବାହାରିଲା ବହୁକାଳର ଗସ୍ତବୁଲା ସାନ ସୁଟକେଶଟିଏ, ରଙ୍ଗ ଛାଡ଼ିଯାଇଛି । ଆଗ ସେଥିରେ ପଶିଲା ପୁରୁଣା ସଙ୍ଗୀ ପାନ ଛେଚାଟି, ଖଇରିଆ ଭଲ ସୂତାରେ ବୁଣା ମୁଣ୍ଡବନ୍ଧା ମଫଲର, ବଡ଼ ବୋହୂ ନୂଆ ନୂଆ ଆସିଲା ବେଳେ ବୁଣି ଦେଇଥିଲା, କମଳା ବର୍ଣ୍ଣର ଉଲ୍ ସୂତାରେ ବୁଣା ଗୋଟାଏ ପୁରୁଣା ସ୍ୱେଟର, ତିରିଶି ବର୍ଷ ତଳେ ସୁଲକ୍ଷଣା ନିଜେ ବୁଣିଥିଲେ, ଠାଏ ଠାଏ କଣା କଣା ହୋଇଯାଇଛି । ଶୀତ ନାହିଁ, କିନ୍ତୁ ଶୀତୁଆ ଲାଗିପାରେ । ତେଣୁ ଏ ଦେହ ରକ୍ଷା ବ୍ୟବସ୍ଥା । ଗୋଟାଏ ଟିଣରେ ପଶିଲା କିଛି ଚୁଡ଼ା ଭଜା ଚୁନା, ଚିନି ଗୋଳା ହୋଇଛି । କିଛି ଶୁଣ୍ଠି ଓ ଶୁଖିଲା ମୁଥାମୂଳ ଗୁଣ୍ଡ, ସେଥିରୁ ଏକ ଚାମୁଚି ଚାହାରେ ପଡ଼େ, ମଶାରି ଟାଙ୍ଗିବାକୁ କଣ୍ଟା, କନା ଧଡ଼ି, କାଳେ କି ଆବଶ୍ୟକ ପଡ଼ିବ ବୋଲି ଗୋଟାଏ ବାଙ୍କୁଲି ଛୁରୀ ସେ ହଜାରିବାଗରେ କିଣା ହୋଇଥିଲା, ସେଥିରେ ଅନେକ ପଦାର୍ଥ କଟା ହୋଇଛି । କିଛି ଲୁଗାପଟା ସଜା ହୋଇ ଥୁଆ ହେଲା, ସେଥି ଭିତରୁ ଖଣ୍ଡିଏ ଛାଇ ପରି କଷା ହୋଇଥିବା ପୁରୁଣା ଗାମୁଛା । ଉପର ଡାଲାର ଭିତର ପଟେ ରହିଲା ଜଗନ୍ନାଥ ଛବି ଖଣ୍ଡିଏ । ସତରଞ୍ଜି, ମଶାରି, ଯୋଡ଼ିଏ କମ୍ବଳ, ବିଛଣା ଚାଦର ଓ ତକିଆ ହୋଇ ବିଛଣା ବନ୍ଧା ହେଲା ।

''ତାଙ୍କ ପିଲାଙ୍କ ପାଇଁ କ'ଣ ନେବ ?'' ସୁଲକ୍ଷଣା ପଚାରିଲେ ।

''ଗୋପାଳର ଆଶୀର୍ବାଦ ।''

''ତା ତ ନିଶ୍ଚୟ । ତେବେ, ହାତରେ କିଛି ଗୋଟାଏ ତ ଦେବ ? ହଉ ସେଉଠୁ ଲେମଞ୍ଚୁସ୍ କି ବିସ୍କୁଟ ଡବାଟାଏ କିଣି କରି ଦେବ ।''

''ନା, ନେବାକୁ ଯଦି ପଡ଼ିବ କିଛି ଘରର ଜିନିଷ ନେଲେ ଭଲ ହେବ, ସହରରେ ଯାହା ମିଳେ ନାହିଁ ହେଇ ଯେମିତି ଆମ ଗଛର ସପନା ଛୁଇଁ । ଏ ଦିନେ କାହୁଁ ପାଇବେ ? ପାଇଲେ ବି ଏଡ଼େ ମୋଟା ଏଡ଼େ ମାଉଁସିଆ ଛୁଇଁ କାହୁଁ ମିଳିବ ? ଆମ୍ବଡ଼ା ଆଉ ହଁ, ଆମ ବାରି ଖଡ଼ା ।''

''ଏଃ ! ଖଡ଼ା ନେଇ କଟକ ଯିବେ ! ଶୁଣମ !''

''ତେବେ ଜାଣିନା, ଏଡ଼େ ମିଠା ଖଡ଼ା ସେମାନେ କାହୁଁ ପାଇବେ ? ଖଡ଼ା ନୁହେଁ ତ ଚିନିଡାଙ୍ଗ । ମୁଁ କହୁଚି ତୁମେ ସଜାଡ଼ । ସେ ଯେଉଁ ପ୍ରକାଣ୍ଡ ପ୍ରକାଣ୍ଡ ବୁଢ଼ା କାକୁଡ଼ି ଦିଗଣ୍ଡା ଅଛି, ହଳଦି ଗରଗର-''

''ବୁଢ଼ା କାକୁଡ଼ି ଗୁଡ଼ାକ କେଉଁ ପସନ୍ଦରେ ନେବ ?''

''ଆରେ ବାବୁ ବୁଢ଼ା ହୋଇଗଲେ ସବୁ ଜିନିଷ ବେପସନ୍ଦ ହୁଏ ନାହିଁ ମ । ମୋ କଥା ଶୁଣ । ଅସଲି ସୁନ୍ଦରଗଡ଼ କାକୁଡ଼ିର ବିହନରୁ ହୋଇଛି । ନଜାଣିବା ଲୋକ କହିବ ହଳଦୀବଟା ଶିକୁପତା । ଶାକର କି ରାଇ କଲେ ତା ସୁଆଦ ତା ବାସ୍ନା ଆଉ କେଉଁଠୁ କିଏ ପାଇବ ? ଆହା ସେ ପିଲାଏ କାହୁଁ ପାଉଥିବେ ବିଚରା ।''

''ହଉ ତମ ଇଚ୍ଛା ।''

''କାଗେଜି ଲେମ୍ବୁ ପୁଳାଏ ତ ଅବଶ୍ୟ ଯିବ । ହଁ ଭୁଲିଗଲି, ବଜ୍ରବାଣ ନଡ଼ିଆ ଦିଗଣ୍ଡା ।''

''ନଡ଼ିଆ କଟକରେ ଅପ୍ରାପତ ।''

"ଆରେ ବାବୁ, ନଡ଼ିଆ ସବୁଠି ମିଳେ, ହେଲେ ପ୍ରାଚୀ କୂଳର ବକ୍ରବାଣ ନଡ଼ିଆ ସେମାନେ କାହୁଁ ପାଉଥିବେ ?"

"ତମ ଇଚ୍ଛା । ତେବେ ମଫସଲି ଜିନିଷ ନେବାକୁ ମନ କଲେ ନେଇଥାନ୍ତ ବଡ଼ି, ଘିଅ, ସରୁଚୁଡ଼ା ।"

ଅସହିଷ୍ଣୁ ହୋଇ ଜଗବନ୍ଧୁ କହିଲେ, "ଯାହା ହୋଇ ପାରିବ ନାହିଁ, ଖାଲି ତୁମେ ସେଇଆ କହିବ । ମୁଁ ଯାହା କହୁଛି ସେଇଆ ସଜାଡ଼ ।"

ବସ୍ତା ସଜଡ଼ା ହେଲା । ଜଗବନ୍ଧୁ ବାହାରିଲେ ।

ମୂଳି ବେହେରା ବସ୍ତା ବିଛଣା ସୁଟ୍‌କେଶ ବୋହି ଦି' କୋଶ ଦୂରରେ ସଡ଼କରେ ପହଞ୍ଚାଇ ଦେବାକୁ ତାଙ୍କ ସଙ୍ଗରେ ଚାଲିଲା । ସଡ଼କରେ ପହଞ୍ଚିଲେ ମଟର ଧରା ହେବ ।

କୋଶେ ବାଟ ନପୂରୁଣୁ ହାଲିଆ ଲାଗିଲା । ମୂଳିଆ ପଚିଶି ବର୍ଷର ଭେଣ୍ଡା । ବୋଝ ବୋହି ବୁଢ଼ାଙ୍କ ସଙ୍ଗେ ପାଦ ପକାଇ ମନ୍ଥର ଗତିରେ ଚାଲିବାକୁ ତାକୁ ଅଡୁଆ ଲାଗୁଥାଏ । ଛାଡ଼ି ଦେଲେ ସେ ଉଡ଼ି ଯାଆନ୍ତା । ନିଜକୁ ଯେତେ ରୋକି ରୋକି ବାଟ ଚାଲୁଥିଲେ ସୁଦ୍ଧା ସବୁବେଳେ ସେ ଦଶ ହାତ ଆଗରେ ପଛକୁ ଅନାଏଁ । କିନ୍ତୁ ବୁଢ଼ାଙ୍କୁ ଛାଡ଼ି ଦେଇ ଆଗ ବଳି ପଳାଇ ଯିବାକୁ ତାର ମନ ହୁଏ ନାହିଁ । ଜଣ୍ଡାପଦା ଗାଁ ଗହୀର ପାଖ ବଡ଼ ବରଗଛ ତଳେ ବୁଢ଼ା ଝାଳ ମାରିଲେ । ସତେ ଯେମିତି ପାହାଡ଼ ଘାଟି ଚଢ଼ି ଚଢ଼ି ସେ ଆସିଛନ୍ତି । ଛାତି ଦମ ଦମ ।

ଗପ ଆରମ୍ଭ କଲେ, ବୁଝିଲୁ ମୂଳି, ଗୋଟାଏ କଥା ମନେପଡୁଛି । ସେତେବେଳେ ରାଇରଙ୍ଗପୁରରେ ଥାଏଁ । ସଞ୍ଜବୁଡ଼ ବର୍ଷା ଗାଳୁଛି ଖବର ଆସିଲା ଛକୋଶ ଦୂରରେ ଗାଈଟିଏ ଛୁଆ ଜନ୍ମ କରି ପାରୁନାହିଁ, ପେଟରେ ବାଛୁରୀଟା ମରି ଯାଇଛି କି କଣ । ଘାଟି ଚଢ଼ି ଓହ୍ଲେଇ ଧାଇଁ ଧାଇଁ ତା ମାଲିକ ଆସିଥିଲା ବାଲ୍ଲ ମୁଣ୍ଡା ଜାତିର ଆଦିବାସୀଟିଏ । ଆସି ପାରିବ ନାହିଁ କି ସାଇକଲ ସେଠିକି ଯିବ ନାହିଁ । ମୁଁ ଅପେକ୍ଷା ନକରି ବାହାରି ପଡ଼ିଲି । ଯନ୍ତ୍ରପାତିତକ ସେ ବୋହିଲା । ଏମିତି ଛତା ଖଣ୍ଡିଏ ଧରି ମୁଁ ଚାଲିଲି । କହିବି କଣ, ଏଡ଼େ ଅଖାଡୁଆ ଛ କୋଶ ବାଟ ଚାଲି ଯିବାକୁ ଲାଗିଲା ମୋଟେ ଅଢ଼େଇ ଘଣ୍ଟା । ଗାଈର ପ୍ରାଣତ ରକ୍ଷା ହେଲା, ସେ ମୁଣ୍ଡା ବିଚରା ଗାଁ ଯାକ କହି ବୁଲିଲା ଏମିତି ବାଟ ଚାଲିବା ଲୋକ ଆଦିବାସୀଙ୍କ ଭିତରେ ବି ଦେଖା ନାହିଁ । ବାଟ ଚାଲିବା ଅଭ୍ୟାସ ସେତେବେଳେ ଥିଲା । ଚାଲୁଥିଲେ ସାଙ୍ଗ ଲୋକ କାହିଁ କେତେ ପଛରେ ପଡ଼ି ରହୁଥିଲେ ।

ବଟାରୁ ପାନ ଖଣ୍ଡିଏ କଢ଼ା ହୋଇ ଛେଚା ହେଲା । ବଟାରେ ପାନ ଥିବାଯାକେ ସୁଲକ୍ଷଣାଙ୍କ ସ୍ପର୍ଶ ବି ପାଖେ ପାଖେ ଅଛି ।

ପୁଣି କହିଲେ, "ସେ ମତେ ବାରମ୍ବାର ଆକଟ କରନ୍ତି ଦେହକୁ ରଖି ଥୋଇ ଚଳ, ହୁଣ୍ଡାମି କର ନାହିଁ । ମୁଁ କଣ ତାଙ୍କରି ପରି ହୋଇଛି ଯେ କାନି ଘୋଡ଼ି ଘରେ ବସିଥିବି ? ଦେହରେ ବଳ ଥିବାଯାକେ ମନ ହେଉଥାଏ ପଥର ଭାଙ୍ଗନ୍ତି ପାହାଡ଼ ଓଲଟାନ୍ତି । ନା କଣ ?"

ମୂଳି କହିଲା, "ଡେରି କଲେ ତେଣେ ମଟରଟା ପଳେଇ ଯିବ ପରା, ଯିବା ।"

ବାଟ ଦିକୋଶ ଚାଲିଲା ପରେ ସଡ଼କରେ ଦୋକାନ ଘରେ ଅଧଲୋଟାଏ ପାଣି ପିଆଗଲା । ତା' ପରେ ମନ ହେଲା ଚାହା । "କଢ଼ା ତିଆରି କର," ସେ କହିଲେ ।

ମଟର ଆସିଲା । ଜାଗା ମିଳିଲା । ବାଟରେ ଟିକିଏ ଆଖି ଖୋଲୁ ଖୋଲୁ ନିଦ ଝାଙ୍କେ, ମେଘ ଟଳ ଟଳ ହୁଏ, ଭାଙ୍ଗି ପଡ଼େ, ମୁଣ୍ଡ ନଡ଼ ନଡ଼ ହୋଇ ଏକର ସେକର ହୁଏ । ପମ୍ପ କଲା ପରି ଗାଲ ଫୁଲେ ପୁଣି ଆପା ହୁଏ । ପାନରସ ଆସ୍ତେ ଆସ୍ତେ ନିଗିଡ଼ି ପଡ଼େ ଛାତି ପକେଟ ଉପରକୁ ।

କିନ୍ତୁ ମନ ଭିତରେ ଉତ୍ସାହ ଜଳୁଥାଏ । ଲାଗୁଥାଏ ଯେମିତି ଅଭ୍ୟସ୍ତ ଗତିରେ ସେ ଗସ୍ତବୁଲି ବାହାରିଛନ୍ତି । ଏଠି ଏ ସଡ଼କର ଦୁଇକରେ ଗଛ, ଗାଁ, କ୍ଷେତ । କେତେଠି କେତେ ନୂଆ ନୂଆ ଘର । କେତେ ଅଚିହ୍ନା ମଣିଷ ଗହଳି । କିନ୍ତୁ ବାହାରର ଦୃଶ୍ୟକୁ ସେତେ ନିଘା ନଥିଲା । ସ୍ୱପ୍ନପରି ଅତୀତର ଛିଣ୍ଡା ଛିଣ୍ଡା ସ୍ମୃତି ଦିଶି ଦିଶି ଯାଉଛି । ସେ ଗସ୍ତରେ ବୁଲୁଛନ୍ତି । ପାହାଡ଼, ଜଙ୍ଗଲ ସ୍ଥାନେ ସ୍ଥାନେ କେତେ ପଲ୍ଲୀ, କେତେ ମଫସଲି ସହର । ବସ ଚାଲିଛି । ରେଳ ଚାଲିଛି । କେତେବେଳେ ସାଇକଲ ଚଢ଼ି ଚାଲିଛନ୍ତି, କେତେବେଳେ ପାଦରେ । ସବୁଠିଁ ରହିବାକୁ ସ୍ଥଳି । ଅଚିହ୍ନା ଲାଗୁନାହିଁ । ଗତିରେ ପ୍ରକାଶ ପାଉଛି ଜୀବନର ଉଲ୍ଲାସ । ପାଉଛି ତ !

ସେ ଉଲ୍ଲାସ ଅଳ୍ପକେ ହ୍ରାସ ହୋଇ ଆସିଲା ଯେତେବେଳେ ସହଯାତ୍ରୀଙ୍କ ବକର ବକର ଓ ଠେଲାପେଲାରେ ତେଲେଙ୍ଗା-ପେଣ୍ଡଠାରେ ତାଙ୍କ ନିଦ ସମ୍ପୂର୍ଣ୍ଣ ରୂପେ ଭାଙ୍ଗିଗଲା । ଜଗବନ୍ଧୁ ସେମାନଙ୍କ କଥାକୁ କାନେଇଲେ । ମକଦ୍ଦମାବାଲା ପଞ୍ଝାକୁ ପଞ୍ଝା । କଚିରିରେ ତାରିଖ ଅଛି । ଚାକିରି, ବେପାର, ଅନୁସରଣ, ଡାକ୍ତରଖାନା । ଲୋକଙ୍କର ନାନା କାମ । କେଉଁଠାକୁ କି ଉଦ୍ଦେଶ୍ୟରେ ଯିବାକୁ ପଡ଼ିବ ସବୁ ନିର୍ଦ୍ଦିଷ୍ଟ । ଜଗବନ୍ଧୁଙ୍କୁ ଦୁର୍ବଳ ଲାଗିଲା । ଏକାଥରେ ମନେ ପଡ଼ିଗଲେ ଘରେ ସୁଲକ୍ଷଣା, ଦୂରରେ ଦୂରରେ ତାଙ୍କ ପିଲାଏ । କିଏ କୁଆଡ଼େ ରହିଲେ । ''ଆଉ ମୁଁ ଯାଉଛି କୁଆଡ଼େ ? ହଁ ହଁ, କଟକ । ପ୍ରାଣବନ୍ଧୁ, ବ୍ରଜବନ୍ଧୁ, ବନ୍ଧୁ ବାନ୍ଧବ, ଟିକିଏ ଦେଖା ଚାହାଁ, ସେ କଣ କର୍ତ୍ତବ୍ୟ ନୁହେଁ ?''

ଉତ୍ସାହ ଉଲ୍ଲାସରେ ଯେଉଁ ଯାତ୍ରା ଆରମ୍ଭ ହୋଇଥିଲା ତାକୁ ଡ଼ିରା ଦେବାକୁ ପଡ଼ିଲା କର୍ତ୍ତବ୍ୟବୋଧ ଦ୍ୱାରା ।

ଗାଡ଼ି ଭିତରେ କେମିତି ଛଟପଟ ଲାଗୁଛି । କେହି ଏଠି ତାଙ୍କ ବ୍ୟକ୍ତିତ୍ୱକୁ ଖାତିର କରୁନାହିଁ । ଦଣ୍ଡବତ ତ ଦଣ୍ଡବତ, କେହି ତାଙ୍କୁ ଅନାଉଁ ନାହିଁ ସୁଦ୍ଧା । ଟୋକା ଗୁଡ଼ାଙ୍କର ପ୍ୟାଣ୍ଟ ହାଓ୍ୱାଇ ପିନ୍ଧା ଛନଛନ ଚେହେରା ତାଙ୍କୁ ସତେ କି ଖତେଇ ହେଉଛି । ସେ ପଦାକୁ ଅନାଇଁ ରହିଲେ ।

ଏଣେ ବେଳୁ ବେଳ ଗାଡ଼ିଭିତରେ ତାଙ୍କ ଶରୀର ଉପରେ ଚାପ ବଢ଼ି ବଢ଼ି ଚାଲିଛି । ପଛଆଡୁ କାହା ଆଣ୍ଠୁ, କାନ୍ଧ ଉପରେ କାହାର ବୁଜୁଳାର ଓଜନ, ପିଠି ଉପରେ କାହା ଛତା ଅଗର ଗେବା । କାଂଜିଆହୁଦା ଭିତରେ ଗୋରୁ ଗୋଠ ଖୁନ୍ଦି ଖୁନ୍ଦି ପୂରାଇଲା ପରି ଆହୁରି ଆହୁରି ମଣିଷ ପୂରା ହେଉଛି । ବସିବା ଲୋକଙ୍କ ଛତା ଖୁନ୍ଦା ଖୁନ୍ଦି ହୋଇ ଠିଆ ହୋଇ ରହିଲେଣି ଧାଡ଼ିଏ ଗାଡ଼ିର ଏମୁଣ୍ଡୁ ସେମୁଣ୍ଡ ।

''ଆଉ ଟିକିଏତ, ସହି ଯିବାକୁ ପଡ଼ିବ'' -ସେ ମନକୁ ମନ ସାନ୍ତ୍ୱନା ଦେଲେ ।

ପୁଣି ମନେ ପଡ଼ିଗଲା ଆଉ ଗୋଟିଏ କଥା, ଜୀବନ ଯାକ ଆଉ ଟିକିଏତ ଆଉ ଟିକିଏତ କହି କହି ମଣିଷ ସବୁ ସହେ, ପର ପାଖେ ଗୋଲାମି, ଅତ୍ୟାଚାର, ଅବିଚାର, ନିଜର ସବୁ ଦୁର୍ଦ୍ଦଶା । ଚାକିରିରେ ତାଙ୍କ ତଳେ ଥିବା ଲୋକମାନଙ୍କୁ ତାଙ୍କ ଉପରକୁ ଡିଆଁଇଦେଇ ଯେତେବେଳେ ପଦୋନ୍ନତି କରିଦିଆଗଲା ସେତେବେଳେ ସେ ଚାକିରି ଛାଡ଼ି ଦେବାକୁ ତାଙ୍କର ଝୁଙ୍କ ବଳିଥିଲା, କିନ୍ତୁ ଇସ୍ତଫା

ଲେଖିବାକୁ ହାତ ଗଲାନାହିଁ । ସେତେବେଳେ ସୁଲକ୍ଷଣା ବୁଝାଇଥିଲେ, ''ଆଉ କିଏ ମାଛଭାତ ଖାଇଲା ବୋଲି ଛଳ କରି ଆମେ ଆମ ଶାଗଭାତ କାହିଁକି ଛାଡ଼ି ଦେବା ?'' କିନ୍ତୁ ସେ ମନେ ପକାଉଥାନ୍ତି, କେଡ଼େ ଅପମାନ । ସତେ ଯେମିତି ସେ ଚାକିରୀରେ ଅଛନ୍ତି । ଆଘାତଟା କାଲି ସକାଳେ ତାଙ୍କ ଦେହରେ ଦାଜିଛି, ଦରଜ ଯିବ କଣ, ହାକୁ ହାକୁ ।

ସେ ଚିନ୍ତାରୁ ଫେରି ଆସି କେତେବେଳୁ ସେ ନିଜ ଅନୁପସ୍ଥିତି ଯୋଗୁଁ ଘରର ସମସ୍ୟା କଥା ଭାବୁଛନ୍ତି । ବୁଝିପାରିଲେ ତାଙ୍କୁ କଣ ଘାରୁଛି । ସୁଲକ୍ଷଣା ଚଳିବେ କେମିତି ? ନିଛାଟିଆ ଥାନ । ଅପନ୍ତରାଟାଏ ପରି । କେହି କୁଆଡ଼େ ନାହିଁ । ମେଘ ଅନ୍ଧାର ରାତି । ଧର, ଶୁକୁଟା ମା ନ ଆସିବ, ମୂଳି ଗଉଡ଼ ନ ଆସିବ, ମାଇପିଟା ଛନ୍ଦିବାନ୍ଧି ହେଉଥିବ । ଧର, ଓରଙ୍ଗ୍ଡ଼ି ଚୋର ପଶିବେ । ଛାନିଁଆରେ ମଣିଷଟାର ପ୍ରାଣବାୟୁ ଉଡ଼ିଯାଇପାରେ । ଚୋର ନ ଆସୁ, ଖାଲି ଗଛ ଛାଇକି ଦେଖି ସେ ଭେଟେଣା ହୋଇପାରେ । ଏକୁଟିଆ ନିଜ ପାଇଁ ରାନ୍ଧିବାକୁ ମନରେ ସରାଗ ଆସିବ ନାହିଁ, ଓଳିଏ ରାନ୍ଧିଲେ ପଖାଳ କରି ତିନିଓଳି ଚଳାଇ ଦେବାକୁ ଚାହିଁବ । ଧର ତାକୁ ହେବ ଜର, ପାଣିଟୋପାଏ ଦେବାକୁ କେହି ଲୋକ ନଥିବେ ।

କଟକ ସହର ପାଖ ହେଉ ହେଉ ପଦାରେ ଯେତିକି ଯେତିକି ଗହଳି ହେଉଥାଏ ସେତିକି ସେତିକି ନିଛାଟିଆ ପଡ଼ିଯାଇ ସେ ଆପଣା ଘର କଥା ଭାବୁଥିଲେ ।

ହଁ, ଘରେ ଚୋର ନପଶିଲେ ସୁଦ୍ଧା ବାରିରେ ପଶି ଉଜାଡ଼ିବା ଅସମ୍ଭବ ନୁହେଁ । ଜାଳ ପାଇଁ ବାଡ଼ ଭାଙ୍ଗିନେବେ । ନଡ଼ିଆ, ପଣସ କଠା, କଦଳୀ, କାଜୁ ସବୁ ତୋଳି ନେଇଯିବେ । ଖେପା ଜାଲ ପକାଇ ମାଛତକ ମାରି ନେଇଯିବେ । ଗୋରୁ ଛଡ଼ାଙ୍କୁ ବି ଚୋରେଇ ନେଇଯିବେ । ଲାଗିଲା ସତେ ଯେମିତି କଳା କଳା ଛାଇ ପରି ହତା ଭିତରେ ଲୋକେ ଏକର ସେକର ହେଉଛନ୍ତି, ଉଜାଡ଼ୁଛନ୍ତି ।

''ଗୋପାଳ, ତୁଇ ଅଛୁ, ତୁଇ ଜଗିଥିବୁ,'' ସେ ମନେ ମନେ କହିଲେ । ଲୁଗା କାନିରେ କପାଳରୁ ଝାଳ ପୋଛିଲେ ।

''ବକ୍ସିବଜାର ।''

ମଟରବାଲାର ଚିକ୍ରାରଟା ଠିକ୍ ତାଙ୍କ କାନପାଖେ ଶୁଭିଲା । ମନେ ପଡ଼ିଲା ସେ ତୁଳସୀପୁର ଯିବା ବାଟରେ ଓହ୍ଲାଇବେ । ଏଥର କୁନାର ଘର ମନେ ପଡ଼ିଲା । ତାଙ୍କ ସାନଭାଇ ପ୍ରାଣବନ୍ଧୁଙ୍କ ଡାକ ନାଁ କୁନା । ପାଞ୍ଚବର୍ଷ ତଳେ ତା ଝିଅ ଝୁମୀକୁ ବାହାକଲା ବେଳେ ସେ ତା ଘରକୁ ଯାଇଥିଲେ । ଝୁମୀ ବର ଇଂଜିନିୟର, ବୁର୍ଲାରେ ଥାଏ । ତାର ଯୋଡ଼ିଏ ପୁଅ । 'କୁନା କୁନା ! କୁନା !' ମନକୁ ନାଁଟାକୁ ଉଚ୍ଚାରଣ କରି କରି ସେ ଅତୀତକୁ ଜୀଆଇବାକୁ ଚେଷ୍ଟା କଲେ । ଦେହଟି ପୂରିଲା ପୂରିଲା, ଭୋଜନକୁ ପେଟୁ, ନିଦକୁ କୁମ୍ଭକର୍ଣ୍ଣ, ସବୁ କାମକୁ ମାନ୍ଦା, ଅଳସୁଆ, ବୁଦ୍ଧିରେ ଓଲାଆଁସିଆ, ତାର ସମସ୍ତେ ସବୁ ଜିନିଷ ନେଇ ପଳାନ୍ତି, ସେ ଆପତ୍ତି କରେ ନାହିଁ । ଅତି ଶାନ୍ତ, ଧୀରସ୍ଥିର । ଦଶପଦ ଶୋଧି ଦେଇଗଲେ ସେ ଖାଲି ଡବ ଡବ ଆଖିରେ ଅନାଇଥାଏ । କିଛି କହେ ନାହିଁ । ତେଣୁ ତା ଉପରେ ରାଗି ହୁଏ ନାହିଁ । ସେହି କୁନା ହେଲା ପୁଲିସ । ଭଲ ନାଁ ଅଛି । ଲୋକେ କହନ୍ତି 'କଡ଼ା ହାକିମ !' କେହି କେହି କହନ୍ତି ଗୁଣ୍ଡାଙ୍କ ଯମ । ଆଉ କିଏ କହେ 'ଏତେ ବୁଦ୍ଧି ।' ହୁଏତ ସେମାନେ ଜାଣିଥିବେ । ସେହି କୁନାର ପାଞ୍ଚ ପୁଅ ତିନି ଝିଅ । ଉମା ଡିପୋଟି, ଭୀମା ପ୍ରଫେସର, ଝୁମୀତ ବାହା ହେଲାଣି ।

ବାକି ପାଞ୍ଚୋଟି । ତାଙ୍କ ନାଁ ସବୁ କଅଣଟି ?

ମନ ନପଡୁ । ବାବୁଲି, ବୁଢ଼ା, ପୁଅ, ମା, ବୁଢ଼ୀ ବୋଲି ଡାକି ଚଳାଇ ନେଇ ହେବ । ତା ପରେ ନାଁ ନିଜେ ଜଣା ପଡ଼ିବ ।

ହେଇ, ରିକ୍ସା । ରିକ୍ସାରେ ବସିବାଟା ଅଖଞ୍ଜ ହେଲା । ସୁଟକେଶ ଓ ତା ଉପରେ ବିଛଣା ଅଡୁଆ କରି ନଥାଆନ୍ତା । ଅଡୁଆ ସେଇ ବସ୍ତାଟା । ବିଛଣା ଉପରେ ବସ୍ତା ଲଦା ହେଲା । ଝଙ୍କାମୋଟା ଖଡ଼ାଗଛ ବହୁତ ଯାଗା ମାଡ଼ିବସି ବସ୍ତାକୁ ଟୋଳେଇଛି । ବଜ୍ରବାଣ ନଡ଼ିଆ ଆବୁ ଆବୁ ହୋଇ ବାହାରିଛି । ଗୋଡ଼ ଦି'ଟାକୁ ପଇନଠୁଁ ଉପରକୁ ଟେକି ରଖିବାକୁ ପଡ଼ିଲା ।

ଏଇଠି ରଖରେ ।

ଭଲ ଘର । ପ୍ରକାଣ୍ଡ ଦୋମାହାଲା । ରାଜପ୍ରାସାଦ ପରି । ବାପା ବୋଉ ଯାହା ରହିଲେ ନାହିଁ ଦେଖିଥାଆନ୍ତେ । ଏତେ ଯାଗା । ଏମିତି ବଗିଚା । ଜାତି ଜାତି ଫୁଲଫଳ । ନନ୍ଦନକାନନ । ଘର ଆଗରେ କେଡ଼େ ସୁନ୍ଦର ଚାନ୍ଦୁଆ ପରି ଲୁହା ଓ ସିମେଣ୍ଟରେ ତିଆରି ହୋଇଛି । ଗୁଆଗଛ ପରି ସଳଖ ଡେଙ୍ଗା ଡେଙ୍ଗା । ଆଉ କାଚ ଖମ୍ବ ପରି ଖମ୍ବ ଗୁଡ଼ିକ, ମୋଜାଇକ ଚଟାଣ । କୁନାର ଘର ।

ଝୁମୀ ବିଭାଘର ବେଳେ ଏ ସାମ୍ନା ପଟଟା ହୋଇ ନଥିଲା । ଆଖି ପଡ଼ିଗଲା ଘର ଉପରର ଗୋଟିଏ ଫଳକ ଉପରେ, ଲେଖା ହୋଇଛି 'କୁନ୍ତଳା-ନିବାସ' ।

କୁନ୍ତଳା ? କୁନ୍ତଳା ? କିଏ ସେ ? ଓହୋ, ବୋହୂଙ୍କ ନାଁ ହୋଇଥିବ । କୁନାର ସ୍ତ୍ରୀ । ତାଙ୍କରି ନାଁରେ ତେବେ ଯେ ଘର । କୁନାର ବୁଦ୍ଧି ଅଛି ।

କଡ଼ି ଝାଙ୍କି ଝାଙ୍କି ଯୋଡ଼ାଏ କୁକୁର ଦାନ୍ତ ଦେଖାଇ ଭୁକୁଛନ୍ତି । ବାଃ ବାଃ, ଭଲ ବିଲାତି କୁକୁର । ଇଂରେଜୀରେ ଭୁକୁଛନ୍ତି । ହୁଏତ କୁନା ଏମାନଙ୍କୁ ତାଲିମ କରିଥିବ ଶୁଙ୍ଘି ଶୁଙ୍ଘି ଚୋର କି ଖୁଣୀଙ୍କୁ ଧରିବାକୁ । ରାତି ହେଲେ କଞ୍ଚା ଖାଇଯିବେ । ସେ ଆଡୁ ମଠେଇ ମଠେଇ ଚାକରଟିଏ ଆସୁଛି ।

ସେ ମୁଣ୍ଡରେ ପିଲା ତିନୋଟି ଟହଲୁଛନ୍ତି, ସେମାନେ ଟିକିଏ ଅନାଇ ଦେଇ ପୁଣି ନିଜ ଖେଳରେ ମନ ଦେଲେଣି ।

"ଆପଣ କାହାକୁ ଖୋଜୁଛନ୍ତି ?" ଚାକର ପଚାରିଲା । ଖୋଜୁଛି ?

ଆପଣଙ୍କର ଘର କେଉଁଠି ?

ଆପଣ-ଆପଣ-ଆପଣ ।

ସତେତ ଯେ କାହୁଁ ଜାଣିବ ?

କିନ୍ତୁ ଯେତେ ଉଦାର ହେଲେ ବି ଭଲ ଲାଗିଲା ନାହିଁ । ଟିକିଏ ଅଟକି ଯାଇ କହିଲେ, "ହୁଁ ।"

କିନ୍ତୁ ତେଣୁ ଅଠର ବର୍ଷର ଟୋକାଟିଏ ଦଉଡ଼ି ଦଉଡ଼ି ଆସୁଛି, ଗୋଡ଼ ତଳେ ପଡ଼ିଯାଇ ସିଧା ଠିଆ ହେଲା । କହିଲା, "ବଡ଼ବାପା, ବୋଉ ଗୋଡ଼ତଳେ ପଡୁଛି ।"

ଜଗବନ୍ଧୁ ଆଶୀର୍ବାଦ କରି ସାରି ତା ମୁହଁକୁ ଅନାଇଲେ । ହସି ଦେଇ ସେ କହିଲା, "ମୁଁ ବୁନା ।"

''ବୁନୁ । ଓ, ହୁ ହୁଁ -ଅଇଛା କଣ ପଢୁଛ ।'' ତୁ ପରିବର୍ତ୍ତେ ଆପେ ଆପେ ତୁମେ ହୋଇଗଲା ।

ବୁନା କହିଲା, ''ବି.ଏସ୍.ସି. ପଢୁଛି ।''

''ବାଃ ବାଃ ଭାରି ଭଲ ।'' ତା ମୁହଁକୁ ଆଉଁସିବାକୁ ହାତ ଟେକିଲେ । ବୁନା ତାଙ୍କଠୁଁ ଛଇଞ୍ଚ ଡେଙ୍ଗା ।

ଜଣାଗଲା, କୁନା ନାହିଁ ପଦାକୁ ଯାଇଛି ।

ବୁନା ତାଙ୍କ ପରିଚର୍ଯ୍ୟାର ଭାର ନେଲା ।

ତା ତଳେ ରୁମୀ ଥାର୍ଡ଼କ୍ଲାସରେ ପଢ଼େ, ତା ତଳେ ମାମୀ, ତାର ମାଇନର କ୍ଲାସ, ତା ତଳେ ଟୁନା ତାର ଚତୁର୍ଥ ଶ୍ରେଣୀ । ପରିଚୟ ଆରମ୍ଭ ହେଲା । ବସ୍ତା ଖୋଲା ଗଲା ।

ଏଗୁଡ଼ାକ ସାନ ସାନ ପିଜୁଳି, ଟୁନା ମନ୍ତବ୍ୟ ଦେଲା, ଆମ ବାରି ପିଜୁଳି ୟାଠୁଁ ଦିଗୁଣ ବଡ଼, ଆଉ ଯେଉଁ ମିଠା । ତଥାପି ସେହି ପିଜୁଳି ଛଡ଼ା ଛଡ଼ି ହେଉ ହେଉ ରୁମୀ, ମାମୀ ଓ ଟୁନାଙ୍କର କଳି ଲାଗିଗଲା, କାରଣ ତା ସଂଖ୍ୟା ତିନିରେ ସଂପୂର୍ଣ୍ଣରୂପେ ବିଭାଜ୍ୟ ନୁହେଁ ଓ ସେଥିରେ ହଳଦୀ ଗରଗର ହୋଇଥିଲା ଗୋଟିଏ ପିଜୁଳି । ଅନ୍ୟାନ୍ୟ ପଦାର୍ଥରେ ସେମାନଙ୍କର ମନ ନଥିଲା ।

ସେମାନେ ଯିଏ ଯୁଆଡ଼େ ଆପଣା କାର୍ଯ୍ୟରେ ଗଲେ । ଏକୁଟିଆ ବସି ରହିଲେ ବୁନା ଓ ଜଗବନ୍ଧୁ । ବୁନା ଅପେକ୍ଷା କରି ବସିଛି, ଯାହା ପ୍ରଶ୍ନ ପଚରା ହେବ ସେ ତା ଉତ୍ତର ଦେବ ।

କିନ୍ତୁ ପ୍ରଶ୍ନତ ହେଲାହିଁ ନାହିଁ ।

ଚାହା, ଜଳଖିଆ, ପାନ, ସିଗାରେଟ, କୌଣସିଥିରେ ତ୍ରୁଟି ନଥିଲା । ସଜାସଜି ହୋଇ ରହିଥିବା କୁଣିଆଘରେ, ଦାଣ୍ଡୁରୀ ଖୋଲା ହୋଇଥିଲା । ସେଥିରେ ଦାମୀ ଖଟ, ବିଛଣା, ଆଲମାରୀ, ଚଉକି, ଟେବୁଲ ସବୁ । ସବୁ ସଫା ଝିକି ଝିକି । କଡ଼ିକୁ ଲାଗି ବାଥରୁମ ।

ପଙ୍ଖା ବୁଲିଲା । ଟାକର ଏକର ସେକର ହେଲା । ଏତେ କାଳକେ ଦେଢ଼ଶୁର ଆସିଛନ୍ତି । ଅଢୁଆଳରେ ରହି କୁନ୍ତଳା ଯତ୍ନ ନେଉଥାନ୍ତି ।

ଘଣ୍ଟାଏ ପରେ ପଦାରେ ଜିପ ଶବ୍ଦ ହେଲା । ପୋଷାକ ପିନ୍ଧି ଟୋପିନାଇ ଚାରିଜଣ ଓହ୍ଲାଇ ଆସିଲେ । ଆରପାଖକୁ ଚାଲିଗଲେ । ଅଳ୍ପ ସମୟ ଛାଡ଼ି ସେହି ବେଶରେ କୁନା ଆସି ପହଞ୍ଚିଗଲା । ଭାଇଙ୍କୁ ଦଣ୍ଡବତ ହୋଇ ହସ ହସ ହୋଇ ଠିଆ ହେଲେ । ଭାଉଜଙ୍କ କଥା, ଝିଆରୀ ପୁତୁରାଙ୍କ କଥା, ଘରକଥା ସବୁ ପଚାରି ଗଲେ ।

''କୁଆଡ଼େ ଆସିଛନ୍ତି ?''

''ଏମିତି । ତମମାନଙ୍କୁ ସବୁ ଦେଖିବାକୁ ଟିକିଏ ।''

''ଆପଣ ଏଠି ଦିନାକେତେ ରହନ୍ତୁ । ଆଦୌ ଆସୁନାହାନ୍ତି କି ରହୁନାହାନ୍ତି ।''

ଏଥର ତା ଉତ୍ତର ଦେବା କଷ୍ଟ ହେଲା ନାହିଁ । ଜଗବନ୍ଧୁ କହିଲେ, ''ଆରେ ତେଣେ ତୋ ଭାଉଜ ପରା ଏକୁଟିଆ, ଘରେ କେହି ନାହିଁ । ଗୋରୁ ଗାଈ ତିନିଟା । ଗାଁ ଅବସ୍ଥାତ ଜାଣୁଥିବୁ, ନିଜେ ନରହିଲେ ଯେଉଁ ଅଡୁଆ । ଆଇଲି ଏମିତି ଟିକିଏ ଦେଖିଗଲି ।''

ଦୁଇଭାଇ ପରସ୍ପର ଆଖିକୁ ଅନାଅନି ହେଲେ । ଦୁହିଁଙ୍କ ସ୍ମରଣ ପିଠିଆଡ଼େ ସତେ ଯେମିତି

ବାଲି ମରୀଚିକାର ତାଉ ପରି କଣ ନାଚୁଛି । କାହିଁ କେତେ ଦୂରରେ । ସେମାନେ ଏକା ଚାଳ ତଳେ ଏକା ବିଛଣାରେ କେବେ ଶୋଉଥିଲେ, ଏକା ଥାଳିରୁ ଖାଉଥିଲେ, ଏକାଠି ଦିନ ଦିନକର କେତେ ଅନୁଭୂତି ।

ସେ ସ୍ମୃତି ଦୂର ଦେବାଳୟରୁ ଶୁଭୁଥିବା ଘଣ୍ଟାଧ୍ୱନିପରି । କିନ୍ତୁ ତାକୁ ଡୁବେଇ ଦେଇ ପାଖକୁ ପାଖ ଆଉ କେତେ ପ୍ରକାର ଶବ୍ଦ, ତୀବ୍ର, କର୍କଶ, ଗୋଳିଆମିଶା ।

ଆପଣ ରହନ୍ତୁ ଭାଇ ।

ତା'ର ଉତ୍ତର ମୂର୍ଦ୍ଧାରିଆ ହସ ।

ପ୍ରାଣବନ୍ଧୁ ଉଠି ପଡ଼ିଲେ । କହିଲେ, ''ଟିକିଏ କାମରେ ଯାଉଛି ଭାଇ । ଆସୁ ଆସୁ ସଞ୍ଜ ହେବ । ଆପଣ ଖାଇଦେବେ, ମୋ ପାଇଁ ଅପେକ୍ଷା କରିବେ ନାହିଁ । ଆଜିକାଲି ଯେଉଁ କାମ ଭିଡ଼ ।''

ଜିପ୍ ଚାଲିଯାଉଥିବା ଶବ୍ଦ ଶୁଭିଲା ।

ବୁନା କଲେଜକୁ ଗଲା । ଆଉ କେହି ପାଖକୁ ଆସୁନାହାନ୍ତି । ମାମୀକୁ ଆଉଁସିବାକୁ ମନ ହେଉଛି, କୁଲୁକୁଲିଆ ଗେହ୍ଲା ଝିଅଟିଏ । ଦେଖା ପଡ଼ିଗଲେ ସେ ହସିଦେଇ ପଳାଇଯାଏ । ଟୁନା ବି ଡାକିଲେ ଆସୁନାହିଁ ।

ଚିକ୍ ଚିକ୍ ଏଭରବ୍ରାଇଟ ଷ୍ଟୀଲ ବାସନରେ ଓ ଶଙ୍ଖପରି ପ୍ଲେଟରେ ଭାତ ତରକାରି ଘେନି ଆସି ପୂଝାରି ଟେବୁଲ ଉପରେ ସଜାଇଦେଲା । କୁନ୍ତଳା ଯତ୍ନରେ ରାନ୍ଧିଛନ୍ତି, ରନ୍ଧାଇଛନ୍ତି । ଦେଢ଼ଶୁର ଆସିଛନ୍ତି । ଗୋଟିଏ ଛୋଟ ଭୋଜି ।

କିନ୍ତୁ ଜଗବନ୍ଧୁ ସେହି ନାନାପ୍ରକାର ଭୋଜ୍ୟବସ୍ତୁର ଏକତ୍ର ସମାବେଶକୁ ଅନାଇଁ ଦେଲାମାତ୍ରେ ତାଙ୍କୁ ଲାଗିଲା ଯେମିତି ସବୁ ପର-ପର ଅଚିହ୍ନା ଅଚିହ୍ନା । କୌଣସିଠି କିଛି ତ୍ରୁଟି ନାହିଁ । ବ୍ୟବସ୍ଥା, ଚର୍ଚ୍ଚା ସବୁ ଅତି ଉଚ୍ଚ ଦରର । ପ୍ରତି ଜିନିଷ ଅତି ସୁଆଦ, ରାନ୍ଧିବା କଳାର ଏ ଯେପରି ଗୋଟିଏ ଗୋଟିଏ ଚମତ୍କାର ନମୁନା । ସବୁ ଅଛି, ଗୋଟାଏ କଣ ନାହିଁ । ତେଣୁ ଖାଇବା ତୃପ୍ତି ହେଲା ନାହିଁ ।

ପାନ ଚୋବେଇ ଚୋବେଇ ନରମ ବିଛଣାରେ ଗଡ଼ି ପଡ଼ି ବିଶ୍ରାମ କଲାବେଳକୁ ଆଖି ଆଗରେ ଖାଲି ଦିଶୁଥିଲେ ସୁଲକ୍ଷଣା, ଘର, ବଗିଚା ଛାଇତଳ, ପୁଅ ଝିଅ, ସେମାନଙ୍କ ଘର କରଣା । ଚିନ୍ତା ଭ୍ରମି ଭ୍ରମି ଆପଣା ଘରକୁ ଆବୋରି ଘୂରିବୁଲୁଥାଏ । ସୁଲକ୍ଷଣା କଣ କରୁଥିବେ ? ଗୋରୁମାନେ ପେଟଭରା ଖାଇଥିବେ କି ନାହିଁ ? ପଦିଆ ନନା ଆସିଥିବ କି ନାହିଁ ? ନାନା ପ୍ରଶ୍ନ ଏକାଠି ବଳି ହୋଇ ଟାଣ ହେଲା । ତା ପରେ ସେ ଉଠି ପଡ଼ିଲେ ।

''ଆରେ ଗୋଟିଏ ରିକ୍ସା ଡାକିଦେ ଆଉ କହିଦେ, ମୁଁ ଯାଉଛି ।''

ପୂଝାରି ଆସି କହିଲା, ''ମା' କହିଲେ ଆପଣ ଆସୁ ଆସୁ ଚାଲିଯିବେନା ? ରହନ୍ତୁ । ବାବୁ ଆସନ୍ତୁ ।''

''ହଉ ହଉ ହେଲା, ଆଉ କେବେ ଆସିବି । ତେଣେ ସେ ଏକୁଟିଆଟା ଅଛନ୍ତି ପରା । ପାଖରେ ତ କେହି ନାହିଁ । ସେ ସବୁ ଅଡୁଆ ତମେମାନେ ବୁଝି ପାରିବ ନାହିଁ । ମା'ଙ୍କୁ କହିଦିଅ, ଆଉ ବଳାନ୍ତୁ ନାହିଁ ? ମୁଁ ପୁଣି ଆସିବି ଯେ । ମୋର କଣ କାମ ଅଛି ଯେ ଆସି ପାରିବି ନାହିଁ ? ଖାଲି ଟିକିଏ''-

ଆଉ ସେ ବୁଝାଇଲେ ନାହିଁ । ଛୋତା ମାଡ଼ିଲେ ।

କବାଟ ଆରପାଖେ ଥାଇ କୁନ୍ତଳା ଶୁଣୁଥିଲେ । ଗୋଟାଏ ଦୀର୍ଘନିଶ୍ୱାସ ପକାଇଲେ ।

ରିକ୍‌ସା ଆସିଲା । ପିଲାଏ ଗୋଟି ଗୋଟି ହୋଇ ଗୋଡ଼ ତଳେ ପଡ଼ିଲେ, ତାଙ୍କ ପଛଆଡ଼େ ଓଢ଼ଣା ପକାଇ ଭୂଇଁରେ ମୁଣ୍ଡ ଲଗାଇ କୁନ୍ତଳା ମୁହୂର୍ତ୍ତେ, ଜଗବନ୍ଧୁ ଭାବପ୍ରବଣ ହୋଇଗଲେ । କହିଲେ, ''ହଉ ହଉ ହଉ ଆଶୀର୍ବାଦ କରୁଛି । ଆରେ ପିଲେ ଗାଁକୁ ତ ଗଲ ନାହିଁ, ଗାଁକୁ ଚିହ୍ନିଲ ନାହିଁ । ପ୍ରାଚୀ ନଈକୂଳ ମୁନିରଷିଙ୍କ ଆଶ୍ରମ ଥିଲା । ଆଉ-ଆସ'' ବିଶ୍ୱାସ ଦେଖାଇ କହି ପକାଇଲେ, ''ସେଠି ବଜ୍ରବାଣ ନଡ଼ିଆ ।''

ଟୁନା ପ୍ରତିଧ୍ୱନି କଲା, ''ବଜ୍ରବାଣ ନଡ଼ିଆ ।'' ପିଲାଏ ହସିଲେ ।

ଅତି ଉତ୍ସାହରେ ସେ ରିକ୍‌ସାରେ ବସିଲେ । ମନରେ ଥିଲା ମୁକ୍ତିର ଆନନ୍ଦ, ଆଖି ଆଗରେ ଦୂରରେ ଦିଶୁଛି, ଶାଗୁଆ ବିଲାତି ଦଳ ଭର୍ତ୍ତି ଶାନ୍ତ ପ୍ରାଚୀ ନଈ ଧାର, ଆପଣା ଘରବାରି ଅରାକ । ନଡ଼ିଆଗଛ ବାହୁଙ୍ଗାରେ ପତ୍ର ଝିଲି ଝିଲି ଦିଶୁଛି, କସ୍ତା ଖଣ୍ଡେ ପିନ୍ଧି ବାଟକୁ ଅନାଇଁ ସୁଲକ୍ଷଣା ଠିଆ ହୋଇଛନ୍ତି ।

ରିକ୍‌ସା ଚାଲିଲା ।

ମନେ ମନେ କହିଲେ -''ଗୋପାଳ ଡାକ ପକାଇଛି । ଆଉ କୁଆଡ଼େ ରଖାଇ ଦେବ ନାହିଁ ମୁଁ ପରା ଜାଣେ ।''

କହିଲେ, ''ଆରେ ବାୟା, ଜଲଦି ଚାଲ । ଚାନ୍ଦିନୀ ଚୌକ ମଟର ଷ୍ଟ୍ୟାଣ୍ଡ ।''

ସଞ୍ଜ ଆଗରୁ ପ୍ରାଣବନ୍ଧୁ ଫେରିଲେ ଗୋଟାଏ ବଡ଼ ମହାନଦୀ ଇଲିସି ଘେନି ।

କୁଣିଆ ଘର ଖାଲି ।

ପଚାରିଲେ; ''ଭାଇ କାହାନ୍ତି ?''

# ଚକ୍ରପାଣି

କିଏ କେତେ ବିସ୍କୁଟ୍ ନ ଖାଆନ୍ତି ? ଆଉ ଏତେ କଷ୍ଟ କରି ବିସ୍କୁଟ୍‌ର ନିର୍ମାତାମାନେ ବିସ୍କୁଟ୍ ପ୍ରସ୍ତୁତ କରି ଟିଣରେ ବନ୍ଦକରି ତା' ଉପରେ ଛବିମାରି ଏତେ ଦୂରକୁ ଦୂରକୁ ପଠାନ୍ତି ବା କାହିଁକି ଯଦି ତାକୁ ମଣିଷ ନ ଖାଇବେ ? କିନ୍ତୁ ଯେଉଁଦିନ ଗାଁର ସତୁରି ବର୍ଷର ବୁଢ଼ା ସମାଜପତି ଚକ୍ରପାଣି ମହାପାତ୍ରେ ଗେଲରେ ଗେଲରେ ତାଙ୍କ ନାତି ସାତ ବର୍ଷର ପିଲା ଦଣ୍ଡପାଣିଠାରୁ ଛଡେଇ ନେଇ ସାନ କରି ଖଣ୍ଡିଏ ବିସ୍କୁଟ୍ ଖାଇଦେଲେ, କଥାଟା ଚାରିଆଡେ ଚହଳ ପଡିଗଲା । କେବଳ ଚକ୍ରପାଣି ଗାଁରେ ବୋଲି ନୁହେଁ; ଆଖପାଖର ସାତଖଣ୍ଡି ମଉଜାରେ, ଆଉ ଏ ତାକୁ ସେ ଯାକୁ ହାଟରେ ବାଟରେ ଯେଉଁଠି ଦେଖିଲେ କୁହାକୋହି ହେଲେ, '' ଶୁଣିଲଣି, ଚକ୍ରପାଣି ମହାପାତ୍ରେ ବିସ୍କୁଟ୍ ଖାଇଲେଣି ।''

ଚକ୍ରପାଣି ସେ ଅଞ୍ଚଳର ଜଣେ ବିଶିଷ୍ଟ ଲୋକ । କେବଳ ଜମିଦାର ବୋଲି ନୁହନ୍ତି ବା ତାଙ୍କର କମ୍ବୁ ପାଣିଙ୍କର ସମ୍ମାନାର୍ହ ପିତୃଦେବ ବୋଲି ନୁହନ୍ତି । ସଂସ୍କୃତରେ ଓ ଜ୍ୟୋତିଷଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସଂସ୍କୃତ ଜ୍ଞାନରେ ଯଦି ତାଙ୍କୁ ହରି ବ୍ରହ୍ମା ମହାଶୟଙ୍କ ସଙ୍ଗେ ଲୋକେ ସମକକ୍ଷ ବୋଲି ମଣୁଥିଲେ, ତେବେ ଜ୍ୟୋତିର୍ବିଦ୍ୟାରେ ମଣୁଥିଲେ ଶ୍ରୀଯୁକ୍ତ ଭୋଜରାଜ ଉଦ୍‌ଗାତା ଶାସ୍ତ୍ରୀଙ୍କ ସମତୁଲ । କିନ୍ତୁ ବ୍ରହ୍ମା ଓ ଉଦ୍‌ଗାତାଶାସ୍ତ୍ରୀ ଉଭୟେ ସ୍ୱର୍ଗାରୋହଣ କରିସାରିଛନ୍ତି । ତେଣୁ ଜ୍ଞାନର ପର୍ବତ ପରି ରହିଛନ୍ତି ଏକା ସେ । ଏତେ ଗାଁ ମଝିରେ, ଯଦିଚ ଭାର୍ଯ୍ୟା ମଲା ପରଠାରୁ ଗତ ପନ୍ଦରବର୍ଷ ହେବ ସେ ଏକମାତ୍ର ପରାଜ୍ଞାନ ଅର୍ଥାତ୍ ଆଧ୍ୟାତ୍ମିକ ଚର୍ଚ୍ଚାକୁ ଆଶ୍ରାକରି ଆପଣା ଘର ସାମ୍ନାରେ ଥିବା ବିଷ୍ଣୁ ମନ୍ଦିରରୁ ପ୍ରସାଦ ପାଇ ଦାଣ୍ଡଘର ବଖରାକରେ ବାବାଜି ପରି ରହିଛନ୍ତି ଚଉରା ପାଖେ ଉଚ୍ଚ ଦାଣ୍ଡ ପିଣ୍ଡାରେ ବସି ଚେଇଁଥିବା ସମୟତକ ସେ ଝୁଲାମୁଣି ଧରି ମାଳା ଗଡ଼ୋଉଥାନ୍ତି ଓ ପଦାକୁ ଅନାଇଁଥାନ୍ତି ଆଉ ସେହି ପଦାଏ ପଦାଏ ଚାଲେ ଗାଁ ଗୋଟାକର ଜୀବନର ଚଳନ୍ତି ଦୃଶ୍ୟ-ଲୋକେ ହଳ ନେଇ ବିଲକୁ ଯାଆନ୍ତି, ଗୋରୁ ଗାଈ ଅଡ଼େଇ ଅଡ଼େଇ ଫେରନ୍ତି, ବିଲରୁ ଆସନ୍ତି ପାଳ ମୁଣ୍ଡେଇ କି ଡାଳ ମୁଣ୍ଡେଇ, ବସ୍ତାନି କାଖେଇ ପିଲାଏ ଚାହାଳିକି ଯାଆନ୍ତି । ବୋହୂ ଘରକୁ ଭାରଥୋର ଯାଏ, ଜାମାଯୋଡ଼ ହୋଇ ଛତା ବାଡ଼ି ଧରି ଲୋକେ ଯାଆନ୍ତି ସହରକୁ, ମୁଣି ଝୁଲେଇ ଡାକବାଲା ଆସେ । ଉର୍ଦ୍ଦି ପିନ୍ଧି ଚଉକିଆ ଯାଏ ଥାନାରେ ରିପୋର୍ଟ କରିବାକୁ । ଆଉ ଦିନଯାକ ଗଛର ଛାଇ ବଢ଼େ କମେ, ପିଲା ଜନ୍ମ ହୁଅନ୍ତି ବଡ଼ ହୁଅନ୍ତି, ବୁଢ଼ା ଅନ୍ତର୍ଦ୍ଧାନ ହୁଅନ୍ତି । ସେଇଠି ବସି ଚକ୍ରପାଣି କହନ୍ତି, ''କୃଷ୍ଣ-କୃଷ୍ଣ-କୃଷ୍ଣ- ।''

ଯେପରିକି ତୁଣ୍ଡରେ ଏହି କୃଷ୍ଣନାମ ଉଚ୍ଚାରଣ କରିବା ପାଇଁ ସେ ବଞ୍ଚି ରହିଛନ୍ତି, ଆଉ ଯେ ଆସି ଓଳଗି ହେଲେ ସାମାନ୍ୟ ହସି ମୁଣ୍ଡ ହଲେଇ ହଲେଇ ନୀରବରେ ତାଙ୍କୁ ଆଶୀର୍ବାଦ କରିବାକୁ ।

କାହାର ପିଲାଟିଏ ଜନ୍ମ ହେଲେ ତା'ର ଦୀର୍ଘାୟୁ କାମନା କରି ଷଠୀପୂଜା ଦିନ ବହୁଦିନ ବଞ୍ଚିଥିବା ବୁଢ଼ାମାନଙ୍କ ନାଁ ତୁଣ୍ଡରେ ଧରି ଯେତେବେଳେ ଦଉଡ଼ିରେ ଗଣ୍ଠି ପକାହୁଏ, ସେତେବେଳେ ଲୋକେ ଆଗ ଧରନ୍ତି ତାଙ୍କରି ନାଁ । ସରଳ ଗାଁ ଲୋକଙ୍କ ଗାଁ ମାଟିଗଢ଼ା ଧର୍ମଭାବରେ ବିଶ୍ୱାସ ଅନୁସାରେ କଳି ଦେଇ ଲୋକେ କହନ୍ତି, "ସେ ଏକ ଜୀଅନ୍ତା ଠାକୁର ।" କ୍ଳେଶ ସଂବାଦ ଥିବା କୌଣସି କଠିନ କାମ କରିବାକୁ ଗୋଡ଼ ବଢ଼ାଇଲେ ଲୋକେ ଆଗ ଆସନ୍ତି ତାଙ୍କ ପାଖେ ମୁଣ୍ଡିଆ ମାରିଯିବାକୁ । ଆଉ ସେ ବସି କହୁଥାନ୍ତି "କୃଷ୍ଣ-କୃଷ୍ଣ-"

କିନ୍ତୁ ସେ ବିଶ୍ୱାସରେ ନଥିଲା କୌଣସି ବିସ୍କୁଟ ଖିଆ ଲୋକର ପରିକଳ୍ପନା-ତା'ତ ଇଂରେଜୀ ପଢ଼ୁଆ ଥିବା ଲୋକେ ଖାଆନ୍ତି ହିଁ, ସେଥିରେ ନଥିଲା ନାଟ ଦେଖା ଭୋଜିଖିଆ ମଉଜ୍ ଫୂର୍ତ୍ତି ରଙ୍ଗରସର ହାଲୁକା ଜୀବନ, ସେ ଜୀବନ ଗାଁ ଲୋକେ ନିଜେ ବଞ୍ଚନ୍ତି, ସେଥିରେ ଥିଲା ଖାଲି ଏକ ଉଗ୍ର ଶୁଷ୍କ ନୈଷ୍ଠିକତା, ପୂଜା, ବ୍ରତ, ଏକାଦଶୀ, ଦେହରେ ନାମାବଳି, ବେକରେ ମାଳି, ଦେହଯାକ ଚନ୍ଦନ ଛାପା କୃଷ୍ଣ-କୃଷ୍ଣ-କୃଷ୍ଣ, ମନ୍ତ୍ରରେ ତ୍ରୁଟି, ଆଉ ହୁମ୍‌ଦ୍ରୁମ୍ ହଲଚଲ ଶୂନ୍ୟ ପାକଳ ହୋଇ ଜଣେ ବୁଢ଼ା ଲୋକ, ଯାହାର କହିବା କଥାଠୁଁ ନ କହିବା କଥାହିଁ ବେଗେ ଆଶ୍ୱାସ ଦେବ ଦେଶ ଲୋକଙ୍କୁ, ରୋଗରେ; ଶୋକରେ, ସନ୍ଦେହରେ, ବିପଦରେ, ତାହାରି ସାକ୍ଷାତ୍ ଅବତାର ଥିଲେ ଚକ୍ରପାଣି ମହାପାତ୍ର, ତେଣୁ ସୁପ୍ତ ବିଶ୍ୱାସରେ ଦୋହଲୁଥିବା ମହୁଫେଣାରେ ଟେକା ପଡ଼ିଲା ପରି ଚାରିଆଡ଼େ ହୁଁ ହୁଁ ବୁଲିଲା ସେହି ଗୋଟାଏ ଶେଷ କଥା -"ଚକ୍ରପାଣି ମହାପାତ୍ରେ ବିସ୍କୁଟ୍ ଖାଇଲେଣି ।"

ସତେ ଯେପରି ଫେର୍ ଏକ ଆଦର୍ଶର ସମାଧି ଘଟିଲା ଜନତାର ଆଖି ଆଗରେ । ଫେର୍ ଭାଙ୍ଗିପଡ଼ିଲା ଏତେ କଷ୍ଟରେ ଗଢ଼ାହୋଇଥିବା ଗୋଟାଏ ମଣିଷଠୁଁ ଦୂର ମଣିଷଠୁଁ ଉଚ୍ଚ ବିଶ୍ୱାସର ସୌଧ, ଯେ ଆଶ୍ୱାସ ଦେଇଥାନ୍ତା "ନରରୂପୀ ନାରାୟଣ ଅଛନ୍ତି, ସମସ୍ତେ ଦୁର୍ବଳ ନୁହନ୍ତି । ସାଧନା କଲେ ସାଧାରଣ ଗୃହସ୍ଥ ବି ଏପରି ହୋଇପାରିବ । ସମାଜରେ ମନ ସପକ୍ଷରେ ଉତ୍କର୍ଷତାର ବଢ଼ତିର ଚିହ୍ନ ପରି ଯୁଗେ ଯୁଗେ ଆଥାନ୍ତି କେହି କେହି ଜଣେ ଜଣେ ଲୋକ, ଅନ୍ୟମାନେ ଯେତେ କହିବା ହେଉନୁ ପଛେ ସେ ଯୁଗରେ ସେହି ଉତ୍କର୍ଷ ହିଁ ମଣିଷର ବଡତିର ମାପ ।" ଗାଁ ନଗର ନାହୁଲି କହି କହି ବୁଲିଲେ, ଉତ୍ତରରେ ପାଇଲେ କୌଣସି କୌଣସି ଶ୍ରୋତାଠୁଁ ଆଗ ଟିକିଏ ଭୂଲତାଟେକା ଆଶ୍ଚର୍ଯ୍ୟ ଭାବ, ତା'ପରେ ଗୋଟାଏ ଦୀର୍ଘଶ୍ୱାସ, ତା'ପରେ ନିରାଶାର ଶୁଖିଲା ହସ ଟିକିଏ, ତା'ପରେ ବିଶ୍ୱାସ ଭାଙ୍ଗିଲା ପଛର ଶ୍ଳେଷୋକ୍ତି ଟିକିଏ -"ହଁ ଏ କଳି ଯୁଗରେ ସବୁ ଘଟେ, ଦେବତା ତ ପଥର, ଆଉ କାହାକଥା କ'ଣ କହିବା ?" କାହାଠୁଁ ଅବା ଖାଲି ଦୀର୍ଘଶ୍ୱାସ ।

କିନ୍ତୁ ଯାହା ବିଷୟରେ ଏତେ ଚହଳ ପଡ଼ିଗଲା, ସେ ଏ ବିଷୟରେ ଥିଲେ ନିର୍ଲିପ୍ତ ଓ ନିର୍ବିକାର । ଭାବି ପାରି ନଥିଲେ ଯେ ତାଙ୍କର ଏପରି କ'ଣ ପରିବର୍ତ୍ତନ ଘଟିବ ଯହିଁରେ ତାଙ୍କର ସତୁରିବର୍ଷର ଏକାପ୍ରକାର ବ୍ୟକ୍ତିତ୍ୱଠି ଲୋକେ ନୂଆ ଘଟ ଦେଖି ପାରିବେ । ସବୁରି ସୃଷ୍ଟି ଭଗବାନ୍, ବିସ୍କୁଟ୍‌ର ବି । କେତେବେଳେ କେଉଁ ବିଷୟ ସେ ପ୍ରତି ଆସକ୍ତି ଉପୁଜାଚି । କେତେବେଳେ ତୁଟାନ୍ତି ସେ ଆସକ୍ତି, ସାଧାରଣ ମଣିଷ କେବଳ ଆସକ୍ତିରେ ହିଁ ଘାଣ୍ଟିହୋଇ ପଡ଼ିରହେ । ଅଧ୍ୟାତ୍ମମାର୍ଗର ଉନ୍ନତ ମଣିଷ ଆସକ୍ତିର ହେତୁ ଅର୍ଥାତ୍ ଭଗବାନଙ୍କୁ ହିଁ ଦେଖେ ଆଉ ସବୁ ଗ୍ରହଣ କରିନିଏ ପ୍ରସାଦ ପରି;

ସେହିପରି ତ ସେ ତଫାତ୍ କ'ଣ ?

ଭାବିବସିଲେ ପଛକୁ ଦେଖି ହସମାଡ଼େ, ପିଲାଦିନେ କେଡ଼େ ଭଲ ଲାଗୁଥିଲା କଞ୍ଚା ପିଜୁଳି ଚୋବାଇବା, ପହିଲି ବିବାହବେଳେ ଆପଣା ସ୍ତ୍ରୀର ମୁହଁକୁ ଚାହିଁଲେ ସବୁ ଭୁଲିହେଉଥିଲା, ତା'ପରେ ଝୁଙ୍କ ପଡ଼ିଗଲା ଆପଣା ଯଶ ବଢ଼େଇବାରେ, ତା' ପରେ ନିଜ ପାରିଲାପଣ ଉପରେ, ସବୁ ଚାଲିଯାଇ ଆଶା ରହିଲା କେବଳ କୃଷ୍ଣନାମ ଜପିବା ଉପରେ, ସେହି ତ ଜୀବନ, ଆଉ କଣ ?

ଆପଣା ଦିହାତିରେ ଜୀବନ ବଞ୍ଚିବାର ସଂଜ୍ଞା ବି କେତେ ଚଞ୍ଚଳ ବଦଳି ବଦଳି ଆସିଛି, ପିଲାଦିନେ ହୁମ୍‌ଦୁମ୍ ହୋଇ ଧାଁଧପଡ଼ କରିବାରେ ଯଦି ଚିହ୍ନାପଡୁଥିଲା ଜୀବନ, ମୁହଁସଞ୍ଜବେଳେ ଜୀବନର ପରିଚୟ ଖାଲି ମାଳା ଗଡ଼େଇବାରେ । ଗୋଟାଏ ସ୍ତରରୁ ଆଉ ଗୋଟାଏ ସ୍ତରକୁ ଉଠିଆସିଲାବେଳେ ଥାଏ କିଛି ଘଟନା, କେଉଁଟା ହସର, କେଉଁଟା କାନ୍ଦର -ଏହି ଯେପରି ପରମାର୍ଥ ଧରିବା ପୂର୍ବରୁ ସ୍ତ୍ରୀଙ୍କର ମୃତ୍ୟୁ; କିନ୍ତୁ ସବୁ ସହି ହୋଇଯାଏ ପରେ; ପୁରୁଣା ଧରଣ ପୁରୁଣା ସ୍ୱରକୁ ଆପଣା ଚାରିପାଖେ ଅନ୍ୟ ଲୋକଙ୍କଠି ଜେଇଲେ ବି ସେଇଟା ଭୁଲ୍ ବୋଲି ଲାଗେ, ନିଜ ଗୁଣରେ ତା' ପ୍ରତି କ୍ଷମା ବି ଆସେ - ଆଉ ସବୁ ତ ଠାକୁରଙ୍କ ଇଚ୍ଛା, ସେଥିରେ କ'ଣ ଅଛି ?

ଏହିପରି ଭାବି ଭାବି ଚକ୍ରପାଣି ମହାପାତ୍ରେ ଆପଣା ଅତୀତଟାକୁ କ୍ଷମା କରିପାରିଥିଲେ, ଭୁଲିଯାଇଥିଲେ ସବୁ ସୁଖ ଅନୁଭୂତିର ଧକ୍ ଧକ୍ ଛଟପଟ, କେବଳ ପିଣ୍ଡା, ଠାକୁରଘର ଆଉ ସେ - ଆଉ ତୁଣ୍ଡରେ କୃଷ୍ଣନାମ ।

ଏହିପରି ସେଦିନ ଛାଇନେଉଟାବେଳେ ବସିଥିଲେ ସେ ଦାଣ୍ଡ ପିଣ୍ଡାରେ, ପଦାକୁ ଚାହିଁ ଚାହିଁ ନାମ ଜପୁଥିଲେ । ତାଙ୍କର ହଳଦିଆ ଖୋଲା ଆଖି ଦୁଇଟା ଉପରେ ପଡ଼ିଥିଲା ଫୁଲ ଲଦାଲଦି କୃଷ୍ଣଚୂଡ଼ା ଗଛର ଛାଇ, ଆଉ ସାମ୍ନାର ସେ ବଡ଼ କଦଳୀବାରିର, ଆଉ ଟିକି ଟିକି ଚାଳ ଘରର । ସେଠି ଘରଚଟିଆ ଏକର ସେକର ଉଡୁଥିଲେ, ଖୁଣ୍ଟିରେ ବନ୍ଧା ହୋଇଥିବା କାଳୀ ଛଡ଼ାଟି କନ କନ ହୋଇ ଏପାଖ ସେପାଖକୁ ଅନୋଉଁଥିଲା, ଫଁ ଫଁ ନିଶ୍ୱାସ ଛାଡୁଥିଲା, କାନ ହଲାଉଥିଲା । ବେକ ଛାଟୁଥିଲା, ଗମ୍ଭୀର ହୋଇ ରଡ଼ି ଦେଉଥିଲା - ''ମେଁ-ଭେଁ-''

ଚଞ୍ଚା ହୋଇଥିବା ଚଟାଣ ଉପରେ ଗୋଲ ଗୋଲ ହୋଇ ଘଷି ଶୁଖୁଥିଲା । ବୁଢ଼ୀ ବାଉରାଣୀ ନେତେଇମା କହୁଣିଯାକେ ଗୋବର ସରସର ହୋଇ ନୂଆ ଘଷି ପାରିଯାଉଥିଲା । ଏକ ମନରେ, ଆପଣା ମନକୁ ମନ କହି ଲାଗିଥିଲା -''ମଲା, ଏ ଛଡ଼ାଟାକୁ ଏଇଠିକିନା ଖଟେଇ ଦେଇଗଲେ କାଇଁକି ବା, କୁଆଡ଼େ ପଦାକୁ ନେଇଯାଇଥାନ୍ତେ ନା, ଏ ତ ତାତିକିରି ରହିଛି - କୁଟା ପଡ଼ିଛି ସୁଦ୍ଧା ଟୋକୁନାହିଁ; କତିକି ଗଲେ ମାରିବ, ଆଉଟିକିକୁ ପଘା ଛିଣ୍ଡେଇବ, ସେଇଠୁ ବାଇ ଲାଗିଲା ପରି କୁଦା ମାରିବ ଯେ କ'ଣ ନାଇଁ କ'ଣ କରିବ କେଜାଣି । ମଲା ଏ ଲୋକେ ଜାଣିଶୁଣି ବାଟରେ ଘାଟରେ ନିଆଁ କୁଢ଼େଇ ରଖନ୍ତି କାହିଁକି ବା ? ନିଆଁକୁ ସିନା ପାଣି, ଏ କୋଉକଥା ହେଲା ?''

''କୃଷ୍ଣ-କୃଷ୍ଣ-କୃଷ୍ଣ-କୃଷ୍ଣ-'' ପଦାରେ ଅସରନ୍ତି ଛାଇ-ଆଲୁଅର ଘଡ଼ି ଘଡ଼ିକେ ନୂଆ ଖେଳ, ପଦାର ଦୃଶ୍ୟ ଅତି ସାନ ହୋଇ ଛପା ମରାହୋଇ ରହିଛି ହଳଦିଆ କୋଟରିଆ ଆଖିର କଳା ଡୋଳା ଉପରେ । କୃଷ୍ଣ-କୃଷ୍ଣ-କୃଷ୍ଣ - ଏଇତ ବଞ୍ଚିବାର ସୁଆଦ, ବୟସ ଯେତେ ବଢ଼ିଲେ ବି ବଞ୍ଚି ବଞ୍ଚି ଘୋଳି ଲାଗେ ନାହିଁ -ଆଖିରେ ଏଇ ଦୃଶ୍ୟ, ଦେହରେ ଏଇ ପବନ କାନରେ ଅତି ପରିଚିତ ।

ଆପଣା ସଉକର ସଙ୍ଗୀତ ପରି ମଣିଷ ପାଟିର କଥା - ସବୁ ସେହି ଅସରନ୍ତି ସର୍ଜନର ଲୀଳା, ଖାଅ ନ ଖାଅ ଅଜାଡ଼ି ହୋଇ ପଡ଼ିବ ତା'ଉପରେ, ତା'ଉପରେ । ଏଇ ଏତେ ନୂଆ ପତ୍ର, ନୂଆ କଢ଼, ନୂଆ ଶିଶୁ, ନୂଆ ଫୁଲ, ଆଷାଢ଼ର ହାତୀ ଶୁଣ୍ଢରେ ପାଣି, ଆଉ ଏ ଦିନେ ଏତେ ରୂପ ରସର ସମ୍ଭାର । ପୋଥି ପଢ଼ା ଶାସ୍ତ୍ରର କଥା ଆଦୌ ମନେପଡ଼େନାହିଁ, ସେ ଯେପରିକି ଗଛର ନୀରସ ବକଳକୁ ହିଁ ଛୁଏଁ, ଗହୀରକୁ ଭେଦେ ନାହିଁ । ଗହୀରକୁ ଭେଦେ ବୋଲି ବିଶ୍ୱାସ -''ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର'' ।

ଚେତନା ଭିତରେ ତେଜିଉଠିଲା ନେତେଇମା ବାଉରାଣୀର କଥା କେତେ ପଦ । ଚକ୍ରପାଣି ନୂଆ ଦୃଷ୍ଟିରେ ତାକୁ ଅନେଇଁଲେ । ତାଙ୍କର ଆଚ୍ଛନ୍ନ ଭାବ ଭିତରେ ହଠାତ୍ ଯେପରିକି ସୂର୍ଯ୍ୟୋଦୟ ହେଲା, ପୁଣି ହଠାତ୍ ସେ ବୁଡ଼ି ବୁଡ଼ି ଆସି ଦିଶିଗଲା ସୂର୍ଯ୍ୟାସ୍ତ । ହେଇ ତ କାଲି ସକାଳେ -ସପନାର ଭାରିଯା ନୂଆ ବୋହୂ ହୋଇ ଏ ଗାଁକୁ ଆସିଥିଲା । ବଳିଲା ବଳିଲା ହାତଗୋଡ଼, ପୂରିଲା ପରି ଗୋଲ ମୁହଁ, ଚଂ ଚଂ ଆଖି ଏକର ସେକର । ତା'ର ହାତରେ ଥିଲା ମୋଟାମୋଟା ପିତ୍ତଳର ଖଡୁ ଛ'ସେର, ଗୋଡ଼ରେ ଗିଲଟି ବଳା, ବଙ୍କା ବଙ୍କା । ଏଇ ଡ଼ିହଠୁ ଖଣ୍ଡେ ଛାଡ଼ି ବାଉଁଶବଣ ସେ ପାଖେ ତାଙ୍କ ଘର । ଏ ବାଟେ କେତେ ଯାଏ, ଏ ଘରେ କେତେ କାମ କରେ, ଆଉ ବିଲରେ ତୋଟାରେ ଯୁଆଡ଼େ ଗଲେ ସବୁଠି ସେ । କାହିଁ ସେତେବେଳେ ତ ଦେଖିଲେ ମନରେ ଆସୁ ନଥିଲା ଯେ, ସେ ବାଉରାଣୀ ଘର ଝିଅ, ଗେଣ୍ଡା କୋଚିଆ ଖାଏ, ଅସନା କାମ କରେ ସତେକି ଦୁଃଖ ଧନ୍ଦା କରି ସଢ଼ିବା ପାଇଁ ତା'ର ସେ ବଳିଷ୍ଠ ଦେହକୁ ବିଧାତା ଯତନେ କୁନ୍ଦିଛି । ସେତେବେଳେ ମୁହଁଟା ନଥିଲା ତା'ର ଏତେ ବିଭଙ୍ଗ, ଏଡ଼େ କର୍କଶ କଠିଣ, ବେଙ୍ଗ ଛାଲରେ ଛାଉଣି ହୋଇ ହାଡ଼, ଗାଡ଼ ଆଉ କୋରଡ଼, ସ୍ୱର ଥିଲା କେଡ଼େ କଅଁଳ ଆଉ ନରମ, ବେଙ୍ଗ ରଡ଼ି ପରି ଆଦୌ ନୁହେଁ । ସପନାର ଭାରିଯା ବାଉରି କୁଳରେ ଜନ୍ମ ହୋଇ ସାଜିଥିଲା ସାଧାରଣ ମଣିଷକୁଳର ସ୍ୱାସ୍ଥ୍ୟ ଓ ଶିକ୍ଷାର ବିଧାତା ଗଢ଼ା ଆଦର୍ଶ, ନିଆଁ ଜାଳେ, ପାଣି ଢ଼ାଳେ, ଶସ୍ୟ ଉପୁଜାଏ, ଘର ପାଳେ - ହସ ଖୁସି ଆରାମ ଓ ଶାନ୍ତିର ସାଧାରଣ କାରିଗର ।

ଆଖି ସେଠି ମାଡ଼େଇ ରହୁଥିଲା ।

କୃଷ୍ଣଚୂଡ଼ା ଯେପରିକି ଓଲରା ଓଲରି ରଙ୍ଗ ଗଦା ।

ଦେହରେ ବାଜୁଚି ପବନ, ସାକ୍ଷାତ୍ ଉଠିଆସିଛି ଗାଁର ବଡ଼ ବଡ଼ ବଳୁଆ ପୋଖରୀରୁ ।

ହଠାତ୍ ବୁଢ଼ା ଚକ୍ରପାଣି ଭାବି ଲାଗିଲେ ''କୁଆଡ଼େ ଗଲା ସପନା ଭାରିଯା ? -କିଏ ସେ ଯେ -ଧୋକଡ଼ୀ ବୁଢ଼ୀଟା ? ସପନା ଭାରିଯା ବୁଢ଼ୀ ହେଲା କେବେ ?''

ଚାରି କାନ୍ଧରେ ବୁହା ହୋଇ କୋକେଇରେ ପଡ଼ି ଚାଲିଯାଇଛନ୍ତି କେତେ କିଏ-ସେ ତ ଆଖିଦରଶା ଯାତ୍ରା । 'ରାମ ନାମ ସତ୍ୟ ହେ'ର ଗମ୍ଭୀର ଉଦାସ ଘୋଷା, ଫଟା ବାଇଦର ଡଙ୍କିବସା ରଡ଼ି, ଯାତ୍ରାରେ ହନୁମାନ ଲାଙ୍ଗୁଡ଼ରୁ ଖଣ୍ଡେ ପରି ଉଦ୍ୟତ ନିଆଁ ବରେଇ, ପଛେ ପଛେ ଗହଳ ଘୋଷାରେ କାନ୍ଦଣା ବୋବାଳି । ଲୋକେ ଜାଣନ୍ତି, ଗାଁରୁ ଜଣେ ଗଲା । ଏମିତି ଗଲେଣି କେତେ- ଅତି ଦୀର୍ଘ ଅବସର ସତୁରିଟା ବର୍ଷ । ଦି'ବର୍ଷ ଚାରିବର୍ଷର ଫାଙ୍କ ଛାଡ଼ି ଛାଡ଼ି ଗାଁରେ ମହାମାରୀ ଘୋଟେ । କେବେ ହଇଜା, କେବେ ବସନ୍ତ, କେବେ ଠେଙ୍ଗାଜର, ମ୍ୟାଲେରିଆ ତ ଲାଗିରହିଛି ପ୍ରାୟ,

ଆଖପାଖର ନଳିତା ଚାଷ ବଢ଼ିବା ସଙ୍ଗେ ସଙ୍ଗେ ବଢ଼ିଲାଗିଛି । ମହାମାରୀ ତୁହାଇ ତୁହାଇ ଗାଁକୁ ନିକ୍ଷେତ୍ରି କରେ, ପୁଣି ମରଣକୁ ହସି ତୁହାଇ ତୁହାଇ ଗଦା ହୁଅନ୍ତି ନୂଆ ପିଲା ଯୂଥ ଯୂଥ, କିନ୍ତୁ ହେବ କ'ଣ, ଜୀବନରେ ଥାଇତା ନାହିଁ, ଗାଁର ଭେଣ୍ଡା ପଦା ହେଲେଣି, ଏଣିକି ଖାଲି ମେଣ୍ଢା-

ଯେ ତ ଗଲା ସତେ ସତେ ମରଣ, ଦେହର ମରଣ - ଯାହାକୁ ଲୋକେ ଦେଖନ୍ତି, ବାହୁନି ହୁଅନ୍ତି । କିନ୍ତୁ ଯେଉଁ ମରଣ ନିଃଶବ୍ଦରେ ଘଟେ, ସେହି ଦେହ ଠିଆ ହୋଇଛି, ସେହି ନାଁ ଧରି ଲୋକେ ଡାକୁଛନ୍ତି, କିନ୍ତୁ ସେ ମଣିଷ ନାହିଁ; ସେ ରୂପ ନାହିଁ, ସେ ମନ ସେ ସ୍ୱଭାବ ନାହିଁ । କେଉଁଗୁଣେ କମ୍ ସେ ଦେହ ମରଣଠୁଁ ।

ଏମିତି କେତେ ବଞ୍ଚି ଥାଉ ଥାଉ ମରିଯାଆନ୍ତି, ବାଉରିସାହିର ଭେଣ୍ଡା ପଦା ହୋଇଛନ୍ତି । ବିଲୁଆ ପଶିଲେ ତଡ଼ିବାକୁ ଖାଲି ଧେଡ଼ କୁକୁର, ଧୂତ ଧୂତ କହିବାକୁ ମାଇକିନିଆ ପୁଞ୍ଜାଏ, ମା' କୋଡ଼ରେ ପଶି ମୁହଁ ଲୁଚେଇବାକୁ ପିଲା ଗଣ୍ଡାଏ ପାଞ୍ଚଟା, ବଞ୍ଚିଛି ହେଇ ସପନା ଭାରିଯା, ସତେ ସତେ ସେ ବଞ୍ଚି ନାଇଁ, ସେ ନୁହେଁ ଯେ ଧୋକଡ଼ୀ ବୁଢ଼ୀ ପରା ... କୃଷ୍ଣ-କୃଷ୍ଣ-କୃଷ୍ଣ -ଚେତି ଉଠି ଫେରି ଚକ୍ରପାଣି ମାଳା ଗଣିବାରେ ମନ ଦେଲେ ।

ଚାଉଁ କରି ଉଠିଲା ମନ ଭିତରେ -ନାଁ-ନାଁ-ନାଁ-ମୃତ୍ୟୁ ମିଛ କେବଳ ଘଟ ପରିବର୍ତ୍ତନ, ବାପ ଘର କରୁଥିଲା, ପୁଅ ଘର କରୁଛି, ଶାଶୁ ଟୋକୀ ହୋଇ ଭିତର ପିଣ୍ଡାରେ ଗୋଡ଼ ଲମ୍ୱେଇ ବସି ଚିରୁଣିରେ ମୁଣ୍ଡ କୁଣ୍ଡାଉଥିଲା ହସି ହସି ଆପଣା ମୁହଁକୁ ଆପେ ଆରଶିରେ ଦେଖୁଥିଲା, ଖଲ ଖଲ ହାତକୁ ହାତ, କତିରେ କିଆଫୁଲ ଖଣ୍ଡେ ଅଛି, ଗଭାରେ କଣ୍ଟା ମାରିଦେଇ କିଆଫୁଲ ଚିରୁଡ଼ାରେ ଖୋଷି ଦେବ, ତର ସହୁନାହିଁ -ବୋହୂ ସେଇଆ କରୁଚି । ଉଦୁଉଦିଆ ଦିପହରେ ଦାଣ୍ଡ ଦୁଆରେ ଥିଲା ନୋକା ଯୋଗୀ, ଖଦୁ କାଚ କଜଳପିନ୍ଧା, କଅଁଳିଆ ହାତରେ ଗୁଡ଼ାଇ ଆଞ୍ଜୁଳିରୁ ଯୋଗୀ ଥାଳରେ ଭିକ ଦେଉଥିଲା, ଆଜି ବି ଅଛି ସେ, ମୃତ୍ୟୁକୁ ସ୍ୱୀକାର କରିବ ସେ ! କଦାପି ନୁହେଁ ।

''ନେତେଇମା, ତୋ ବୋହୂ କେମିତି ଅଛି ?''

''ହଃ, ଚୁଲି-ଗାତ-ରଡ଼-'' ନେତେଇମା ବିଡ଼ି ବିଡ଼ି ହେଲା, ଗାଇ ଚାଲିଲା ବୋହୂ ବିରୁଦ୍ଧରେ ତା'ର ସବୁଦିନର ଅଭିଯୋଗ -''ଖାଲି ନାଟରେ ହବ ରାଣୀ, ସାଆନ୍ତେ, ପେଟକୁ ଖାଇବ ଦିହକୁ ମାଜିବ ଆଉ ଦିହରେ ମୁହଁରେ ବୋଳିବାର ଆଜିକାଲିକା ଯେତେ ଅପରଛନ, ଯାହା ଆମ ଆଖି ଦେଖି ନଥିଲା ସେଇ ଚୁଲିପାଉଁଶ ଗୁରାକ ବୋଳି ହଉଥିବ ଆଉ ଗାଁ ଯାକ ଧେଇ ଧେଇ । କହିଲେ କହିବ ତୋର କଣ ଗଲା ? ତୁ କହିବାକୁ କିଏ ସେ ଲୋ । ତା' ଉଗୁରୁ ତ ଦିନୁ ଦିନବଢୁଚି ସାଆନ୍ତେ, ମୋ ଉପରେ ଷଣ୍ଢ ହେଇଚି ମତେ ଢେଳି କଲାଣି, ଗୋଟାଏ ପେଟକୁ ଅଲଗା ଗୋଟାଏ ହାଣ୍ଡି । କହିଲି ଆଲୋ ସବାଖାଇ ତୁ ଏଠି ରହିଚୁ କାହିଁକି ଲୋ, ଲାଜରେ ଆଉ ମୋ ମୁଣ୍ଡ ଉଠେଇ ପାରୁନାହିଁ । ପୁଅ ତ ମଲା, ତୋର ତ ଜାଣି ବୟସ ବେଳ, ତୁ ଯୋଗିନୀଖାଇ ଏଠି ତୋ ମୁହଁ ପୋଡୁଚୁ କାହିଁକି, ଆଉ କାହା ହାତ ଧରି ଚାଲିଯାଉନୁ କାଇଁକି ? ଓଲଟି ମତେ କହୁଚି କାହିଁକି ଯିବି ? ମୋ ମନକୁ ମନ ମୁଁ ତୋ ଘ'ଟିକି ଅଇଥିଲି କି ? ପୁଅ ମଲେ ମଲା, ମୁଁ ତ ଅଛି, ମୁଁ ଥାଉଁ ଥାଉଁ ମୋ ଭାଗଟା କିଏ ଛଡ଼େଇନେବ ? ଭଲାରେ ଭଲା, ବିଧାତା ତତେ ଏଇଆ ଜନମ ଦେଇଥିଲା -ମୋ'ରି ଛାତି ଉପରେ ଚେକା ପକାଇ ବସି ମୋ'ରି ଜିଭଟା ଓଟାରି ଓଟାରି ମୋ ରକ୍ତ ମାଉଁସ ଝୁଣିକିଣି

ଖାଉଥିବୁ - କି ଘର ଥିଲା ମୋର, କି ଘର ହେଲା, କୁଆଡ଼େ ଗଲା ଆମ ବାଉରିକୁଳ ଇଜ୍ଜତ ମହତ । ଦିନରାତି ଯେତେବେଳେ ଦେଖ କୁକୁର ପଶିଲା ପରି ମଣିଷ ପଲ ପଲ -କୋଉଟା ଓଳିତଳେ ନାକେଇଚି, କୋଉଟା ପିଣ୍ଡାରେ ଗୋଡ଼ ଲମ୍ବେଇ ବସି ପିକା ଟାଣୁଛି, କୋଉଟା କିଆବୁଦା ଉହାଡ଼ରେ ଛପି ବସି ଖଣ୍ଡିକାଶ ମାରୁଚି - କିଏ ଟାକରା ଫୁଟାଉଛି, କିଏ ଚୁଲିପଶା ସିଠି ମାରୁଛି, କାହାକୁ ମନା କରିବି ? ପଚାରିଲେ କହିବେ ଏଇଟା ତ ବିଲକୁ ଯିବା ବାଟ, ଏବାଟେ ଯିବାକୁ କ'ଣ ମନା ? ରାଇଜ ଲୋକଙ୍କ ଯିବା ବାଟ କ'ଣ ମୋରି ଦୁଆର ବାଟ କହିଲ ସାଆନ୍ତେ ! ଯେବେ କହିଲି ହଇଓ ଏ ବାଉରି ଘର ପିଣ୍ଡାଟାରେ ବସୁଚ କାଇଁକି, ତମୁକୁ କ'ଣ ଗଛମୂଳ ନାଇଁ ତେବେ କହିଲେ, କ'ଣ ହେଲା ବାଉରି ଘର ହେଲେ । ଆଜିକାଲି କ'ଣ ସେ ଯୁଗ କଥା ଅଛି, ଅଇନା ତ ସଭିଏଁ ସମାନ ଗୋଟାଏ ଛୁଆଁ ଛୁଇଁ ବାରଣ କ'ଣ, ଖରା ଲାଗିଲେ କି ଦେହ ଘୋଳି ହେଲେ, ଯାହାରି ହେଲେ ପିଣ୍ଡାରେ ବସିପଡ଼ିବୁଁ । ତମ ପିଣ୍ଡା କ'ଣ ଘୋରି ହୋଇଯାଉଚି ? ଆଉ ଘର ଭିତରୁ କିରି କିରି ହୋଇ ହସୁଥିବ ସେ । ଭଲା କହିଲ ସାଆନ୍ତେ ଏତେ ବାଟ ଥାଉ ଥାଉ ଖାଲି ମୋର ବାଟଟା ବାଟ, ସେଇଠି ସମସ୍ତିଙ୍କି ଘୋଳି ଲାଗିବ ପିଣ୍ଡାରେ ବସିବାକୁ, ମୂତ ମାଡ଼ିବ, ହଗ ମାଡ଼ିବ, ବାଡ଼ତଳେ ବସିବାକୁ, ଆଉ ତମ କାଳ ନାଇ ସାଆନ୍ତେ -'' ତେଜି ଉଠି ନେତେଇମା କହିଲା -''ତମ ବେଳେ ତେମେ ଥିଲ ଗାଁଯାକରେ ଗୋଟାଏ ବୋଲି ଷଣ୍ଢ, ତମେ ତ ପରମାର୍ଥ ଧରିଲ, ଅଇଛା ଗାଁ ଗୋଟାକ ଏକୁ ଆରେକ ମହାବଳି, ଗାଁଯାକ ସମସ୍ତେ ହେଲେ ଷଣ୍ଢ -ନା ମାନ୍ୟ ନା ମାନ୍ୟତା, କାହା କଥା ଶୁଣୁଚି କିଏ, ମାନୁଚି କିଏ ? ସବୁ ଦେଖିବନାଇଁ ଜଳିପୋଡ଼ିଯିବ-''

ନେତେଇମାର ବୋହୂ ଗାଁ ଭିତରେ ଗୋଟାଏ ସମସ୍ୟା, ସମସ୍ତେ ଜାଣନ୍ତି ସତେକି କାହାର କିଛି କହିବାର ନାହିଁ, କରିବାର ନାହିଁ -ଗାଁ ମଝିର ଦଳୁଆ ପଙ୍କୁଆ ପୋଖରୀଟା ପରି ସମସ୍ତେ ଅନୁଭବ କରନ୍ତି, ସେଇଟା ନଥିଲେ ଭଲ ହୋଇଥାନ୍ତା । ସେଠି ଏତେ ବିଲାତିଦଳ ଭିଡ଼ି ନ ରହିଥିଲେ ଗାଁଟାର ସ୍ୱାସ୍ଥ୍ୟ ଭଲ ହୁଅନ୍ତା -କିନ୍ତୁ କାଢ଼ିବାକୁ ହାତ ଉଠେନାହିଁ । ସଦୁପଦେଶ କରାଯାଏ ବହୁତ, କାମ ବେଳକୁ କିଛି ନାହିଁ ।

ନେତେଇମା ବିଡ଼ି ବିଡ଼ି ହଉଚି -''ମତେ ମରଣ ନାଇଁକି ତାକୁ ବାଡ଼ି ନାଇଁ- ସାତ ଶରଧାର ଯୋଉ ଜୀବନ, ସେ କେମିତି ପାଣିଫୋଟକା ପରି କୁଆଡ଼େ ଚାଲିଯାଉଚି ଲୋ, ଆଉ ଯାହାର ଅଲୋଡ଼ା ଜୀବନ ଖାଲି ହନ୍ତସନ୍ତ ଦହଗଞ୍ଜ, ତାଙ୍କ ବେଳକୁ ନଇ ପୋଖରୀ ନାଇଁ କି ବାଡ଼ି ନାଇଁ କି ମରୁଡ଼ି ନାଇଁ-''

ନା-ନା-ନା-ଅସମ୍ଭବ ଏ କଳ୍ପନା-ଅସମ୍ଭବ-ଅସମ୍ଭବ-ଦେହୀ ଖାଲି ଦେହର ବିକାରକୁ ଆବୋରି ସଂସାର ଜଞ୍ଜାଳକୁ ହେତୁ କରି କରି ଏମିତି କଲବଲ ଛଟପଟ ହୁଏ, ନ ହେଲେ ଆଉ କ'ଣ ଅଛି ?

ଜୀବନ-ସେ ସୁନ୍ଦର, ସେ କାମ୍ୟ-ବଞ୍ଚି ନ ଜାଣି ଧର୍ମକୁ ହୁଡ଼ି ଲୋକ ଜୀବନକୁ ଧିକ୍କାର ଦିଏ, ନାଚି ନ ଜାଣି ତାଳର ଦୋଷ-

ନେତେଇମା ଜାଣେ ନାହିଁ ।

ତା'ର ଶେଷ କଥା କେଇପଦ ମନରେ ଆଣିଥିଲା ଗୋଟାଏ ପ୍ରବଳ ପ୍ରତିବାଦର ନାହିଁ

ନାହିଁ-କିନ୍ତୁ ତା'ର ଆଗ କଥା-ତା'ର ବାହୁନା ଶୁଣୁ ଶୁଣୁ କେମିତି କୁତୁକୁତୁ ସଲ ସଲ ଲାଗିଥିଲା, କିଏ ଯେପରି କି ମୁଣ୍ଡର କେଉଁ ଚୋରା କେନ୍ଦ୍ରରେ ଟିପ ମାରି ମାରି ହଜିଲା ଧାରଣା ଚିଆଇଁ ଦେଉଛି । ମନେ ମନେ ସଂସ୍କାରକଙ୍କ ପ୍ରତିବାଦର ମାମୁଲି ଭାଷା ଆଉଣ୍ଡୁ ଆଉଣ୍ଡୁ ଆପେ ବଞ୍ଚି ହେଉଛି ଭୁଲିଯାଇଥିବା ଏକ ଦାୟିତ୍ୱହୀନ ଜୀବନ, ଜୀବନରେ ଗୋଟିଏ ଭୁଲ ସ୍ତର ପୁଣି କେତୋଟି ଆସୁଛି, ସୁଖଲାଗୁଛି ।

ନେତେଇମା'ର ବକ୍ତୃତା ମଝିରେ ଚକ୍ରପାଣିଙ୍କର ଦି' ଚାରିଟା ଦୀର୍ଘଶ୍ୱାସ ଉଠିଥିଲା । ଦୀର୍ଘଶ୍ୱାସ ଉଡ଼ିଗଲା । ଅନୁଶୋଚନା ଉଭେଇଗଲା, କୃଷ୍ଣ ନାମର ପାଟି ସ୍ଥିର ହୋଇ ରହିଲା, ଆଖି ରହିଲା ଦୂରକୁ ଡ଼େରି ହୋଇ । ହେଇ ସେହି ଫୁଲଭର୍ତ୍ତି କୃଷ୍ଣଚୂଡ଼ା କେଉଁ ଆଦିମ ରଙ୍ଗର ଆଦିମ ଭାବର ଉଚ୍ଛ୍ୱାସ ପରି ଠିଆହୋଇଚି । ଦୁର୍ଦ୍ଦାନ୍ତ ପବନରେ ଫଡ଼ ଫଡ଼ ହେଉଛି । ତା' ପଛ ଆଡ଼େ ଗାଁର ଚିରନ୍ତନ ଗଛ-ଗହଳି ଗଛ ସେ ପାଖେ ଚକ୍ରବାଳ ତୀରରେ କେଉଁଠି ହଜିଥିଲା ତାଙ୍କ ଯୌବନ, ଦୁର୍ଦ୍ଦାନ୍ତ ପବନରେ ସତେକି ଧାଇଁ ଧାଇଁ ଲେଉଟି ଆସୁଛି ।

ଏହି ପଟ୍ଟଭୂମିରେ ଘଟିଥିଲା ଗୋଟିଏ ସାଧାରଣ ଘଟନା -ନାତି ଦଣ୍ଡପାଣି ଖଣ୍ଡେ ବିସ୍କୁଟ୍ ଖାଇ ଖାଇକା ପଦାକୁ ବାହାରିଥିଲା । ବାଁହାତରେ ଆହୁରି ଦି'ଖଣ୍ଡ । ହାଫ୍‌ପ୍ୟାଣ୍ଟ ଆଉ ହାଫ୍ କାମିଜ୍ ପିନ୍ଧିଛି, କାନ୍ଧରୁ ଓହଳିଛି ଏକ ମୁଣି । ସେଥିରେ ସିଲଟ ବହି ଖାତା, ସେ ଇସ୍କୁଲକୁ ବାହାରିଚି । ନବଜ ଲଗେଇ ନାତି କହିଲା-''ଜେଜେ, ବିସ୍କୁଟ ଖାଉଚି । ଖାଇବ ଖଣ୍ଡେ ?''

''ଦେ, ଦେ-''

''ତମ ଦାନ୍ତରେ ହବ ନା ?-''

''ଦେ, ଦେ-''

''ଏଥିରେ ଡିମ୍ବ ପଡ଼ିଚି, ସାହାବ ହାତର ପାଣି ପଡ଼ିଚି, ଜାଣିଚି ଜେଜେ-''

''ଆରେ ଦେ, ଦେ-''

ଗେଲରେ ଗେଲରେ ଦଣ୍ଡପାଣିର ବେକ ବେଢ଼େଇଧରି ଗେଲରେ ଗେଲରେ ଚକ୍ରପାଣି ମହାପାତ୍ରେ ତା' ହାତରୁ ବିସ୍କୁଟ୍ ପଟେ ନେଇ ଧରିଲେ- ଦଣ୍ଡପାଣି ଆଶ୍ଚର୍ଯ୍ୟ ହେଲା । ପୃଥିବୀରେ ଏଇ କେଇଦିନର ଅଭିଜ୍ଞତାରେ ସେ ଦେଖିଛି, ଜେଜେ ଏ ଗୁଡ଼ାକ ଛୁଅନ୍ତି ନାହିଁ, ସତେକି ଛୁଇଁଲେ ଛୁଆନ୍ତା ଲାଗିବ । ବୋଉ ବି କହେ-''ଆଇଁଷ କି ବିସ୍କୁଟ କି ଡିମ୍ବ ହାତ କରିଥିଲେ ଜେଜେଙ୍କ ପାଖକୁ ଯିବୁ ନାଇଁ, ବୁଝି ଖବରଦାର, ସେ ଭକ୍ତିମାର୍ଗର ମଣିଷ ।'' ଭକ୍ତିମାର୍ଗ କ'ଣ ।''

''ଏମିତି ଯୋଉମାନେ ଏ ଗୁଡ଼ା ଛୁଅନ୍ତି ନାହିଁ, ଖାଲି ଠାକୁର ପୂଜା କରୁଥାନ୍ତି ସେମିତିଆ ଲୋକେ ଭକ୍ତିମାର୍ଗର ମଣିଷ ।''

କାବା ଭାଙ୍ଗିଲା ପରେ ସେ କହିଲା -''ଜେଜେ ତେମେ ପରା ଭକ୍ତି ମଣିଷ ?'' କିନ୍ତୁ ସେତେବେଳକୁ ଜେଜେ ଖଣ୍ଡକୁ ଖଣ୍ଡ କରି ଦି'ଖଣ୍ଡ ବିସ୍କୁଟ୍ ପାଟିରେ ପୂରେଇ ସାରିଥିଲେ, ଦାନ୍ତଶୂନ୍ୟ ମଢ଼ିଆର ଚାପରେ ଚକି ଉପରେ ଚକି ପେଷିଲା ପରି କଳଟା ବୁଲୋଉଥିଲେ । ତାଙ୍କର ଯେପରିକି କିଛି ଘଟିନାହିଁ ସେହିପରି ସରଳ ସେ ମୁହଁର ଠାଣି-ନିତି ଦେଖା ଦୃଶ୍ୟ, ଗାଈ ଘାସଖାଉଛି -ଆଉ ଅଧିକ କ'ଣ ?

ଦଣ୍ଡପାଣିର ଆଁ, ଆଁ ହୋଇ ରହିଗଲା, ହଠାତ୍ ସେ ଅନୁଭବ କଲା ଦୁଇଟା ବିସ୍କୁଟ୍‌ର କ୍ଷତି, ଚିଲପରି ଛୁଟିଲା ଖଞ୍ଜା ଭିତରକୁ, ''ବୋଉ ଶୁଣିଲୁଣି-''

ଚୁଟି ନାମାବଳି ଦେହଯାକ, କୃଷ୍ଣଦ୍ୱାପ୍ର ହାତରେ ମୁଣିମାଳି ସମାଜପତି ଚକ୍ରପାଣି ମହାପାତ୍ରେ ବସି ରହିଲେ ସେହି ଜାଗାରେ । ଧୀରେ ଧୀରେ ଓଠ ଉପରେ ଜିଭର ଅଗ ବୁଲି ଲାଗିଲା -ଏକର ସେକର, ଏକର ସେକର-

ଡାକି କହିଲେ-''ନେତେଇମା, ତୋ ବୋହୂ ଆସେ ନାହିଁ ଏଠିକି କାହିଁକି ?''

''ଭଲ ଲୋକଙ୍କ ପାଖେ ବସିଲେ ଉଠିଲେ ସିନା ଦି'ପଦ ଭଲକଥା ଶିଖନ୍ତା ବା ମନ ବଦଳାନ୍ତା, ଘରଟାରେ ବସି ରହିଥିଲେ କ'ଣ ହବ ? କହିଦବୁ, ଶୁଣିଯିବ ।''

କହିଦେବି ସାଆନ୍ତେ କହିଦେବି- ''ସେ ଚାଣ୍ଡାଳୁଣୀ କ'ଣ ଶୁଣିବ ?'' ଦଣ୍ଡପାଣିର ବୋଉ ଶୁଣିଲେ, କଥାଟା ବିଶ୍ୱାସ କଲେ ନାହିଁ !

କିନ୍ତୁ ସେହି ସଞ୍ଜରେ ସବୁଦିନପରି ତାଟିଆରେ ଆଉଟା ଦୁଧ, ଥାଳିରେ ଖଇ ଚକଟା ଓ ପାଚିଲା କଦଳୀ ଦୋ'ଟି ଧରି ଯେତେବେଳେ ସେ ଆସିଲେ, ଜଳଖିଆ କରିବାକୁ ଅନୁରୋଧ କରିବାକୁ, ସେତେବେଳେ ଚକ୍ରପାଣି ହସିଦେଇ କହିଲେ, ''ଏତିକି ହବ ନାହିଁ, ଚାରି ଖଣ୍ଡି ବିସ୍କୁଟ୍ ଆଣି ଦିଅ, ଭଲ ଲାଗିଲା ।''

ବୋହୂ ଟାଟକା ହୋଇ ତାଙ୍କ ମୁହଁକୁ ଅନେଇଁ ରହିଲେ । ଚକ୍ରପାଣି କହିଲେ-

''ବିସ୍କୁଟ ଚାରିଖଣ୍ଡ ଆଣ, ଏଥର ଆମେ ବିସ୍କୁଟ ଆଉ ନା' ଖାଇବା''

''ଆପଣଙ୍କ ପାଇଁ ଆଣିବି ?''

''କାହିଁକି ଆଣିବ ନାଇଁ ? ତେମେ ସବୁ ତ ଖାଉଚ ପୁଣି, ଆମେ ଖାଇଲେ ଦୋଷ କ'ଣ ହେବ ?''

ଚୁପ୍‌ଚାପ୍ ଚାଲିଗଲେ ଚକ୍ରପାଣିଙ୍କ ସ୍ତ୍ରୀ । ସେହି ସଞ୍ଜରେ ତାଙ୍କଠି ଗୋଟାଏ ଆତଙ୍କ ପଶିଗଲା, ଭାବିଲେ -''ଶଶୁରେ କ'ଣ ଚାଲିଲେ ସତେ ! ଅତି କରୁଣ ହୋଇ ଗୋଟାଏ ବିଦାୟ ବେଳର ଧାରଣା, ଏତେଦିନଯାକେ ଖୁଣ୍ଟ ପରି ବସିଥିଲେ, ଖାଲି ନାଁଟା ଥିଲା ବୋଲି ଲୋକେ ମାନିଥିଲେ, ଘରଟା ଝଟକୁଥିଲା, ନହେଲେ ଯେତେ ଯାହା ହେଲେ 'ଯେ' ତ' ବାରବୁଲା ଚାକିରିଆ, ଯେଉଁଠିଥିଲେ ହେଲେ ସ୍ଥିର ହେବାକୁ ବେଳ ନ ଥାଏ । ଏ ସତେ ବୁଝିବେ ଗାଁ, ଘର, ଜମି କଥା ? ଲୋକେ କହନ୍ତି ମରିବା ଆଗରୁ ଲୋକେ ପ୍ରକୃତିଛଡ଼ା ଦିଅନ୍ତି, ସେତେବେଳେ ଏଣୁତେଣୁ ଖାଇବାକୁ ମନ ବଳାନ୍ତି, ତେବେ ନିଶ୍ଚୟ ସେଇଆ ଘଟିବ ଯାଙ୍କର । ଲାଗିଲା, ଘରକୁ ସତକୁ ସତ ମୃତ୍ୟୁ ଆସୁଛି, ପଦାର ଅନ୍ଧାରର ଆଜି ନୂଆ ଅର୍ଥ ନୂଆ ରୂପ, ଘର ଚାରିପାଖ ନଡ଼ିଆଗଛ ଉପରକୁ ଅନେଇଁଲେ ଲାଗୁଥିଲା ସେହି ଗହଳି ବାହୁଙ୍ଗା ସନ୍ଧିରେ ଅନ୍ଧାର ଭିତରେ କ'ଣ ଗୋଟାଏ ଲୁଚି ବସିଛି, ଘଞ୍ଚ ବରଗଛକୁ, ସାହାଡ଼ା ବୁଦାକୁ ଅନେଇଁ ହେଲାନାହିଁ, ସେଠି ବି କ'ଣ ସତେକି ଅଜଣା ଭୟ । ଖୁଡ୍ କରି ହେଲେ ସେ ଚମକି ପଡୁଥିଲେ । ଚେମେଣି ଚଢ଼େଇ ଓରା ବାଉଁଶ ତଳେ ଫଡ଼ ଫଡ଼ ହେଲାବେଳେ ନିରେଖି ଚାହୁଁଥିଲେ -ପେଚା ନୁହେଁ ତ ! ତାଙ୍କର ସ୍ଥିର ବିଶ୍ୱାସ ଆସିଥିଲା, ମରଣ ଆସୁଛି, ହେଇ ଆସିଗଲା ପରି ।'' ତହିଁ ଆରଦିନ ସ୍ୱାମୀଙ୍କ ପାଖକୁ ଭାଷା ଲେଖିଦେଇ ଡାକକୁ ପଠାଇଦେଲେ ।

କିନ୍ତୁ ସେହି ଗୋଟାଏ ରାତିରେ ବିସ୍କୁଟ୍ ଖାଇ ଚା' ଖାଇ ଚକ୍ରପାଣିଙ୍କର ଯାହା ପରିବର୍ତ୍ତନ ହୋଇଥିଲା, ସେ ଅବସ୍ଥା ମରିବାଠୁଁ ବହୁଦୂର । ଭାଗବତ ପୋଥି ନାଁକୁ ଖୋଲିଲା, ଇଚ୍ଛା ହେଲା ପଦାରେ ଯାଇ ଅନ୍ଧାରରେ ଟିକିଏ ବସେଁ, ଆଜି ପବନରେ ହଜିଲା ହାତର ସାଉଁଳା ଆଉଁସା ଅଛି, ଆଉ ମନ ହେଉଛି ଦେହଟାକୁ ମାଟିରେ ଭରାଦେଇ ତାରାଫୁଟା ଆକାଶ ଉପରକୁ ମନଟା ହାଉଲେ ଉଡ଼େଇ ଦେବାକୁ -ପିଲାଏ ଯେମିତି ଘୁଡ଼ି ଉଡ଼ାନ୍ତି ସେହିପରି । ଆଜି ଠାକୁରଙ୍କ ନାଁ ନେଲାବେଳକୁ ମନ ଭିତରେ ହଠାତ୍ ନାନା ଅଭିଳାଷ ମୁଖର ହୋଇ କଥା କହିବାକୁ ଲାଗିଲେ, ମୁଣ୍ଡ ଭିତରେ ବହୁତ କଥାଭାଷା, ନିରୋଳା ହେଲେ କାନ ଶୁଣିବାକୁ ଚାହେଁ କ'ଣ ସେ କଥା କୁଆଡ଼ିକି ତା'ର ଗତି । କୃଷ୍ଣ କୃଷ୍ଣ କହି କହି ଆଖିବୁଜି ଦେଇ ଘଡ଼ିଏ ବସିପଡ଼ିଲେ ବହୁଦିନର ଅଭ୍ୟାସ ଅନୁଯାୟୀ । ପ୍ରଥମେ ଅନ୍ଧାର ତା'ପରେ ଆଲୁଅ ତା'ପରେ ଖାଲି ଅଧ ଅଧ ନେଳି ଆଲୁଅ ତା'ପରେ କେଉଁ ଚିହ୍ନା ଛବିର ଚତୁର୍ଦ୍ଧାମୂର୍ତ୍ତି, ତା'ର ଚାରିପାଖ ଆବୋରି ଗୋଟିଏ ଧଳା ଓଡ଼ିଆ ଅକ୍ଷରରେ ଓଁ କାର, ସେଥିରୁ ତାରା ଆଲୁଅର ଧାସ ପରି ଧାର ଧାର ହୋଇ ଧାସ ଛିରିକିଛି ନେଳି ଆକାଶକୁ । ଏହିପରି ଏକ ଦୃଶ୍ୟ ଦେଖି ଦେଖି ସେ ଆନନ୍ଦ ପାଉଥିଲେ । ଆଜି ହଠାତ୍ ସତୁରିବର୍ଷର ସଂସ୍କାର ବଦଳେଇ ଦେଇ ଚାହା ବିସ୍କୁଟ୍ ଖାଇଦେଲା ପରେ ଯେତେବେଳେ ସେ ଅଭ୍ୟାସ ଅନୁସାରେ ଆଖିବୁଜି ବସିଲେ, ସେତେବେଳେ କୌଣସି ସ୍ପଷ୍ଟ ଦୃଶ୍ୟ ଦେଖିବାକୁ ମିଳିଲା ନାହିଁ । ଅନ୍ଧାର ଦେଖିଲା ପରେ ପରେ ସ୍ପଷ୍ଟ ଅନୁଭୂତ ହେଲା ଦୀପର ଧାସ ଆଖିପତା ଉପରେ ପଡୁଛି, ଅନ୍ଧାର ଜଳ ଜଳେଇଲା, ଅନ୍ଧାରହିଁ ରହିଲା, ତା'ପରେ ଓଟାରି ଓଟାରି ଆଖିପତା ମାଡ଼ିରଖିବାକୁ ଚେଷ୍ଟା କଲାବେଳେ ଅତୀତର କେତେ ମୁହଁ ମନେପଡ଼ିଗଲା, ଇଚ୍ଛା ହେଲା ଆଖି ଖୋଲି ହେତୁ ପକାଏଁ, ଭାବେଁ । ଭାଗବତ ବନ୍ଦ କରିସାରିଥିଲେ, ଆଖି ଖୋଲିଦେଲେ । ହଠାତ୍ ସନ୍ଦେହ ହେଲା - ଭଗବାନ ଦେଖାଦେଲେ ନାହିଁ ଆଜି, ଭଗବାନ୍ ରାଗିଲେ କି ?

ସନ୍ଦେହଟା ଆପଣା ଆପେ ମେଣ୍ଟିଗଲା ଶାସ୍ତ୍ରର ଯୁକ୍ତିରେ -ସେତ ନିର୍ଗୁଣ, କ୍ରିୟାରେ ସେ ଭାଗୀ ହୁଅନ୍ତି ନାହିଁ, ସେ ରାଗିବେ କାହିଁକି ? କାହାର କ'ଣ ଅନିଷ୍ଟ କରିଛନ୍ତି ସେ ? ଏ ନୂଆ ଇଚ୍ଛା ଆସିଲା ବା କାହିଁକି ଯଦି ସେ ଇଚ୍ଛା ଉପୁଜେଇବାରେ ଈଶ୍ୱରଙ୍କର ହାତ ନାହିଁ; ତ୍ୟାଗର ମାର୍ଗ ଦେଖାଇ ସାରିଛନ୍ତି ସେ ବହୁତ ବର୍ଷ, ଏଣିକି ସେ ଦେଖାଇଛନ୍ତି ଭୋଗର ମାର୍ଗ, ଆଉ ଭାଗବତ ତ କହିଛନ୍ତି, ''ଆତ୍ମା-କୃଶଳେ ସର୍ବସିଦ୍ଧି, ଉଦ୍ଧବ ପଚାରୁ ତୁ ବିଧି-'' ନା ଏଇପରି କ'ଣ ।

ସନ୍ଦେହ ଉଭେଇଗଲା । ଅତି ସହଜରେ ସେ ବିଶ୍ୱାସ କଲେ, ତାଙ୍କରି ଇଚ୍ଛାହିଁ ଭଗବାନଙ୍କ ଇଚ୍ଛା । ଦୁହେଁ ଅଭିନ୍ନ ।

ପରମ ଉତ୍ସାହରେ ଆପଣା ପ୍ରତି ଅନୁକମ୍ପା ଦେଖାଇ ସେ ଭାବିଲାଗିଲେ -ଆପଣାଠିଁ କେତେ କଳରବ ରହିଛି -ପ୍ରବୃତ୍ତି ଓ ଅଙ୍ଗପ୍ରତ୍ୟଙ୍ଗ ଏକାଠି ହୋଇ ଚହଳ ପକାଇ ଉଠୁଛନ୍ତି - ଆମେ ପାଇନୋହୁଁ - ଆମେ ପାଇନୋହୁଁ । ଈଶ୍ୱରଙ୍କ ମନ୍ଦିରରେ, ପରମ ଧର୍ମକ୍ଷେତ୍ରରେ ଦିଶୁଛନ୍ତି ଖାଲି ଭୋକିଲା ଭିକାରୀ ପଲ ପଲ, ସେମାନେ ପାଟି କରୁଛନ୍ତି, କ'ଣ ହେବ ତାଙ୍କର ଗତି ! କ'ଣ ହେବ ତାଙ୍କର ଉପାୟ ? ନ ମରୁଣୁ ନିଜେ ଯେପରିକି ଏକ ଅତୃପ୍ତ କ୍ଷୁଧାମୟ ଅମୋକ୍ଷ ଆତ୍ମା, ଏତେ ଇଚ୍ଛା ଏତେ କାମନାର ଅଶାନ୍ତ ବ୍ୟକ୍ତିତ୍ୱ ଘେନି କି ଉପାୟରେ ମଣିଷ ଯାଇପାରେ ସ୍ୱର୍ଗକୁ ? ହୁଏତ ଗୋବିନ୍ଦଙ୍କର ଉଦ୍ଦେଶ୍ୟ କେବଳ ଏତିକି ଦେଖାଇ ଦେବା -କିନ୍ତୁ କାହିଁ ସମୟ ଆଉ ? କାହିଁ ବଳ ? କାହିଁ ଶକ୍ତି ?

ଅଶାନ୍ତ ହୋଇ ଭାବିରହିଲେ ବହୁତ ବେଳ, ସେ ଭାବନାର ଅନ୍ତ ନାହିଁ, ସେ ସମସ୍ୟାର ସମାଧାନ ନାହିଁ ।

ଯେପରିକି ଆନନ୍ଦକର କେଉଁ ସର୍ଜନ ଆରମ୍ଭ କରିଦେଇ ହଠାତ୍ ସେ ଶୋଇପଡ଼ିଥିଲେ, ତା'ପରେ ସମୟ ବିତିଯାଇଛି, ପରିସ୍ଥିତି ବଦଳି ଯାଇଛି । ନିଦ ଭାଙ୍ଗିଲା ବେଳକୁ ବାକି କାମ ଗଦା ହୋଇ ପଡ଼ିଚି, ଉପକରଣ ନାହିଁ କି ବଳ ନାହିଁ । ଏତେଦିନକେ ତୀବ୍ର ଅନୁଶୋଚନା ଘେନି ମୁହାଁମୁହିଁ ଦେଖାଦେଲା ଆପଣାର ବାର୍ଦ୍ଧକ୍ୟ - ଫମ୍ପା ଘଟ ଭିତରେ ହାଉ ହାଉ ପବନର ଭଉଁରି ଖେଳ, ତା'ର ଗୋଟାଏ ନାଦ -'ସମୟ ନାହିଁ, ସମୟ ନାହିଁ' ।

ହଜିଯାଇଥିଲା କେବେ କେଉଁ ସଙ୍ଗୀତର ମୂର୍ଚ୍ଛନା, ତା'ର ଶେଷ ଧାଡ଼ିକ ଯେପରିକି ଶୁଭିଯାଉଛି, ପୁଣି ଆଉ ଶୁଭୁନାହିଁ । ନିଭି ଯାଇଥିଲା କେବେ କେଉଁ ଆଲୁଅ, ତାର ନିଭିଲା ବେଳର ଶେଷ ଧାସ ପୁଣି ଆଉଥରେ ଦିଶି ଦିଶି ଯାଉଛି, ପୁଣି ଦୁଲୁକି ଆସୁଛି ଅନ୍ଧାର, ଚାଲିଯାଇଛନ୍ତି କେତେ ଲୋକ, କେତେ ଦୃଶ୍ୟ ହଜିଛି, ମୁହଁ ସଞ୍ଜ ଆଗର ଥମ୍ବିଲା ଆକାଶ ଆଗରେ ସ୍ଥୂଳ ବସ୍ତୁର ଅନ୍ଧାରି ଛବି ପରି ଠିଆହୋଇପଡୁଛନ୍ତି ସେସବୁ, ପୁଣି ଅନ୍ଧାରରେ ମିଶିଯାଉଛି ତାଙ୍କ ଆକୃତିର ପରିସୀମା । ନାମ ଫାଟିପଡ଼ି ହୋଇଛି ସହସ୍ରେ ନାମ, ସହସ୍ରେ କାମନା, ଆଉ ସେହି ଅନୁଶୋଚନାର କାନଅତରା ଘୋଷା - ସମୟ ନାହିଁ ସମୟ ନାହିଁ ।

ନୂଆ ଯୁକ୍ତିରେ ତଉଲି ଦେଖୁଛନ୍ତି ଆପଣାର ଅତୀତକୁ । ସେଠି ଭଦ୍ରତାର ଲଗାମ୍, ଖ୍ୟାତି ଅରଜିବାକୁ ପେଟ ଭୋକ ମୁହଁ ଲାଜ ଅବସ୍ଥା, ପରମାର୍ଥ ଓ ତ୍ୟାଗର ପିଠା ଗେରୁଆ, ପୋଥି ଘାଣ୍ଟିବା ଓ ପାଠ ମୁଖସ୍ଥ କରିବାର ଅନର୍ଥକ ପରିଶ୍ରମ । ସବୁ ସାନ ହୋଇଆସୁଛି, ଆପଣାଠି ଏକ ପ୍ରଚଣ୍ଡ କ୍ଷୁଧା, ଦୂରରେ ସମୁଦ୍ରର ଗର୍ଜନ । କର୍ତ୍ତବ୍ୟ, କ୍ରିୟା ଓ ନିଷ୍ଠାର ଏତେ ବର୍ଷର ଜୀବନ ଆପଣାକୁ ଲାଗୁଥିଲା ସଂକୀର୍ଣ୍ଣ ଓ ଅଯୌକ୍ତିକ, ଏତେ କରି ଦୁଃଖ ରୋଗ କି ମୃତ୍ୟୁକୁ ଅଟକାଇ ହୋଇନାହିଁ, ସବୁ ଝଡ଼ିପଡ଼ିଛି, ଆଉ ସେ ଫେରିବ ନାହିଁ ।

ରାତିରେ ଶୋଇଲାବେଳେ ଏତେ ମୁହଁ ପଛରେ ପୁଣି ସ୍ମୃତିଭରା ଦେଇଥିଲା ଆଜି ଦେଖିଥିବା ଛାଇଦେଲଉଟାଣି ବେଳର ଦୃଶ୍ୟ ଉପରେ, ସେହି କୃଷ୍ଣଚୂଡ଼ା ଗଛ, ସେହି କନ କନ କାଳୀ ଛଡ଼ା, ଆଉ ନେଡେଇମା'ର ଅତୀତ ଓ ତା' ବୋହୂର ବର୍ତ୍ତମାନ ଅବସ୍ଥା ଉପରେ । ଠିକ୍ କଥା, ନିତେଇ ମା'ର ବୋହୂକୁ ଦେଖିବାକୁ ପଡ଼ିବ, ଆସିବ ତ' ଉପଦେଶ ଶୁଣିବ । ନିଦ ହୋଇଗଲା ।

ତହିଁ ଆରଦିନ ସକାଳେ ଚକ୍ରପାଣି ବୋହୂକୁ ଡାକି ନୂଆ କଥା କହିଲେ -''ମୁଁ ଭାବୁଚି, ମାଛ ମାଂସ ଖାଇବାକୁ ହିଁ ପଡ଼ିବ । ଏ ଦେହ ରଖିବାକୁ ହେଲେ ପୁଷ୍ଟିକର ଖାଦ୍ୟ ଦରକାର । କେତେ ଲୋକ କହନ୍ତି, ମାଛ ମାଂସ ଖାଇଲେ ପାପ ହୁଏ, ଭୁଲ ବୁଝିଛନ୍ତି ସେମାନେ । ଆମେ ନ ଖାଇଲେ କ'ଣ ହେଲା, ଆଉ ଲୋକେ ଖାଉଛନ୍ତି ତ, ସେମାନଙ୍କ ପାଇଁ ତ ମାଛ ମାଂସ ହେବ, ଆମେ ଖାଇଲେ କେତେ ନ ଖାଇଲେ କେତେ, ଆମେ ଖାଇଦେଲେ କ'ଣ ଅଧିକ ପ୍ରାଣୀ ହତ୍ୟା ହୋଇଯିବ ନା ନ ଖାଇଲେ ଅଟକିବ ? ଆପଣା ରୁଚିର କଥା, ରୁଚି ହେଉନଥିଲା ଖାଉନଥିଲି, ରୁଚି ହେଲା, ଏଥର ଖାଇବି । ସହରରେ ବୁଲି ବୁଲି କ'ଣ ସବୁ ଭଲ ରନ୍ଧା ଶିଖି ଆସିବ ଘରା, ଭଲ କରି ରାନ୍ଧିବ, ଆଜିଠୁ ଆରମ୍ଭ ।''

ଦଣ୍ଡପାଣିର ବୋଉ ବିକଳ ହୋଇ ଭାବିଲେ, ଆହା ବିଚରା ବୁଢ଼ା ମଣିଷଟି ! ଖାଆନ୍ତୁ ଯାହା ମନ ହେଉଛି । କିନ୍ତୁ ପୁଣି ଏ କାହାଣୀ ସ୍ୱାମୀଙ୍କ ପାଖକୁ ଚିଠିରେ ଲେଖା ହୋଇ ଚାଲିଗଲା -''ତୁମେ ଶୀଘ୍ର ଆସ, ମତେ ତ କେମିତି କେମିତି ଲାଗୁଛି, ଯଦି କିଛି ଗୋଟାଏ ଘଟିଯିବ ମୁଁ ମାଇପି ଲୋକ, ତୁଲେଇ ପାରିବି ନାହିଁ ।'' ପଦାରେ କଥାଟି ପ୍ରଘଟ ନ କରିବାକୁ ହିଁ ଚେଷ୍ଟା କଲେ, କିନ୍ତୁ ଦଣ୍ଡପାଣି ଇସ୍କୁଲ ଯିବା ପିଲା, ଘରୁ ଇସ୍କୁଲ ଯାକେ ଓ ପୁଣି ଲେଉଟାଣି ସେ ତା'ର ନୂଆ ଜ୍ଞାନର ବ୍ୟାଖ୍ୟା କରି କରି ବୁଲିଲା -

''ଆମ ଜେଜେ ମାଛ ମାଂସ ଖାଇଲେଣି, ଏଥର ରୋଜ ଆମ ଘରେ ମାଛ ମାଂସ ହବ, ବୋଉ କହିଚି ।''

ଗାଁ ଲୋକ ଗୋଟି ଗୋଟି ହୋଇ ଗଡ଼ିବାକୁ ଲାଗିଲେ ଖାଲି ଦେଖିବାକୁ, ପ୍ରଥମେ ଅଳ୍ପ ଅଳ୍ପ, ତା'ପରେ ଧାର ବଢ଼ିଲା । ସଂସାରୀ ଲୋକେ ବିଶ୍ୱାସ କରିବାକୁ ନାରାଜ ଯେ ନଈ ବି ଗତି ବଦଳାଏ, ମଣିଷ ତା'ର ସ୍ୱଭାବ ବଦଳାଏ, ଅତି ବଡ଼ ଗଛ ବି ପବନରେ ଉପୁଡ଼ି ପଡ଼େ, ଯେଉଁଠି ଦିନେ ବସ୍ତି ବସିଥିଲା ସେଠି କେବେ ପାଣି ଗଣ୍ଡ ବି ହୁଏ, କିମ୍ବାର ଦସା କରେ । ପୁରୁଖା ଲୋକେ ଧରି ନେଇଥିଲେ, ମରିବା ପୂର୍ବରୁ ଚକ୍ରପାଣି ମହାପାତ୍ରେ ପ୍ରକୃତିଛଡ଼ା ହେଉଛନ୍ତି, ଖୁବ୍ ଶୀଘ୍ର ହିଁ ଆସୁଛି ମରଣ, ସେତେବେଳେ ଆଉ ପିଣ୍ଡାରେ ବସିଥିବା ପାକଲା ଆମ୍ବ ପରି ବୁଢ଼ା ନଥିବେ, ଗାଁର ଗୋଟିଏ ସାତ ସାରରେ ସାର ମୁଣ୍ଡ ହଳିଯିବ । ତେଣୁ ସେମାନେ ପେଟପୂରା ଭୋଗ କରିବାକୁ ଆସିଥିଲେ ତାଙ୍କ ସନ୍ନିଧାନ । ଗାଁର ଟୋକାଏ ନବଙ୍ଗ ଦେଖିବାକୁ ଆସିଥିଲେ, ବୁଢ଼ାର ମୁଣ୍ଡ ବିଗିଡ଼ିଛି, ଚାହୁଁ ଚାହୁଁ ହୁଏତ ସେ ଥେଇ ଥେଇ ହୋଇ ନାଚିବ, ଏଡ଼େ ବଡ଼ ମଜା ଛାଡ଼ିଦେବା ଉଚିତ ହେବ ନାହିଁ । ତେଣୁ ସେମାନେ ତୁନିତାନି ଆସି ଠିଆ ହୋଇ ରହିଲେ । ଘଟନା ଶୁଣି ମନରୁ ତାଙ୍କ ପ୍ରତି ସମ୍ମାନ ଉଡ଼ିଯାଇଛି, ଚିର ଅଭ୍ୟାସର ''ଦଣ୍ଡବତ ଓଳିକି-'' ବି ଅନେକେ ଭୁଲିଗଲେ । କେତେକଙ୍କ ମନରେ ଥିଲା କରୁଣ ସହାନୁଭୂତି ଆଉ କେତେକଙ୍କ ମନରେ କେବଳ ନିର୍ଦ୍ଦୟ ଉପହାସ; କିନ୍ତୁ ମଝିର କରଛଡ଼ା ଦେବାର ସମ୍ଭ୍ରମମିଶା ଭୀତି ଯେପରିକି ଅପସରି ଯାଇଥିଲା । ଲୋକେ ପାଖକୁ ଆସି ଠିଆହେଲେ, କତିରେ ବସିଲେ, କିଛି ନ କହି ଚାହିଁରହିଲେ ଖାଲି ଘଡ଼ିଏ ବେଳ ।

ହଁ ପରିବର୍ତ୍ତନ ସ୍ପଷ୍ଟ ଆଖିରେ ପଡୁଛି । ଯେ ଥିଲେ ମୌନୀ, ଯେ ଯାହା କହୁ କୃଷ୍ଣ- କୃଷ୍ଣ- କହି ମୁଣ୍ଡ ଟୁଙ୍ଗାରୁଥିଲେ । ଆଉ ଆଜି ସେ ମୁଖର, ସମସ୍ତିଙ୍କ ପାଇଁ ଅଛି କିଛି ହସ, କିଛି କଥା । ଯେପରିକି ଏତେଦିନ ବନ୍ଦୀ ହୋଇ ରହିବା ପରେ ଆଜି ସେ ପଦାକୁ ଆସିଛନ୍ତି, ହଠାତ୍ ଲାଗୁଛି, ସମସ୍ତେ ତାଙ୍କୁ ହିଁ ସମ୍ବର୍ଦ୍ଧନା ଦେବାକୁ ଆସିଛନ୍ତି, ସମସ୍ତେ ତାଙ୍କରି ହିତକାମୀ, ସ୍ନେହୀ ବନ୍ଧୁ, ସଂଖୋଳି ଆସିଛନ୍ତି କେବଳ । ଆଉ ଏହି ଗଣ-ସାନ୍ନିଧରେ ବିକଶି ଉଠୁଛି ତାଙ୍କର ମୁକ୍ତ ବ୍ୟକ୍ତିତ୍ୱ-

''ଆସ, ଆସ, ବସ ବସ, ଆରେ କିଏ ଅଛ, ପାନ ଆଣରେ । ଗଛରେ କ'ଣ ପଇଡ଼ ନାହିଁ ? ଚଢୁ ଜଣେ, ଖରାରେ ଆସଚନ୍ତି ଏମାନେ, ପଇଡ଼ଟିଏ ହେଲେ କ'ଣ ନାଙ୍କେରା ହେବ ? ହଁ, ବସ ବସ-କ'ଣ କହୁଥିଲିଟି, କହୁଚି ରଇଥା-କ'ଣ ସୋଇଁ ପୁଅ, ତାଷ ବେଉସା ଭଲ ଚାଲିଚି ତ ? ତମର କ'ଣ ଚିନ୍ତା, ଆପଣା ହାତେ ହାତେ କାମ, କୋଉ କାହା ଉପରେ ନିର୍ଭର ରଖିଚ ଯେ ପରେଇ ଅଛି ? କି ବେହେରାଏ, କେମିତି ଚାଲିଛି କାମଦାମ ? ତମେ ଟିକିଏ ତମ ସାହିଲୋକଙ୍କୁ କହ, ପାଣି

ମିଶେଇଲେ କ'ଣ ଦୁଧ ବେଶି ହବ ? ବେଶି ପଇସାକୁ ଆଶା ତ ଭଲ ଗାଈ ରଖ, ବେଶି ବେଶି ଦୁଧ ହଉ, ମାଠିଆ ମାଠିଆ ପାଣି ମିଶେଇଦେଲେ କୋଉ ଯଶ, ସେ ପଇସା କୋଉ କାମକୁ ପାଏ ? କିହୋ ଶତପଥୀଏ, ବାପେ ତ ଟୋଲ ବସେଇ ସଂସ୍କୃତ ପଢ଼ୋଉଥିଲେ, ଏବ କାଳକୁ ବିଦ୍ୟାଟା ବି ଟୋଲା ହୋଇ ରହିଲାଣି, ଖାଲି ଚଟକଣିରେ ତାଳି ମାରିଦେଲେ ସଂସ୍କୃତ ହୋଇଗଲା, ଏଇ ହାଓ୍ବା ଚାଲିଥିବ ନା ବଦଳେଇବାକୁ ଚେଷ୍ଟା ଯତ୍ନ ହେବ । ଆସିଲ ସବୁ, ଭାରି ଭଲ ହେଲା । ଏ ଗାଁ ବିଷୟରେ କେତେ କଥା କହିବାକୁ ଥିଲା କ'ଣ ତ ମନେପଡୁନାଇଁ, ରଇଥା, ଧିରେ ଧିରେ ମନେପଡ଼ିବ । ହଁ ଏ ଟୋକାଗୁଡ଼ାକ ଏମିତି ନିର୍ଜୀବା ହେଇଯାଉଛନ୍ତି କାହିଁକି ? ଆଗ କାଳେ ଦେଖିଚ ତ, ମଣିଷ ଥିଲେ, ସକାଳ ତିନି ପା' କଞ୍ଚା ଚୂଡ଼ା ଅଣ୍ଟିରେ ପଶିଲା ତ ଆଉ ଘଡ଼ିକେ ନାଇଁ, କୁଆଡ଼େ ହଜମ୍ ହେଇ ପାର ହୋଇଯାଇଥିବ । ସେଇଠୁ କଟକି ଅଧସେର ଚାଉଳର ବଗଡ଼ା ଭାତ, ଅଧସେରିଆ କଂସାରେ କଂସାଏ ଲେଖାଁ ବିରିଡ଼ାଲି, ଗୋଟାଏ ବଡ଼ ଶୁଖୁଆ । ସେ ଖାଦ୍ୟ ନାହିଁ, ସେମିତି ଖାଇଲାବାଲା ନାହାନ୍ତି, ସେମିତି ମାଲ ବି ନାହାନ୍ତି, ଆଉ କେଡ଼େ କେଡ଼େ ପିଠାମାନ - କେଡ଼େ କେଡ଼େ ବଡ଼ି ! କେଡ଼େ କେଡ଼େ ପିଠା-ଏବର ଏ ବୋହୂ ଝିଏ ତ ତା' କରିବାକୁ ଭୁଲିଗଲେଣି-''

କଥା କହି କହି ଥକାମାରି ବସିରହିଲେ କିଛି ବେଳ, ଯେପରିକି ସେ ସେହି ପିଠା ସ୍ୱପ୍ନ ଦେଖୁଛନ୍ତି । ଜାଣିବା ଲୋକେ ମୁହଁ ଚାହାଁଚାହିଁ ହେଲେଣି, ଆହା, ବୁଢ଼ା ବିଚରାଙ୍କର ପିଠା ଖାଇବାକୁ ମନ ହୋଇଛି, ଘରେ ଘରେ ଏଥର ବୋହୂ ଝିଅ ଲାଗି ପଡ଼ିବେ, ଖାଉନା ମଣିଷଟା ପେଟ ପୂରେଇ, ପିଠା ଆସିବ । କିନ୍ତୁ ତାଙ୍କର ପ୍ରତ୍ୟେକ କଥା ସମବେତ ଜନତା ମନରେ କିଛିନା କିଛି ପ୍ରତିକ୍ରିୟା ଉପୁଜାଉଛି, କିଏ ଘେନୁଛି କେଉଁ ଅର୍ଥରେ, କିଏ ଭାବୁଛି ଏ ପାଗଳ, କିଏ ଭାବୁଛି ନା ଏ ସାର କଥା । ଗୋଟାଏ କଥା ଅତି ସ୍ପଷ୍ଟ, ଏ ଭାଷଣରେ ନାହିଁ ଶାସ୍ତ୍ରର ପରମାର୍ଥ କଥା କିଛି, ଖାଲି ଏଥିରେ ସଂସାରୀ ଲୋକର ଜୀବନ ଧାରଣର ସାଧାରଣ ସମସ୍ୟା । ଏତେ ବଡ଼ ପରମାର୍ଥ ନିଷ୍ଠାପର ଧାର୍ମିକ ବୁଢ଼ାଙ୍କ ମୁହଁରେ ଖାଲି ଏଇ ମଡ଼ା ମାଟିର କଥା, ଆକାଶର କଥା ନାହିଁ । କେତେ ବୁଢ଼ା ଫଁ ଫଁ ଦୀର୍ଘନିଶ୍ୱାସ ଛାଡ଼ିଲେ, ଚକ୍ରପାଣିଙ୍କ କଥାର ଧାରାରେ ସେମାନେ ଦେଖିଲେ ନରକ ଆଉ ପ୍ରଳୟର ବିଭୀଷିକା - ଏତେ ଶାସ୍ତ୍ର ପଢ଼ି କ'ଣ ଏହି ହେଲା ଫଳ ଯେ ଏଡ଼େ ବୋଧା ପାକଲା ବୁଢ଼ାଙ୍କ ତୁଣ୍ଡରେ ଶାସ୍ତ୍ର ଉପଦେଶ ପଦେ ହେଲେ ନାହିଁ ! ନା ଏ କଳିଯୁଗର ହିଁ ନିୟମ, ପବିତ୍ର ଲୋକେ ଆଚାର ଛାଡ଼ିବେ, ଦାବାଜି ସଂସାର କରିବେ, ସବୁ ଓଲଟିଯିବ, ଭୁଷୁଡ଼ିପଡ଼ିବ, ଭାଙ୍ଗିଯିବ ।

ଦମ୍ ନେଇ ବୁଢ଼ା କହିବାକୁ ଆରମ୍ଭ କଲେଣି-

''ଅସଲ ହଉଚି ବଳ ବୟସ, ନୀରୋଗ ଦେହ । ସେତକ ନ ଥିଲେ ସବୁ ବିଗିଡ଼ା । ହଜାରେ ପଣ୍ଡିତ ହେଲେ କ'ଣ ହେବ ? ପ୍ରାଣଟା ବଳଟା କ'ଣ କିଏ ଦେଇଦେବ କାହାକୁ ? ପିଣ୍ଡରେ ପ୍ରାଣ ଥିଲେ ତ ?''

ଗୁଲୁ ଗୁଲୁ କରି ଯା' ମୁହଁରୁ ତା' ମୁହଁକୁ ଅନେଇଁଗଲେ, ଯେପରିକି କଥାର ଖିଅ ହଜିଗଲା । ପୁଣି ଲେଉଟି ଆସିଲାପରି ଥୁକିନା ନଣ୍ଡାଏ ଛେପ ପକାଇ ଦେଇ ପୁଣି ଆରମ୍ଭ କଲେ -''ଯୁଆଡ଼େ ଶୁଣ ଖାଲି ପ୍ରେମ ପ୍ରେମ ପ୍ରେମ -ଏ ଟୋକାଙ୍କର ଯେମିତିକି ଆଉ କିଛି ନାହିଁ । ମୁଁ ଏଠି ବଇଚି ବୋଲି ମୋ କାନଟା କ'ଣ ବନ୍ଦ ଅଛି ? ତୁମ ଗୀତ ସେଇଆ, ସେଇଥିପାଇଁ ତମର

ଏତେ ନାଟ ଯାତ୍ରାରେ ସଉକ୍ । କର, କିଏ ମନା କରୁଚି । ଅଣ୍ଟାରେ ତ ବଳ ନାଇଁ, ଦୁହିଁ ଆଣିଲେ ହାଡ଼ ମାଉଁସ ପଳେ, ତମେ କି ପ୍ରେମକୁ ଯୋଗ୍ୟ ? ମୁଁ ପଚାରୁଚି-'' ହୋ- ହୋ ହୋଇ ହସ ଉଠିଲା, ଉତ୍ସାହିତ ହେଲା ପରି ଚକ୍ରପାଣି କହିଲେ -''ଯାହା ମନ ତା' ଖାଅ, ଆଗ ବଳୁଆ ହୁଅ, ହଁ ଏଇ କଥା ତ କହିବି କହିବି ବୋଲି ଭୁଲିଯାଇଥିଲି -ଗାଁରେ ଖଣ୍ଡେ ପହିଲିମାନି ଆଖଡ଼ା କର, ଭେଦା ପକେଇ ଟଙ୍କା ଠୁଳ କରି ସମ୍‌ସେର ପୁରିଆ ପଠାଣ ପହିଲିମାନ ଗୁରୁ ରଖ-ସାଧନ ଭାଙ୍ଗ, ବାଡ଼ି ଖେଳ ମୁଦ୍‌ଗର ବୁଲାଅ, ଦଣ୍ଡ ପେଲ, ଯାହା ପାରି ତା' କର ମଣିଷ ହୁଅ-''

ଟୋକା ଭିତରୁ ଜଣେ ପଚାରିଲା-''ଆମେ କୁସ୍ତି ଆଖଡ଼ା କଲେ ଆପଣ ସେଠିକି ଆସିବେ ତ ?''

''କାହିଁକି ଯିବୁ ନାହିଁ ? ଆମେ କ'ଣ ମଣିଷ ନୋହୁଁ ? କୁସ୍ତିସିନା ନ ଲଢ଼ିବୁଁ, ଦେଖିବାକୁ କ'ଣ ମନା ଅଛି ?''

''ଦେହ ସଜାଡ଼ିବେ ବୋଲି ଆପଣ ମାଛ ମାଂସ ଖାଇବାକୁ ଆରମ୍ଭ କଲେ କି ?''

''ସେଇ ତ କଥା, ମୋ ମୁହଁରୁ ଛଡ଼େଇ ନେଲ । ବସି ବସି ଭାବିଲି ସବୁ ବିଷୟରେ ତ ମନ ଦେଲି ଆପଣା ଦେହ ପାଇଁ କଲି କ'ଣ ? ମରିବାକୁ ତ ହେବ, ବୟସ ବଳେଇଲାଣି, ତା' ଆଉ କିଏ ଅଟକେଇବ କହ । ତେବେ ଯେତେଦିନ ଥାଇଁ ସେତେଦିନ ମଣିଷ ପରି ନ ବଞ୍ଚିବା କାହିଁକି ?''

''ମାଛ ମାଂସ ଖାଇଲେ ଫେର୍ ହରିନାମ ?''

''ହରି ନାମ ଅଟକିବ ନାହିଁ । ହରି କୋଉଠି ନାହାନ୍ତି କହ ? ସେ ତ ଦେଖିବା କଥା ନୁହଁ, ଅନୁଭବ କରିବା କଥା, ଅନୁଭବ ଆସିବ ଦେହ ବାଟେ ଫେର୍ ମନ ବାଟେ । ଦେହ ଯଦି ଦେହ ହୋଇ ନଥିବ, ତେବେ ହରିଙ୍କି ଅନୁଭବ କରିବ କ'ଣ ? ସର୍ଦ୍ଦିରେ ମୁଣ୍ଡ ବଥାଉଥିଲେ କି ଜର ହେଇଥିଲେ କ'ଣ ପବନଟା ପବନ ପରି ଲାଗିବ ନା ପାଣିଟା ପାଣି ପରି । ଆଗ ଏ ଘଟ, ତାକୁ ଆବୋରି ସବୁ ।''

''ତେବେ ଏତେ ଦିନ ସେଗୁଡ଼ା ନ ଖାଉଥିଲେ କାହିଁକି ?''

''ଦେହର ଅଭାବ ନ ଥିଲା, ମନ ହେଉ ନ ଥିଲା ଖାଉ ନ ଥିଲି । ଦେହର ଦରକାର ନ ଥିଲେ ମନ ଆଦୌ ହବ ନାହିଁ । ଅଇଚ୍ଛା ଦରକାର ହେଲା, କ'ଣ ବିଗିଡ଼ିଗଲା ସେଥିରେ ? ଶାସ୍ତ୍ର କହିଚି, ଆସକ୍ତି ନ ଥିଲେ ସବୁକାମ କରି ହବ, ଫେର୍ କଇଁଚ ପରି ବେକ ଗୋଡ଼ ଓଟାରି ଦେଇ ଆପଣା ଖୋଳ ଭିତରେ, ଯେଉଁ ଲୟକୁ ସେଇ ଲୟ । ଆମେ ତ ଗୃହୀ, ଏମିତି କେତେ ବାବାଜି ଅଛନ୍ତି । ସେଥିରେ କିଛି ନାହିଁ, କୋଉଥିରେ କିଛି ନାହିଁ, ଆପେ ବଞ୍ଚିଲେ ବାପର ନାମ ।''

ଚାଲିଲା ନାନା ଜାତି ପ୍ରଶ୍ନ, ବୁଢ଼ା ଯଥାସାଧ ତା'ର ଉତ୍ତରଦେଲେ । ଗାଁ ଲୋକେ ପଚାରିବାକୁ ବାଗ ପାଇଲା ପରେ ଦେଖାଇ ବସିଲେ ଅଦମ୍ୟ କୁତୂହଳ, ସତେ ଯେପରି ବିଦେଶରୁ କିଏ ଜଣେ ଆସିଛନ୍ତି ଆଉ ସାମ୍ବାଦିକମାନେ ତାଙ୍କୁ ବେଢ଼ି ବସି ନାନା ବିଷୟରେ ତାଙ୍କ ମତ ପଚାରୁଛନ୍ତି । ସେ ଉତ୍ତର ବି ଲାଗିଲା ଠିକ୍ ସେହିପରି ବ୍ୟବହାରରେ, ଯେଉଁମାନେ ଶୁଣିଲେ ସେମାନେ ଚାରିଆଡ଼େ ପ୍ରଚାର କରି ଲାଗିଲେ, ତା' ଉପରେ ପୁଣି ଚାଲିଲା ସମାଲୋଚନା -''ହେଁ, ଭଣ୍ଡ ତପସ୍ୱୀ

-କ'ଣ କହନ୍ତି ନାଇଁ, ମାଛ ନ ଖାଉ, ମଛଲି ନ ଖାଉଁ, ମାଣ୍ଡିଆ କଙ୍କଡ଼ା ପାଇଲେ, ପୋଡ଼ିକରି ଖାଉଁ - ଦେହବାଟେ ଅନୁଭବ କରିବେ ହରିଙ୍କି -ଅଇଛା ଗୋଟାଏ ହରି ପାସୋର ଯାଇ ଆଉ ସବୁ ହରି ଆଖିରେ ଦିଶୁଛନ୍ତି -ବୋଇଲା ହରି ପଳେଇଲା ହରି ଗୋଡ଼େଇଲା ହରି ପଶିଗଲା ହରିରେ, ସେମିତିଆ ୟାଙ୍କ ହରି ।''

''ମୁଣ୍ଡର ଦହି ଛେନା ଛିଣ୍ଡି ଗଲାଣିମଁ, ମଥା ବିଗିଡ଼ା, କଣ ନାଇଁ କଣ ବକି ଯାଉଛନ୍ତି, ସେଥିରେ କଣ ବାଇଶ ଅଛି ?''

କିନ୍ତୁ ଚକ୍ରପାଣି ତୃପ୍ତ ଥିଲେ । ଲାଗିଲା, ଏତେ ଦିନକେ ସେ ତାଙ୍କର ସତ୍ୟ ସନ୍ଦେଶ ପ୍ରଚାର କରିପାରିଛନ୍ତି, ନିଶ୍ଚୟ ସେ ଚେର ମଡ଼େଇବ, ସଂସାରର ମଙ୍ଗଳ ହେବ । ଗପିବା ଆରମ୍ଭ କଲା ପରେ ତାଙ୍କୁ ପ୍ରଚାରକର ନିଶା ମାଡ଼ି ବସିଥିଲା, ଚାହୁଁଥିଲେ ସବୁବେଳେ ଲୋକେ କତିରେ ବସିଥାନ୍ତେ ଆଉ ସେ ଗପୁଥାନ୍ତେ । ମୁଣ୍ଡ ଭିତର କେମିତି ଝାଙ୍କିଲା ପରି ଲାଗୁଛି, କପାଳ ତତଲା; ପାଟି ଥରୁଛି, ବେଳେ ବେଳେ ଖନି ବାଜିଯାଉଛି, ତଥାପି ସେ ପଦାରୁ ଲୋକେ ଡାକିଆଣି କତିରେ ବସୋଉଛନ୍ତି, ଗପୁଛନ୍ତି । କଣା ଅଚୂତି ତେଲି ତେଲ ପସରା ମୁଣ୍ଡେଇ ଦିପହରବେଳେ ବିକି ବାହାରିଥିଲା, ହଠାତ ହାଙ୍କଶୁଣିଲା, ''ଶୁଣ ଅଚୂତ, ଆସ, ଝାଳ ମାର, ଛାଇରେ ବସ । ଆଚ୍ଛା ତମେ ଏମିତି ଦିନ ନାଇଁ ରାତି ନାଇଁ ଖଟି ମରୁଚ ଯେ, ଖାଉଚ ନା ଗଣ୍ଡାଏ ଭଲ କରି ଆପଣା ପେଟକୁ ? ନା, ଖାଉ ନ ଥିବ, ଖାଲି ମୋ ପୁଅ, ମୋ ନାତି, ମୋ ଭାରିଯା, ମୋ ବୋହୂ, ଏ ଗୁଡ଼ା କ'ଣ ? କି କଥା ଏ ? ଏ ଖାଲି ଲୁବ୍ଧକ ବନ୍ଧନରେ ପଡ଼ି ଛଟପଟ ହେବା କଥା । ଏ ଖାଲି ମାୟା ।'' ଅଚୂତ ମୁଣ୍ଡ ଟୁଙ୍ଗାରିଲା, ସତ କଥା ତ ମାୟା ନୁହେଁ ତ ଆଉ କ'ଣ ? ତେଣେ ବକ୍ତୃତାର ବରଷା ଗାଳୁଛି, 'ସବୁରି କର୍ତ୍ତା ତ' ଆଉ ଜଣେ, ଭଲା ତମେ ଆମେ ହାଇଁପାଇଁ ହେଲେ କାହାରି କିଛି କରି ପକେଇବା ? ତମେ ଯଦି ମୋ କଥା ମାନନ୍ତ, ତେବେ ପେଟେ ବାସି ପଖାଳ ଆଉ ପିଆଜ ଦେଇ ଗଡ଼ିଶା ମାଛ ପୋଡ଼ା ଏକାଠି ଖାଇଦେଇ ଥିରିକରି କାନି ପାରି ଦେଇ ଛାଇ ତଳେ ଘଡ଼ିଏ ଶୋଇପଡ଼ନ୍ତ, ଆଉ ଭାରିଯାକୁ କହନ୍ତ ନେ ମୋ ଗୋଡ଼ ଦି'ଟା କୋଡ଼ରେ ଥୋଇ ଆଚ୍ଛା କରି ଘଷି ଦେ, ପତି ଭକ୍ତି ଶିଖ୍ । ସେ ସୁଖ ଆଉ କୋଉଠୁ ପାଇଲ ? କି ସୁଖ ପାଇଲ ? ସବୁଦିନେ ଖାଲି ପେଟ ଭୋକ ମୁହଁ ଲାଜ, ପେଟରେ ଭୋକ ଗରଜି ଗରଜି ମଲା, କାହା ମୁହଁକୁ ଚାହିଁ ବି ପାରିଲା ନାହିଁ ମଣିଷ, ସେଇଠୁ ଯୋଉଁଠୁ ଆଇଷ ସରିଯିବ, ଖାଇ ହବ ନାହିଁ, ଝୁରି ହେଉଥିବ ଆହା, କାହିଁକି କଲି ନାହିଁରେ, ଭୋଗ ଭାଗ୍ୟ କରିବା ଲୋକ ଭୋଗ କଲେ, ମୁଁ ଖାଲି ଖୋଳପା ଗୋଟେଇଲି । ଅଚୂତ, ଯାହା କହୁଚି ମନ ଦେଇ ଶୁଣ, ଗୋପ୍ୟ ବିଦ୍ୟା ଏ ଶୁଣ-''

କଣା ଅଚୂତି ତେଲି ନିଃସହାୟ ହୋଇ ଚାରିଆଡ଼କୁ ଚାହିଁଲା, ତା'ପରେ ପେଟରେ ହାତ ଗେଞ୍ଜି ମୁହଁ କେମ୍ପେଇ ଗୋଟାଏ ''ଆହା-''କଲା, କହିଲା, ''ପେଟ ମୋଡ଼ି ହଉଚି, ପିଆଦା ଡ଼ାକିଲାଣି-'' ଆଉ ପସରା ଧରି ଉଠି ପଡ଼ି ଝଟ୍ ଝଟ୍ ପଳେଇଲା ।

ବୋହୂ ଆସି ଆଡ଼େଇ ହୋଇ ଠିଆହେଲେ, ତଳକୁ ମୁହଁ ପୋତି ଆସ୍ତେ ଆସ୍ତେ କହିଲେ, ''ବେଶି କଥା ଗପିଲେ ଦେହ ଖରାପ ହବ, ଖିଆପିଆ ବଢ଼େଇଦେଇ ଶୋଇପଡ଼ିଲେ ଭଲ-''

''ହଉ ହଉ ଶୁଣିଥାଅ ଦି'ପଦ, ଆମେ ଯେତେଦିନ ବଞ୍ଚିଛୁ । ପରେ ଆଉ କୋଉଠୁ

ପାଇବ ? ପାଟିଟା ତ ଅଛି । କଥା ନ କହିବି କେମିତି ?''

ଅଭିମାନ ହେଲା, ଲୋକେ ତାଙ୍କୁ ଭୁଲ୍ ବୁଝିଛନ୍ତି । ଆପଣା ଛାଆଁକୁ ହସିଦେଇ କହିଲେ, ''ସେଥିରେ ଆଉ ବିଚିତ୍ର କ'ଣ ଅଛିକି ? ଯେତେ ମହାତ୍ମା ଯେତେ ମହାପୁରୁଷ ସମସ୍ତିଙ୍କି ଲୋକେ ଭୁଲ ବୁଝୁଥାନ୍ତି, ଏ ଲୋକେ ! ଛାଡ଼ ଯାଙ୍କ କଥା, କୁକୁର ଲାଙ୍ଗୁଡ଼ ବାରବର୍ଷ ନଳିଭିତରେ ପୂରେଇ ରଖିଲେ ବି ସେ ଆଉ ସିଧା ହେବନାହିଁ । କ'ଣ କରାଯାଏ ? ଆପଣା କର୍ତ୍ତବ୍ୟ ତ କରିବାକୁ ପଡ଼ିବ । ଧର୍ମ ପ୍ରଚାର କରିବାର ସେହି ହେଲା ପନ୍ଥା, ଲୋକେ ଶୁଣିବୁନାଇଁ ଶୁଣିବୁନାଇଁ ବୋଲି ଧାଇଁ ପଳୋଉଥିବେ, ଆଉ ତୁମେ ଶୁଣିଯା ଶୁଣିଯା କହି ତାଙ୍କ କାନରେ ଧର୍ମନାଦ ଢ଼ାଳିଢାଳିକା ପଛେ ପଛେ ଧାଇଁଥିବ, ତେବେ ସିନା ବିଧର୍ମୀଙ୍କି ତାରି ପାରିବ ମୂର୍ଖଙ୍କୁ ବୁଝେଇ ପାରିବ; ଆଶା ଛାଡ଼ିଦେଲେ ତମେ ଯେମିତି, ସମସ୍ତେ ସେମିତି; ଅଧିକା କ'ଣ ?''

ଖାଇ ବସିଲାବେଳେ ବୋହୂଙ୍କୁ କହିଲେ, ''ଆମ ପାଇଁ କୁକୁଡ଼ା ଆଉ କୁକୁଡ଼ା ଡିମ୍ବ ରାନ୍ଧ ଏଥର । ମାଛ ମାଉଁସ ଖାଇବା ତ ଭଲକରି ଖାଇବା, ଆଉ ଅଧାଅଧି କ'ଣ ?''

ବୋହୂ ପାଟିରେ ଲୁଗା ମାଡ଼ିଦେଇ କହିଲେ, ''ହଉ ।''

ମାଛ ଲାଞ୍ଜକୁ ଆଉଁଷି ଆଉଁଷି ସେଥିରୁ ମାଂସ ଓଟାରୁ ଓଟାରୁ ମଲା ସ୍ତ୍ରୀ କଥା ମନେପକାଇ ଚକ୍ରପାଣି କହିଲେ, ''ଖାଇଲାବେଳେ ସତରଗୁଞ୍ଜା ହଉଥିଲା, ମୁହଁ ଛିଞ୍ଚାଡ଼ି ଦେଉଥିଲି, ସେ କେତେ ଲଗାନ୍ତି ଖାଅ ବୋଲି, ମୁଁ ମନା କରେଁ । ଆଉ ଅଇଛା ମନେ ମଟୁଛି । ହଉ, ମନସ୍କାମନା ପୂର୍ଣ୍ଣ ହେଲା ତ ଏଥର ?'' ମୁହାଁମୁହିଁ ଚାହିଁ କଥାଟା ଏପରି ଭାବେ କହିଲେ ଯେପରି ବୋହୂଙ୍କୁ ଲାଗିଲା ତାଙ୍କ ଶାଶୁ ତାଙ୍କ ପଛରେ ଆସି ଠିଆ ହୋଇଛନ୍ତି । ଚମକିପଡ଼ି ପଛକୁ ଚାହିଁଦେଇ ମୁଣ୍ଡ ଉପରେ ଲୁଗା ଓଟାରି ଆଣି ନିଜ ଦେହ ଉପରେ ''ଥୁଃ ଥୁଃ ଥୁଃ ଥୁଃ'' ହେଲେ, ବୁଢ଼ାଙ୍କ ସମ୍ବୋଧନରେ ସବୁ ଗୋଳିଆ ମିଶା ହୋଇଯାଇଥିଲା, କହିଲେ, ମତେ ବଳୋଉଥିଲ, ମୁଁ ମନା କରୁଥିଲି, ମୁଁ ବଳୋଉଛି ସମ୍ଭାଳ ଏଥର - ହଁ ଆରଓଳିକି ଡିମ୍ବହେବ, ହେଃ-ହେଃ-ହେଃ-''

ବୋହୂ ଆଗ ନାଲି ପଡ଼ିଗଲେ, କାନମୁଣ୍ଡା ଜଳିଗଲା । ତା'ପରେ ଅଜଣା ଭୟରେ ଦେହସାରା ଥରିଗଲା, ଡରି ଡରି ଚାହିଁଲେ, ସେତିକିବେଳେ ଲାଗିଲା-ସେ ଆସୁନାହାନ୍ତି କାହିଁକି ? କାହିଁକି ମୁଁ ମାଇମି ଲୋକଟା ଉପରେ ସବୁଯାକ ତୋଡ଼ ?

ସ୍ୱାମୀଙ୍କ ପାଖକୁ ଚିଠି ଲେଖିଦେଇ ସେ ନିଶ୍ଚିନ୍ତ ନଥିଲେ, ଲୋକ ଦୌଡ଼େଇଥିଲେ । ଆପେ ବରଗିବା ବି ଦରକାର ନଥିଲା, ଏଇ ବିଘଟଣ ଗାଁରେ ଘୁଙ୍ଗାଳି ହେଉଛି, ଖବର ଜାରି କରିବାକୁ ଲୋକେ ବାଦବୁଦିଆ ହେଲେଣି । ବେଶି ଦୂରରେ ନାହାନ୍ତି କମ୍ବୁପାଣି, ମୋଟେ ଆଠକୋଶ ବାଟ । ଆସନ୍ତେ ଭଲା, ସେ ଡାକ୍ତର ସେ ସମ୍ଭାଳନ୍ତେ ।

କମ୍ବୁପାଣିଙ୍କ ସ୍ତ୍ରୀ ଚାରିଆଡ଼େ ଦେଖିଲେ ବିଭୀଷିକା ।

ଆଜି ଦଣ୍ଡପାଣି ବହୁତ ଅଧିକ ଆଦର ପାଇଲା, ଅଡ଼ିବସିଲା, ସେ ଆଉ ପଢ଼ିବାକୁ ଯିବନାଇଁ । ''ନଯା ମୋ ବାପ, ମୋ ଧନ, ଖାଇପିଇ ଦେଇ ଶୋଇପଡ଼୍ ।'' ଖରା ଦିଶିଲା ଖାଁ ଖାଁ । ଚାଳ ଉପରେ ଗୋଟିକିଆ ଡାମରାକାଉଟା ଯେତେବେଳେ ବୋବେଇଲା, ଲାଗିଲା ସେ କିଛି ଅଶୁଭ କଥା କହୁଛି; ଡାହାଣ ଆଖିଟା ଡେଇଁଲା ପରି ଲାଗିଲା । ସାନ ଠାକୁରଘର ବଖରା ଭିତରକୁ

ଦେଖିଲାବେଳେ ଟଙ୍ଗା ହୋଇଥିବା ଯୁଗଳ ଛବିଙ୍କ ମୁହଁକୁ ସେ ଅନେଇ ପାରିଲେ ନାହିଁ, ଖଟୁଲି ଉପରେ ଚନ୍ଦନ ଲେପି ହୋଇ ପୋଥିଗୁଡ଼ିଏ ପୂଜା ପାଉଛି, ସବୁରି ସମଷ୍ଟି ଆଜି କେବଳ ତିରସ୍କାର, ଧମକ, ଭୟ । ଅମଙ୍ଗଳକୁ ଏଡ଼ିବାପାଇଁ ମନେ ମନେ ଦେବାଦେବୀଙ୍କ ସ୍ମରଣ କଲେ ।

ଚକ୍ରପାଣି ପଦାରେ ବସିଲେ । ଖରା ଭିତରେ ଛାଇତଳ ଲାଗୁଛି କେଡ଼େ ଶୀତଳ ! ଯାଃ, ଏଠି ସୃଷ୍ଟି ଅଛି । ଧୀରେ ଭାସିବାଲିଲା ଚେତନା -ସବୁଠି ସମ୍ବନ୍ଧର ଡ଼ୋରି ଲାଗିଚି, ମାଟି, ଆକାଶ, ଗଛ, ଛାତ, ଜନ୍ତୁ, ମଣିଷ; ସବୁଠି ସବୁଠି ମାଣ୍ଡେଇ ଯିବାକୁ ମନହୁଏ, କେମିତି କାଟିହେବ ଏ ବନ୍ଧନ ? ନୂଆ ଅର୍ଥ ଦିଶୁଚି ବିଚାର ଧାରାରେ, କଳ୍ପନାଠୁଁ ବାସ୍ତବ ସୁଖହିଁ ବଡ଼, ଆଉ ଯେତେ ଶାସ୍ତ୍ର, ସଂସ୍କାର, ବଡ଼ ବଡ଼ କଥା -ନିପାଇଲା ଲୋକଙ୍କୁ ସାନ୍ତ୍ୱନା ଦେବାପାଇଁ ସେସବୁ ଖଞ୍ଜା ହୋଇଛି । ଯାହା ଭାଗ୍ୟରେ ମିଠେଇ ଖାଇବା ନାହିଁ ତା'ରି ବେଶି ଦରକାର ଜାଣିବାକୁ ଯେ ମିଠେଇ ଖାଇଲେ ପେଟରେ କୃମି ହୁଏ । ବାଃ କେଡ଼େ ସରଳ ଏ ବ୍ୟାଖ୍ୟା ! ଏହିପରି ଆହୁରି କେତେ ବ୍ୟାଖ୍ୟା ମନେ-ପଡୁଛି । ଏଇ ତ ନୂଆ ଜ୍ଞାନ, ଜୀବନର ନୂଆ ଅର୍ଥ, ଆଖି ଆଗରେ ନୂଆ ଦର୍ଶନ ପାଇଁ ନୂଆ ଯନ୍ତ୍ର - କିଏ ଏପରି ଦେଖିଥିଲା କି କେବେ ? କେହି ନୁହେଁ । ଏକା ସେ ନିଜେ, ତା ମଧ୍ୟ ଏତେ ଡେରିରେ । ଏଇ ନୂଆ ଦେଖା ଜ୍ଞାନ ବିତରଣ କରନ୍ତେ ଭଲା ଜଗତକୁ ! ଫେର୍ ବିତରଣ ? କ'ଣ ହେବ ବାଣ୍ଟି ବାଣ୍ଟି, ଆପେ ଖାଇବାକୁ ତ ସମୟ ନାହିଁ । ସମୟ ନାହିଁ, ସମୟ ନାହିଁ, ଆଲୁଅ ସରିଯିବା ଆଗରୁ ମନଇଛା ଚରିଯିବା ଦରକାର ।

କୃଷ୍ଣଚୂଡ଼ାଗଛ ସୁନ୍ଦର ଦିଶୁଛି । ଅନ୍ୟଦିନ ପରି ତାକୁ ଦେଖିଲେ କୃଷ୍ଣ ମନେପଡୁନାହାନ୍ତି । ମନକୁ ଆସୁଛି ଜଗତର ଅଶେଷ ସୌନ୍ଦର୍ଯ୍ୟ, ଯାହାକୁ ହାତରେ ପାଇ ସୁଦ୍ଧା ଭୋଗ କରି ହେଲା ନାହିଁ । ଏମିତି ଏ ଗଛ ଠିଆ ହୋଇ ରହିଥିବ; ଆରକରେ କଦମ୍ବ ଗଛଟା, ଏମିତି ଥିବ ବାଡ଼ରେ ସାବେଜା ଆଲୁଡ଼ଙ୍କ, ଦହଲ ପତ୍ର ତା' ପଛକୁ ତା' ପଛ ସବୁଜ ଆଟପରି, ଆଗର ବାଙ୍କରେ ଉଦ୍ଧତ ଦର୍ପ, ଥିବ ଏହି ମାଳମାଳ ନଡ଼ିଆଗଛ ତଳେ ମଣିଷର ଚିରଶୀତଳ ଚାଳକୁଡ଼ିଆଗୁଡ଼ିକ, ସେଠି ଥିବ ସୃଷ୍ଟିର ଗୋପନ ରହସ୍ୟ, ଆଲୁଅ, ପବନ, ସବୁ ଏମିତି ଥିବ ସବୁଥିବ, ସବୁଥିବ, ଭୋଗକରି ହେଲା ନାହିଁ । ରଙ୍ଗ ରଙ୍ଗର ଭଙ୍ଗା କାଚପରି ଅତୀତର ଯେତେ 'ହେଲା ନାଇଁ' । ଯେତେ ଆଡ଼- ଲୁଚା ଆବେଗମୟ ସ୍ମୃତି ସବୁ ଯେପରିକି ବିଞ୍ଚିହୋଇ ପଡ଼ିରହିଛି ଆଖି ଆଗରେ । ଭଗ୍ନାଂଶ ହେଲେ ବି ଟାଣ, ଚିକ୍‌ଚିକ୍, ଆଂଶଆଂଶିଆ ଆଉ ସ୍ୱଚ୍ଛ ତା'ର ରୂପ, ଚାହାଣିରେ ଅମେଣ୍ଟା ଶୋଷା ବଢ଼ିଯାଉଛି, ବଢ଼ିଯାଉଛି । ଗାଁରେ ଚହଳ ଶୁଭିଲା, ଆକାଶରେ ଉଡୁଛି ଗୋଟାଏ ଉଡ଼ାଜାହାଜ, ତଳେ ଉଡୁଛି, ବାରି ହେଉଛି ପରିଷ୍କାର ଆକାଶ ବ୍ୟାପୀ ଗୋଟାଏ ଭଁ ଭଁ ଶବ୍ଦ । ଗାଁର ସ୍ତ୍ରୀ ପୁରୁଷ ବଡ଼ ସାନ ମୁହଁକୁ ଉପରକୁ ଟେକି ବେକ ମୋଡ଼ି ଦେଇ କିଲ୍‌କାଲିଆ ହୋଇ ପଦାରେ ଗଦା ହେଉଛନ୍ତି । ଉଡ଼ାଜାହାଜ ଚାଲିଗଲା, ଲୋକେ ଛପି ଗଲେ । ଚକ୍ରପାଣି ଅନୁଭବକଲେ ଗୋଟାଏ ଉଦାସ ନିଃସହାୟତା । ଦେହଟା ଶୀତେଇ ଉଠୁଚି । ଅନୁଭବ କରି ହେଉଛି, ଏହି ଲୋକ ଗହଳିକୁ ଧରି ତାଙ୍କର ବ୍ୟକ୍ତିତ୍ୱ ପୂର୍ଣ୍ଣ ହୋଇ ରହିଛି, ଦିନେ ଏ ବି କଟିଯିବ । ସେତେବେଳେ ଏ ମୁହଁ ସବୁ ଆଉ ଦିଶିବ ନାହିଁ । ଚିହ୍ନା ଜଣା ଯାହା, ଯେଉଁମାନେ, ସବୁ ପଛେଇ ରହିବେ । ନିଛାଟିଆ ଉଡ଼ାଜାହାଜ, କେଡ଼େ ନିଛାଟିଆ ଏଇଁ ଗଁ ଗଁ ଯେପରିକି ତା'ର ଅନ୍ତରର ଦୁଃଖ, ଏତେ ଉଞ୍ଚରୁ ତଳକୁ ନିଗିଡ଼ି ପଡୁଛି । ଲୋକେ କହନ୍ତି ପ୍ରାଣ

ଉଡ଼ିଯାଏ, ସେ କ'ଣ ଏମିତି ?... ତରତର ହୋଇ ଖେଳି ବୁଲୁଛି କେତେ ଅସଂଶ୍ଳିଷ୍ଟ ଧାରଣାର ଛବି କୁକୁଡ଼ା ଡିମ୍ବ, ସିଧା ଠିଆ ନଡ଼ିଆଗଛ, ବିଭା ହୋଇ ଆସିଲାବେଳେ ତାଙ୍କ ସ୍ତ୍ରୀଙ୍କର ରୂପ -ଏଥର ପତଲୋନ୍ ପିନ୍ଧିବାକୁ ହେବ । ପୁଅ ପିନ୍ଧେତ - ନେତେଇମାର ବୋହୂ -ଆଉ ଗୋଟାଏ ଅନୁଶୋଚନା ଯେ ସେ ଆସିଲା ନାହିଁ - ନିଶ୍ୱାସ ରୋକି ମୁହୂର୍ତ୍ତେ ଟିକିଏ ପ୍ରତୀକ୍ଷା କଲାପରି, ତା'ପରେ ଧନୁର ଗୁଣ ଶୁଣିଲାପରି ଗୋଟାଏ ଟଣକା କିନ୍ତୁ ଝଣ ଝଣ ହେଲାପରି ଅନ୍ତରସାରା -ତା'ପରେ ଆଉ ନାହିଁ । ଆଉ ନାହିଁ ।

ଡାକ୍ତରବାବୁ ଆସିଲାବେଳକୁ ସେ ସେହିପରି ଡେରେଇ ହୋଇ ବସିଥାନ୍ତି । ଆଖି ଖୋଲା ଥାଏ । ଗହଳି ବେଢ଼ିଥାନ୍ତି ।

ସଂକୀର୍ତ୍ତନ କରି ଗାଁ ଲୋକ ଉଠାଇ ନେଲାବେଳକୁ କୁହାକୋହି ହେଉଥାନ୍ତି ଓହୋ, କେଡ଼େ ବଡ଼ ପୁଣ୍ୟାତ୍ମା ଥିଲେ ।

# ଘରବାହୁଡ଼ା

ସକାଳୁ ମେଘ ଘୋଡ଼େଇଛି, ସୂର୍ଯ୍ୟ ଦିଶୁ ନାହିଁ, ଆଲୁଅ ଦେଖି ବାରି ହେଉ ନାହିଁ ବେଳ କେତେ, ଦିନର ଆରମ୍ଭ କି ମଝି କି ଶେଷ । ଲାଗୁଛି, ସମୟ ଖାଲି ଖାଲି ସମୟ ହିଁ, ଅଛି ତ ଅଛି, ମଣିଷର ଅନୁଭବରେ, ରାସ୍ତା ଖାଲି ରାସ୍ତା, ଲମ୍ବି ରହିଛି ଓ ଆଗରେ, ବାଏଁ ଡ଼ାହାଣେ, ଦିପାଖେ, ଯେତେ ଯାହା ଦିଶୁଛି ତହିଁରେ ଅଛି ଗତି, ପଛକୁ ପଛକୁ, ଆଗରେ ଯାହା ଆସୁଛି ସେ ବି ଚାଲିଯିବ ପଛକୁ, ଅତୀତକୁ । ଆସୁଆସୁ ଚାଲିଯିବ । ତେବେ 'ବର୍ତ୍ତମାନ'ଟା କ'ଣ ? ଅତୀତର ସ୍ମୃତି ଉପରେ ଚହଲୁଥିବା ଭାସି ଚାଲିଯାଉଥିବା ତରଳ ଛାଇ ? ବିଶ୍ୱମୂର୍ତ୍ତି ବାବୁ ଭାବୁଥାନ୍ତି, ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲେ । ହଁ ଆଉ ସାତମାସ ଗଲେ ତାଙ୍କୁ ଅଠାବନ ପୂରିଯିବ, ତାଙ୍କ ଚାକିରିକାଳ ସରିଯିବ, ଆସନ୍ତା ଫେବୃଆରୀ ୧୮ ତାରିଖ ଦିନଠୁଁ ।

କାର୍ ଭିତରେ ଏକୁଟିଆ ବସି ତାଙ୍କୁ ଛିନା ଛିନା ନିର୍ଜ୍ଜନତାର ଅନୁଭବ ଲାଗୁଛି, ତାଙ୍କଠୁ କେତେ ସାଜର ଖୋଳ ଖସିପଡ଼ୁଛି, କେତେ ବନ୍ଧନ ଫିଟିଯାଉଛି, ସେ ହୋଇଯାଉଛନ୍ତି ଚିନ୍ତା ଓ ଚେତନାର ବାମ୍ଫ, ଉଡ଼ି ବୁଲୁଛନ୍ତି ।

କିନ୍ତୁ କାରରେ ଅଛି ଆଉଜଣେ, ଡ଼ାଇଭର ହୁସେନ୍ । ଗାଡ଼ି ସେ ଚଳେଉଛି । ଖାକି ପୋଷାକ ପିନ୍ଧି ନିଜ ସ୍ଥାନରେ ବସିଛି, ଷ୍ଟିଅରିଂ ଧରିଛି, ସଡ଼କକୁ ଆଖି । ଚୁପ୍‌ଚାପ ପାଟିଚିପା ଲୋକ, ନପଚାରିଲେ ମୁହଁ ଖୋଲିବ ନାହିଁ । ଲାଗୁଛି ସେଠି ଥାଇବି ସେ ନାହିଁ, ସତେ ଯେପରି ଗାଡ଼ି ଠିକ୍ ବାଟ ଚିହ୍ନି ତା ନିଜ ବାଟରେ ଚାଲିଛି ଆପେ ଆପେ ।

ବିଶ୍ୱମୂର୍ତ୍ତି ବାବୁ ପଛ ସିଟ୍‌ରେ ବାଁହାତି ଝରକା ପାଖେ ସ୍ଥିର ହୋଇ ବସିଛନ୍ତି । ଡ଼େଙ୍ଗା, କଳା, ଦେହ ହୃଷ୍ଟପୁଷ୍ଟ ଆଉ ନାହିଁ, କିନ୍ତୁ ଛାଣୁଅଛି, ବଡ଼ମୁହଁ, ଟିକିଏ ହାଡୁଆ, ଖାଲଖାଲ, ଲମ୍ୱାଳିଆ, କପାଳ ଫରଚା ଓ ଉଚ୍ଚ, ଆହୁରି ଉଚ୍ଚ ଦିଶେ ଏଥିପାଇଁ ଯେ ମୁଣ୍ଡର ସାମ୍ନା ପଟୁ ମଝିଯାକେ ବଡ଼ ସୋରାଏ ଚନ୍ଦା ହୋଇଯାଇଛି, ତା ଦୁଇପାଖେ ମୁଣ୍ଡବାଳ ଧଳା । ଆଖିରେ ମୋଟା ଫ୍ରେମ୍‌ର ଚଷମା । ପଦାରୁ ଦେଖିଲେ ଦମ୍ଭିଲା ମୁହଁ, ଗମ୍ଭୀର, ଠାଣି ହୋଇପାରେ ଦୃଢ଼ ଆତ୍ମବିଶ୍ୱାସର, କିନ୍ତୁ କଣ ସେ ଭାବୁଛନ୍ତି ତାଙ୍କ ମୁହଁରୁ ତାହା ଧରି ହୁଏ ନାହିଁ । ସେ ମୁହଁର ଠାଣି ବି ଗୋଟାଏ ପୋଷାକୀ ମୁଖା ପରି, ଯେମିତି ତାଙ୍କ ଦେହର ପୋଷାକ । ବହୁ ବର୍ଷର ଅଭ୍ୟାସ ଯେ ଦାଣ୍ଡ ଆଉ ଭିତର ପରସ୍ପରଠୁଁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ, ମଝିରେ ମୋଟା କଳା ପର୍ଦା, ବାହାରୁ ଦୃଷ୍ଟି ତାକୁ ଭେଦିବ ନାହିଁ, ପଦାରେ ଗାରେ ଗାରେ ଚାଲିବା ଅଭ୍ୟାସ, ବିଶ୍ୱମୂର୍ତ୍ତି ବାବୁ କହିଲେ ବୁଝାଏ ଏମିତି ପୋଷାକରେ ଢ଼ଙ୍କା ଏହି ରୂପ, ତାଙ୍କର ଏହିପରି ମୁଦ୍ରା, ଏହିପରି ଠାଣି, ଏହିପରି ଚାଲିଚଳଣ । ଏହା ବି ଜଣାଶୁଣା ଯେ

ରାଜ୍ୟରେ ସେ ଜଣେ ଉଚ୍ଚ ଦାୟିତ୍ୱଧାରୀ କର୍ମଚାରୀ, ସେ ଏଇଆ ଏଇଆ ଦାୟିତ୍ୱରେ ଥିଲେ, ତା'ପରେ ନାନା ସମୟରେ ଏଇଆ ଏଇଆ ଦାୟିତ୍ୱ ମୁଣ୍ଡେଇ ଥିଲେ । ତା'ପରେ, କର୍ତ୍ତୃତ୍ୱର ଭଉଁରିଆ ବିବରଣୀରେ ସେସବୁ ଲେଖାଅଛି, ଭଉଁରିଆ ଆଲିମାଳିଆ ଗୋଦାମରେ ରହି ଖତ ନହେବାଯାଏ ରହିଥିବ, ତା'ପରେ ଅବଶ୍ୟ ସମ୍ଭାବନା ଥାଇପାରେ ଯେ ମୂଷା କାଟିବେ, ଉଇ ଚରିବେ, ପୃଷ୍ଠାସବୁ ଗୁଣ୍ଡୁଗୁଣ୍ଡା ହୋଇ ଝଡ଼ିପଡ଼ିବ । ତାଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ନିଶ୍ଚୟ ଚିହ୍ନିଛନ୍ତି କେତେ କେତେ ଲୋକ, ସେମାନଙ୍କର ମନେ ରହିବ, ଯଦିଚ ଦିନେ ସେମାନେ କେହି ନଥିବେ, ଯାହାଙ୍କୁ ନିଜ ନିଜ ଜୀବନର ଅଭିଜ୍ଞତା କଥା କହିଥିବେ ସେମାନେ ବି ନଥିବେ, ତେବେ ତହିଁରେ ବି ନୂଆ କ'ଣ ?- ଉପୃତ୍ତି ଭଳି ବିଲୟ ଓ ବିସ୍ମୃତି ବି ତ ସଂସାରର ସନାତନ କ୍ରମ । ଆଜି, ଏହି ମୁହୂର୍ତ୍ତରେ, ବିଶ୍ୱମୂର୍ତ୍ତିବାବୁ ବିଦ୍ୟମାନ । ଲୋକେ ଦେଖିଛନ୍ତି, ଆଜି ସେ ତାଙ୍କର ଏ କ୍ଷେପ ଗସ୍ତର କାମ ତୁଟାଇ ଟିକିଏ ଆଗରୁ ଖାଇ ଦିନ ଏଗାରଟା ବାଜି ପଇଁତିରିଶି ମିନିଟ୍ ବେଳେ ରାଉରକେଲା ବିଶ୍ରାମାଗାରରୁ ନିଜ କାରରେ ବାହାରିଲେ, କେନ୍ଦୁଝର ବାଟେ ଭୁବନେଶ୍ୱର ଫେରିଯିବେ । ଅନ୍ଧାରୁଆ ଦିନ ଆଲୁଅରେ ବେଳ ବାରି ନହେଉ, କେତେଟା ବାଜିଲାଣି ବୋଲି ସେ କୁତୂହଳୀ ନ ହେଉନ୍ତୁ । ତାଙ୍କ ବାଁ ହାତରେ ଯେଉଁ ସାନ ଘଣ୍ଟାଟି ବନ୍ଧା ହୋଇଛି, ଠିକ୍ ଚାଲିଛି, ତହିଁରେ ଗୋଟାଏ ବାଜି ସାରିଛି, ସମୟ କଣ୍ଟା ଚାଲିଛି ଆଗକୁ ଆଗକୁ, ସେକେଣ୍ଡ୍ ପରେ ସେକେଣ୍ଡ୍, ମିନିଟ୍ ପରେ ମିନିଟ୍, ପ୍ରତି ବର୍ତ୍ତମାନ ଅତୀତ ହୋଇ ଉଭେଇ ଯାଉଛି, ଆସୁଛି ପୁଣି କିଛି ନୂଆ ନିଶ୍ଚିହ୍ନ ହେବ ବୋଲି । କେବେ ଥିଲା ଦୁର୍ଗମ ପାହାଡ଼ମାଳା, ଅନ୍ଧାରି ବଣସଡ଼କ ବା କାହୁଁ ଚଲାବାଟ ବି ନଥିଲା, ପୁଣି କେବେ ଏହାରି ଭିତରେ କେଉଁଠି ଅରାଏ ଅରାଏ ସଫା ହୋଇ ବଢ଼ି ଉଠିଥିଲା ଅଜଣା ମଣିଷଙ୍କ ସୁଖଦୁଃଖର ସଭ୍ୟତା, କିଏ ଗଢୁଥିଲେ, ଉପୁଜାଉଥିଲେ, କିଏ ଭାଙ୍ଗୁଥିଲେ, ଉଜାଡୁ ଥିଲେ, କନ୍ଦାଉ ଥିଲେ, କେଉଁ ବସତି କେତେ କାଳ ରହିଥିଲା, ଶହ ଶହ ବର୍ଷ କି ହଜାର ହଜାର ବର୍ଷ, ତାପରେ ପୁଣି ଜଙ୍ଗଲ, ପରସ୍ତ ପରସ୍ତ ମାଟି, ତା'ଉପରେ ବଣ ଅରମା । ତା'ପରେ ବଣ ହଣା ପୋଡ଼ା, ପୋଡୁଚାଷ, ଲଣ୍ଡା ପାହାଡ଼, ଲଣ୍ଡା ଢ଼ିପ ଢ଼ାଲୁ, ସ୍ଥାନେ ସ୍ଥାନେ ଅରାଏ ଅରାଏ ବଣ, ସୋରାଏ ସୋରାଏ କ୍ଷେତ । କିଏ କହିପାରିବ କେତେ କାଳର କଥା ? ଯାହା କହିବ ସତ କି କଳ୍ପନା ? ବାଟ ଖୋଲିଲା, କ୍ରମେ ହେଲା ସଡ଼କ, ପୋଲ ବନ୍ଧା ହେଲା । ଏହି ସଡ଼କରେ କେତେ ପ୍ରାଣୀ, କେତେ ମଣିଷ, କିଏ କେତେବେଳେ ନିଷ୍ଠୁରଭାବେ କେତେ ପ୍ରକାରେ ମଲେ, କେବେ ଲୁହ ରକ୍ତ ମାଂସ ହାଡ଼ ମିଶିଗଲା ଏହି ସଡ଼କରେ, ଥିଲା- ନାହିଁ- କେବେ ? ଦୁର୍ଦ୍ଦଶା, ଦୁଃଖ, ଥିଲା ଓ ଅଛି । ହିଂସା, ଅତ୍ୟାଚାର, ଅନ୍ୟାୟ, ଶୋଷଣ, ଦରିଦ୍ର ନିଃସହାୟଙ୍କ ଲୁହ ଜୁତୁବୁଡୁ ଆର୍ତ୍ତନାଦ, ଅଜଣା ଅଦୃଶ୍ୟ ଶକ୍ତିଠୁଁ ସାହାଯ୍ୟ ଭିକ୍ଷା, ବାରମ୍ବାର ଅଣ୍ଟାଭିଡ଼ା, ଆଶା, ସାହସ, ଯେତେ ଦୁର୍ବଳ ହେଲେ ବି କିଛି ପ୍ରୟାସ, ଥିଲା ଓ ଅଛି, ଏହି ନିର୍ଜନ ସଡ଼କରେ ବି ଲମ୍ବି ରହିଛି ମଣିଷର ଇତିହାସ, ଏ ଶୂନ୍ୟ ଭିତରେ ଛପି ରହଛି, ଓ ବିଶ୍ୱମୂର୍ତ୍ତି ବାବୁ ବସିଛନ୍ତି ।

ଯେମିତି ଥାଆନ୍ତି ପଥର ସାଲୁସାଲୁ ପ୍ରାନ୍ତରରେ ପଥର ପାଖେ ପଥର ଥାଆନ୍ତି ଗଛ ପାଖେ ଗଛ, ପତ୍ର ଗହଳିରେ ଗୋଟିକା ଗୋଟି ପତ୍ର । ସମସ୍ତେ ଅଲଗା ଅଲଗା । ମାଟିତଳେ ସବୁ ଚେର ଏକାଠି ଛନ୍ଦା ଛନ୍ଦି, ଭୂଇଁ ଦୁଲୁକିଲେ ନାନା ପଥରରେ ଲାଗେ ନୀରବ ସ୍ପନ୍ଦନ, ଓ ସବୁ ମାଟି ସବୁ ପଥର ସେହି ଏକ ବସୁଧାର ହିଁ ଅଂଶବିଶେଷ, ଯେଉଁଦିନ ବସୁଧା ହିଁ ନଥିବ ନଥିବେ କେହି ।

ବିଶ୍ୱମୂର୍ତ୍ତି ବାବୁ ଖବର କାଗଜ ପଢ଼ନ୍ତି ଯେମିତି ପଢ଼ନ୍ତି ପୃଥିବୀଯାକର ଅଗଣିତ ମଣିଷ । ସେ ବି ଜାଣନ୍ତି ଏତେ କାଳର ମଣିଷର ସ୍ଥିତି ଉପରେ ଘୋଟି ରହିଲାଣି କେବେ ହଠାତ୍ ଧ୍ୱଂସର ଆଶଙ୍କା, ତହୁଁବଳି ତହୁଁବଳି ସୃଷ୍ଟି ବିଧ୍ୱଂସି ପ୍ରକାର ପ୍ରକାର ଅସ୍ତ୍ରଶସ୍ତ୍ର କୁଢ଼ ସଜାହୋଇ ରହିଛି, ବଢୁଛି, ଏକୁ ଆରେକ ମହାବଳୀ ହୋଇ ହିଂସା ଅବିଶ୍ୱାସ ଲୋଭର ନିଆଁ ବଢ଼ି ଲାଗିଛି, ବାଘର ଡ଼ର ଫାଗକୁ ବୋଲି ହାତ ଅଟକିଛି, କିନ୍ତୁ କିଏ ଜାଣେ କେତେବେଳେ ହୁଗୁଳିଯିବ ? ବନ୍ଧତଳୁକୁ ଲାଗିଲାଣି ବଢ଼ିପାଣି । ସେ ପଢ଼ିଛନ୍ତି ଦେଶବିଦେଶର ନାନା ହତ୍ୟା, ବିଭୀଷିକା, ଅନ୍ୟାୟ ଅତ୍ୟାଚାର ନିଷ୍ଠୁରତା ବର୍ବରତାର ସମ୍ବାଦ, କେଉଁଠି ପଡ଼ିଛି ଦୁର୍ଭିକ୍ଷ, କେତେ ଜନପ୍ରାଣୀ ମଲେଣି, ମରୁଛନ୍ତି । ଆଉ ପାଖରେ, ଏ ଦେଶରେ ବି କେତେଠି କେତେ ଘଟଣା, ମରୁଡ଼ି, ଖାଦ୍ୟାଭାବ, ପେଟ ବିକଳରେ କିଏ ସନ୍ତାନକୁ ବିକୁଛି, କିଏ ଅଖାଦ୍ୟ ଖାଇ ମରୁଛି, ରୋଗରେ, ଘୁଷୁରିପଲ ପରି ମଣିଷପଲ ବଢୁଛନ୍ତି, ବୁଲୁଛନ୍ତି ହଜାର ହଜାର ବେକାର୍, ଅଭାବୀ, ଅବର୍ଣ୍ଣା, ଅଘରୀ, ବିକଳାଙ୍ଗ, ଅସହାୟ- କେତେ ଆଶା କେତେ ସ୍ୱପ୍ନ ଉଠୁଛି, କେତେ ଶୁଭ ଉଦ୍ୟମ ଆରମ୍ଭ ହେଉଛି, କୁଆଡ଼େ ଉଡ଼େଇ ଯାଉଛି, ଯେମିତି ମରୁଭୂମି ଉପରେ କେବେ କଦବା ଅସରାଏ ହାଲୁକା ବର୍ଷା- ବାଲି ଶୋଷି ନେଉଛି, ପୁଣି ଶୁଖିଲା ଠାଉ ଠାଉ ବାଲିପଟା । କିନ୍ତୁ ସେସବୁତ ସମ୍ବାଦ ହିଁ, ଆଖି ପକାଇ ଯିବା ପାଇଁ କାଗଜ ଉପରେ, ପଢୁ ପଢୁ ଯାହା ଯେତିକି ମନ ଭିତରେ ଚଳନ୍ତ ପ୍ରତିକ୍ରିୟା, ତା'ପରେ ଆଉ ନଥାଏ । ଯାହା ଥାଏ ତାହା ସବୁଦିନିଆ, ନିଜର 'ମୁଁ' ଓ 'ମୋର' ସମ୍ପର୍କକୁ ଘେନି, ସେତିକି ଘେନି ଜୀବନ, ଖୋଳ ଭିତରେ ଗେଣ୍ଡାଟିଏ, କେତେବେଳେ ପଦାକୁ ମୁହଁ ତ ଶରୀର ବଢ଼ାଏ, କେତେବେଳେ ଭିତରକୁ ଓଟାରି ନିଏ ।

ବିଶ୍ୱମୂର୍ତ୍ତି ବାବୁ ଭାବୁଥାନ୍ତି ଆସନ୍ତା ଫେବୃଆରୀ ମାସ ୧୮ ତାରିଖ କଥା, ଯେତେବେଳେ ସେ ଅବସର ନେବେ । ହେବାର କଥା, ହେବ । ଘରଟିଏ ଅଛି, ପୁଅ ଦୁହେଁ ପାରିଗଲେଣି, ଭଲ ରୋଜଗାରୀ, ଝିଅ ଦିହେଁ ଭଲରେ ଚଳନ୍ତି । ସମସ୍ତେ ବିଭା ହୋଇ ସାରିଛନ୍ତି । କରଜ ନାହିଁ । ପେନ୍‌ସନ ମିଳିବ । ଚଳିବାକୁ ଯଥେଷ୍ଟ ଅଛି । କିନ୍ତୁ ତଥାପି, ବତିଶି ବର୍ଷର ଅଭ୍ୟସ୍ତ ଜୀବନରୁ ବିଦାହେବାକୁ ପଡ଼ିବ, ବଞ୍ଚି ଥାଉଥାଉ ସତେ ଯେମିତି ଘଟ ପରିବର୍ତ୍ତନ, ତା'ପରେ ? ଗୋଟାଏ ଅଦୁଆ ଚିନ୍ତା ଗୋଟାଏ ଦୁଃସ୍ୱପ୍ନ, ଥାଉ ପଛକୁ, ଯାହା ହେବ ହେବ । କିନ୍ତୁ ଇଚ୍ଛା କଲେ ନଭାବି ରହି ହେଉନାହିଁ । ଭାବି କିଛି ବାଟ ଦିଶୁ ନାହିଁ । ହୁଏତ ଦିଶିବ ସେତେବେଳେ । ମନରେ ଗୋଟାଏ କରୁଣ ଉଦାସ ପଣିଆ । ମନଟା ନରମି ଯାଉଛି, ଭାସି ଯାଉଛି ।

ଦିଶିଯାଉଛନ୍ତି, ଗାଁର ନି.ପ୍ରା ସ୍କୁଲ ଶିକ୍ଷକ ଶ୍ରୀବତ୍ସ ପାଢ଼ୀ, ଗୋରା, ଡ଼େଙ୍ଗା, ମୋଟା, ଅନ୍ତଳପେଟା, ମିଟିମିଟି ଆଖି, ଓଠରେ ଚାପି ରଖିଲା ପରି ହସ । କାଲି ପରି ଲାଗୁଛି, ଇସ୍କୁଲରେ ବିଶ୍ୱମୂର୍ତ୍ତି ବାବୁଙ୍କ ନାଁ ଲେଖାବେଳ, ନିରୀହ ପିଲାଟିର ମୁହଁ ଦେଖି ହଠାତ୍ ତାଙ୍କ ମନରେ କାହିଁକି ମାୟା ହେଲା କେଜାଣି, କହିଥିଲେ, ''ପିଲାଟି ବୁଦ୍ଧିଆ ଜଣା ପଡୁଛି ଦୁଃଖୀଶ୍ୟାମ, ପଢ଼ାଅ, ଭଲ ପଢ଼ିବ । ନାଁ କଣ ଦେଇଛ କହିଲ ? ବାଉରୀବନ୍ଧୁ ? ନାହିଁ, ଭଲ ଶୁଭୁନାହିଁ, ତା ନାଁ ଲେଖିବା ବିଶ୍ୱମୂର୍ତ୍ତି । ସେ କିଏ ଜାଣିଛ ? ଆମ ଇସ୍କୁଲ୍ ଇନିସ୍‌ପେକ୍ଟର ବାବୁ, ବହୁତ ପାଠପଢ଼ା ଲୋକ, ତାଙ୍କର ଭାରି ନାଁ । ପାଠ ପଢ଼ିଲେ ବଡ଼ ହେଲେ ତାଙ୍କରି ପରି ହେବୁରେ ବାଳକ । ଆଉ, ଜନ୍ମ ତାରିଖଟା ଦି ବର୍ଷ କମେଇ ଦେଇ ଲେଖିଥିଲେ ଭଲ, ପଛେ ଚାକିରିବାକିରି ବେଳେ କାମରେ ଆସିବ ।'' ସେଥିପାଇଁ ତ, ନହେଲେ

ପ୍ରାୟ ଦେଢ଼ବର୍ଷ ତଳେ ତାଙ୍କ ଚାକିରି ସରନ୍ତାଣି । ଶ୍ରୀବତ୍ସ ପାଢ଼ୀ ତାଙ୍କର ଜଣେ ଶୁଭାକାଂକ୍ଷୀ ଥିଲେ । ଗଲେଣି, ଶେଷ ଆଡ଼କୁ ବହୁତ ଦୁଃଖ ଭୋଗିଲେ । ବୁଢ଼ା ହେଲେ, ଚାକିରିରୁ ଅବସର ନେଲେ, ଘୋର ଅଭାବ ଅନାଟନରେ ଜୀଉଣା, ଝିଅଟି ବିଧବା ହେଲା, ସ୍ତ୍ରୀ କତରା ଧରିଲେ, ମଲେ, ପୁଅ ଦୁହେଁ ବାଳୁଙ୍ଗା ହୋଇ ବୁଲିଲେ, ଶେଷକୁ ଘର ଛାଡ଼ି ଗାଁ ଛାଡ଼ି କୁଆଡ଼େ ଚାଲିଗଲେ, ବୁଢ଼ା ରହିଥିଲେ ଏକୁଟିଆ, କିଏ ଡ଼ାକିଲେ କାହା ଘରେ ପୂଜାଓଝା କରନ୍ତି, ଠାକୁର ପୂଜା କରନ୍ତି, କିଏ ପଠାଇଲେ କାହା କାହା ସାନ ପିଲାଙ୍କୁ ପଢ଼ାନ୍ତି, ସାହିଲୋକେ କି ଗାଁ ଲୋକେ ଦେଲେ ସେତିକିରେ ଚଳନ୍ତି, କେବେ ମିଳେ, କେବେ ଉପାସ । ଶୁଣିଥିଲେ ସେଥର ବିଶ୍ୱମୂର୍ତ୍ତି ବାବୁ, ଯେତେବେଳେ ବହୁବର୍ଷ ପରେ ଏମ୍.ଏ. ପାଶ୍ ଉତ୍ତାରୁ ସେ ଗାଁକୁ ଯାଇଥିଲେ ଓ ଦିନେ ଶ୍ରୀବତ୍ସ ପାଢ଼ୀଙ୍କ ଗାଁରେ ପହଞ୍ଚି ଥିଲେ, ଜୀର୍ଣ୍ଣଶୀର୍ଣ୍ଣ ବୁଢ଼ା ତାଙ୍କୁ ଦେଖି ପାକୁଆ ପାଟି ଟାକରା ଗାଲରେ ଖୁସିରେ ହସିଥିଲେ, ଆଉଁସି ପକାଇଥିଲେ, କେତେ ଆଶୀର୍ବାଦ ଅଜାଡ଼ି ଦେଲେ, କହିଲେ, ''ଶୁଣିଛି, ଶୁଣିଛିରେ ବାବୁ । ତୋ ବଡ଼ତି ଖବର ମୁଁ ଆଗ ରଖେ, ତୋ ପିଲାଦିନେ ତୋତେ ଦେଖି ଯାହା ଭାବୁଥିଲି ସେଇଆ ତୁ ହେଲୁ । ତୋ ଗୌରବ କଥା ଶୁଣି ମୋ ଆତ୍ମା ସନ୍ତୋଷ । ଦେଖିବୁ, ତୁ କେତେ ଉପରକୁ ଉଠିବୁ । ବଡ଼ ଚାକିରି ପାଇବୁ, ବଡ଼ ହାକିମ ହେବୁ, ବଡ଼ ଯଶ ଅର୍ଜିବୁ ।'' ଆଉ ଚାରିବର୍ଷ ପରେ ବୁଢ଼ା ଆଉ ନଥିଲେ ।

କିନ୍ତୁ କଣ ସେ କେବେ କରିପାରିଲେ ବୁଢ଼ାଙ୍କ ପାଇଁ ? ତାଙ୍କ ସାଙ୍ଗେ କି ସମ୍ପର୍କ ରଖି ପାରିଲେ ? ଆତ୍ମଗ୍ଲାନିରେ ଅନ୍ତର ଘାରି ହେଲା । ସେ ନିଜ ମନକୁ ବୁଝାଇବା ପାଇଁ ନିଜ ଆଗେ ଯୁକ୍ତି ଥୋଇଲେ- ''କିନ୍ତୁ ସେମିତି ତ ସବୁ ଶିକ୍ଷକ, ସେ କଣ ଗୋଟିଏ ?'' କେତେଠି କେତେ ଶିକ୍ଷକ ତାଙ୍କୁ ପଢ଼ାଇଛନ୍ତି । ସେମାନେ ଦରମା ପାଆନ୍ତି, ପିଲାଙ୍କୁ ପଢ଼ାଇବା ତାଙ୍କ କାମ । କିଏ ଟିକିଏ ସ୍ନେହୀ, ଅମାୟିକ, କିଏ ତା ନୁହନ୍ତି ଖାଲି ନିଜ କର୍ତ୍ତବ୍ୟ ତୁଲାନ୍ତି । ଆଉ କି ପ୍ରତିଦାନ ଦେବା ଲୋଡ଼ା ଥିଲା ? ''ନା-ନା-ନା''- ମନ ଭିତର ପ୍ରତିବାଦ କରିଉଠିଲା, ଯୁକ୍ତିଟା ଉବୁଟୁବୁ ହେଲା, ଉଭେଇଗଲା, ମନରେ ଘୋଟି ରହିଲା କରୁଣ ଅନୁଶୋଚନା । ''ମୁଁ ଭୁଲିଛି, ତ୍ରୁଟି କରିଛି, ଆଉ ତା ଲେଉଟାଇ ପାରିବି ନାହିଁ । ଛି ଧାରି ପାରିବି ନାହିଁ । ଶୁଧାରି ପାରିବି ନାହିଁ ।''

ଅନ୍ଧାରି ଘୋଟି ଘୋଟି ଆସୁଛି, ଦିନ ସରିନାହିଁ, କିନ୍ତୁ ଆଲୁଅ ଆହୁରି ମଳିନ ପଡ଼ିଗଲାଣି, କେତେ କଣ ପଛରେ ରହିଗଲାଣି, କେତେ ଢ଼ିପ ଢ଼ାଲୁ, କେତେ ପାହାଡ଼, କେତେ କ୍ଷେତ ପଦା, ଛାଡ଼ି ଛାଡ଼ିକା ଦୂରରେ ପାଖରେ କେତେ ଗାଁ ଗଣ୍ଡା, ଆହୁରି ସେପରି କେତେ ଆସୁଛି ଚାଲିଯାଉଛି, ସବୁ ଅନ୍ଧାରୁଆ ଅନ୍ଧାରୁଆ, କେତେ ମଣିଷ, ଗୋରୁପଲ, ଛେଳିଗୋଠ, ବାଟରେ ହାବୋଡ଼ିଥିଲେ, ଗଲେଣି, କିଏ ମନେ ରଖିଛି ? ଗାଡ଼ି ଚାଲିଛି । ବିଶ୍ୱମୂର୍ତ୍ତି ବାବୁଙ୍କୁ ଲାଗୁଛି ତାଙ୍କ ସାମ୍ନାରେ କେବଳ ଅନ୍ଧାର ଓ ନିଃସଙ୍ଗତାର ମେଲା ହାଉଁ ମୁହଁ, ସେ ତା ଭିତରକୁ ତୀବ୍ର ବେଗରେ ଓଟାରି ହୋଇ ଯାଉଛନ୍ତି । ଶ୍ରୀବତ୍ସ ପାଢ଼ୀଙ୍କ ସ୍ମୃତି ମନେ ପଡୁ ପଡୁ ଆହୁରି କେତେ ଲୋକଙ୍କ ସ୍ମୃତି ମନେ ପଡ଼ିଲା, ଗାଁରେ ନିଜ ପିଲାଦିନଠୁଁ ଆରମ୍ଭ କରି ନାନା ସ୍ଥାନରେ ନାନା ଲୋକଙ୍କର, କିଏ କେଉଁଠି ତାଙ୍କୁ ସ୍ନେହ କରୁଥିଲେ, କେତେବେଳେ ବ୍ୟବହାରରେ, ତୁଣ୍ଡ କଥାରେ, କି କେଉଁ କାର୍ଯ୍ୟରେ ତାଙ୍କୁ ଦେଇଥିଲେ ସ୍ନେହ, ସହାନୁଭୂତି, ସାହସ କିମ୍ବା ସାହାଯ୍ୟ, ସମ୍ପର୍କ ଯେତେ ଅଳ୍ପକାଳ ରହିଥାଉ କି ବେଶି ବେଳ, କାହାର ମୁହଁରେ ନିଶ୍ୱାସରେ କି କଥାରେ ଥିଲା ତାଙ୍କ ଦୁଃଖରେ 'ଆହା' ପଦ, ତାଙ୍କ ପ୍ରତି ଥିଲା

ଶ୍ରଦ୍ଧା, ବିଶ୍ୱାସ, ନୀରବ ନିରୀହ ନିର୍ଭରତା, ତାଙ୍କୁ ଲାଗିଥିଲା ଏ ସ୍ନେହ ସବୁଦିନେ ରହିବ ଓ ଏ ମୋର ହିତକାଂକ୍ଷୀ ବନ୍ଧୁ, ସୁଖର ଦୁଃଖର, କେତେ ଆପଣାର ସତେ ! ସେମାନେ ନଥିଲେ ତାଙ୍କର ଖାଲି ବନ୍ଧୁବାନ୍ଧବ, କି ଆପଣା ସ୍ୱାର୍ଥରେ ଛନ୍ଦା ମଣିଷ, ତଥାପି ସେମାନେ ହୋଇଥିଲେ ସେତିକିବେଳେ ଗୋଟାସୁଦ୍ଧା ତାଙ୍କର ହିଁ । ତା'ପରେ ଆଉ ସମ୍ପର୍କ ରହିନାହିଁ, କିଏ କେଉଁଠି ରହିଲେ, କୁଆଡ଼େ ହଜିଗଲେ, ଯଦିକେବେ ସେପରି କାହାସଙ୍ଗେ ଦେଖା ତେବେ ସେ ହେଲାଣି ଭିନେ ଲୋକ, ଅଥବା ଭିନେଲୋକ ସେ ନିଜେ, ପଥର ପାଖେ ପଥର, ଦୁହେଁ ପରସ୍ପର ପାଇଁ ନିରର୍ଥକ । କେବେ ମନକୁ ଛୁଇଁ ନାହିଁ ଯେ ସେମାନଙ୍କର ତାଙ୍କ ନିଜ ଜୀବନ ପ୍ରତି କିଛି ତାତ୍ପର୍ଯ୍ୟ ଥିଲା ବୋଲି, ''ସଂସାର ଯାକ କେତେ ଲୋକ ଆପଣା ସ୍ୱାର୍ଥର ସମ୍ବଳ ନଥିଲେ କାହାପାଇଁ କିଏ ଅବା କଣ ?''

କିନ୍ତୁ ଏଇ ନିର୍ଜନତା ଭିତରେ ଦିନ ସରନ୍ତି ଛାଇ ବନ୍ଧ ଅନ୍ଧାର ଭିତରେ ଆଗକୁ ଆଗକୁ ଓଟାରି ହୋଇ ଗଲାବେଳେ ।

ମନେ ପଡ଼ୁଛନ୍ତି ଅତୀତର ସେହିପରି ମୁହଁଗୁଡ଼ିଏ, ତାଙ୍କ ଅଭ୍ୟସ୍ତ ଦୃଷ୍ଟିଭଙ୍ଗୀ ଓ ବିଚାର କେମିତି ବଦଳି ଯାଇଛି, ମନ ଅନୁଶୋଚନାରେ ହନ୍ତସନ୍ତ, ନୂଆ ଅନୁଭବ ଆସିଛି, ଭାବୁଛନ୍ତି, ''ମୁଁ ଅକୃତଜ୍ଞ ହେଲି । ମୁଁ ଋଣୀ ରହିଗଲି, କାହା ଋଣ ମୁଁ ଶୁଝିଲି ନାହିଁ ।'' ମଣିଷ କଣ ଖାଲି ନିଜ ଶିଂଘରେ ମାଟି ଖୋଳିପାରେ ? ଓଳିଆରୁ ପଡ଼ି ଗଜା ହୁଏ, ଗଛ ହୁଏ ? କେତେ ଲୋକଙ୍କର ସ୍ନେହ, ସହାନୁଭୂତି, ସାହାଯ୍ୟ, ଦୁର୍ବଳ ଅସହାୟ ଥିଲାବେଳେ କାହାଠୁଁ କି ପ୍ରକାର ଉପକାର, ଭାଙ୍ଗିପଡୁଥିବା ବେଳେ ଢ଼ିରା ଦେଲାପରି କାହା ହାତ, କାହାଠୁଁ ଅଭୟ, ସାହସ, ଆଶା, ଉତ୍ସାହ, ସେତକ ନ ମିଳୁଥିଲେ ମଣିଷ ଉଧାନ୍ତା କେମିତି ? ବଞ୍ଚନ୍ତା କେମିତି ? ତାଙ୍କ ଅନ୍ତର ତରଳି ଯାଉଥିଲା, ନିଦାପଣ ଉଭେଇ ଯାଇଥିଲା, ସେ ସତେ ଯେପରି ସରୁ ହୋଇ ଟିକି ମଶାଟାଏ, ପବନରେ ଦୋହଲି ଦୋହଲି କ୍ଷୀଣ ଘାଉଁ ଘାଉଁ ଶବ୍ଦ କରୁଛି ।

ସେହି ମୁହଁମାନେ ଉଭା ହେଉଛନ୍ତି, ହଜି ଯାଉଛନ୍ତି, ନିଜଠି ରହିଯାଉଛି କରୁଣ ଆକୁଳତା । ସ୍ତବ୍ଧ ହୋଇ ବସିଛନ୍ତି, ନିଜର ସ୍ଥିତିକୁ ନିଜର ସ୍ୱାର୍ଥକୁ ଭୁଲିଛନ୍ତି, ଆବେଗମୟ ସହାନୁଭୂତି ହୋଇ ଭାସି ଯାଉଛନ୍ତି, ଆଗକୁ ପଛକୁ । ଅଭାବ, ଅନାସ୍ଥା, ନୈରାଶ୍ୟ ଭିତରେ ସେ ବଢ଼ିଥିଲେ, ନାନା ଆଘାତ ସେ ଅଙ୍ଗେ ନିଭେଇଥିଲେ । ସେତେବେଳେ ତାଙ୍କ କିଶୋର ମନରେ ଦୃଢ଼ ପ୍ରତିଜ୍ଞା ଥିଲା, ''ମୁଁ ବଢ଼ିବି, ଠିଆ ହେବି, ଖାଲି ନିଜ ପାଇଁ ନୁହେଁ, ମଣିଷ ସମାଜର ଯେଉଁ ଶ୍ରେଣୀରୁ ମୋର ଉତ୍ପତ୍ତି, ଯାହାର ଦୁଃଖ ମୁଁ ମୋ ହାଡ଼େ ହାଡ଼େ ଅନୁଭବ କରିଛି, ନିଜେ ବଞ୍ଚି ତା' ସେବା ବି ମୁଁ କରିବି ।'' ତାହାପରେ ଏତେ ବର୍ଷ ବିତିଯାଇଛି । କେତେ ଦାରିଦ୍ର୍ୟ, କେତେ ଦୁର୍ଦ୍ଦଶା, କେତେ ନୈରାଶ୍ୟର ଚିତ୍ର ଆଖିରେ ପଡ଼ିଛି । ସେଇଆ ଥିଲା, ସେଇଆ ହୋଇ ଆସିଛି, ହେଉଛି । ଏବେ ବି ସେହି କଲବଲ । ''ମୁଁ ବା କଣ କରି ପାରିଛି ? ମୋର କେଉଁଥିରେ କିଛି ଊଣା କରି ପରକୁ ଦେଇଦେଇଛି ? ତୁଣ୍ଡରେ ବଡ଼ ବଡ଼ କଥା କହିଛି, ବଡ଼ ବଡ଼ ସ୍ୱପ୍ନ ଦେଖିଛି, କେବେ କିଛି ଅଳ୍ପ କରି ସବୁ କଲି ବୋଲି ବୃଥା ଆତ୍ମସନ୍ତୋଷ ପାଇଛି । କରିବା ମୋ ହାତରେ ନାହିଁ, କରିବା ଦାୟିତ୍ୱ ଅନ୍ୟମାନଙ୍କର ବୋଲି ଭାବି ନିଶ୍ଚିନ୍ତ ରହିଛି ।''

ଢ଼ାଇ କରି ଗୋଟାଏ ଶବ୍ଦ ହେଲା, ତାଙ୍କର ଧ୍ୟାନଭଙ୍ଗ ହେଲା, ସଙ୍ଗେ ସଙ୍ଗେ ଗାଡ଼ି

ଅଟକିଲା । ଡ୍ରାଇଭର ପାଟିକଲା, ‘‘ଶଳା ଟୋକା, ରହ ରହ ତତେ ଦଉଚି ।’’ ଗାଡ଼ିରୁ ଓହ୍ଲେଇ ପଡ଼ିଲା ।

‘‘କଣ ହେଲା ହୁସେନ୍ ?’’

‘‘କିଏ ଗୋଟାଏ ଖଚଡ଼ା ଟୋକା ଗାଡ଼ିକି ଢେଲାଟାଏ ପକେଇ କୁଆଡ଼େ ପଳେଇଲା, ଦେଖେଁ କଣ ହେଲା ।’’

ନିଜେ ବି ଓହ୍ଲେଇ ପଡ଼ିଲେ । ଢେଙ୍କାନାଳରେ ଗୋଟାଏ ଛକ । ସନ୍ଧ୍ୟା ସାତଟା । ସଡ଼କର ଆଲୁଅ ଜଳୁଛି, ଲୋକ ଯା ଆସ କରୁଛନ୍ତି । ଗାଡ଼ି ଉପରେ ଠାଏ ଚେପା ହୋଇଛି । ଡ୍ରାଇଭର ପାଟିତୁଣ୍ଡ କଲା, କିନ୍ତୁ କେହି କହିପାରିଲେ ନାହିଁ କିଏ ସେ ଟୋକା, କୁଆଡ଼େ ଲୁଚିଲା । ଫେରିଲା ପରେ ଗ୍ୟାରେଜକୁ ନେଇ ଏ ଚେପା ମରାମତ କରିବାକୁ ପଡ଼ିବ, ସେ ବି ଗୋଟାଏ ଧନ୍ଦା ଲାଗିବ । ‘‘ଚାଲ ଯିବା ? ନା ଚା ଖାଇବ ? ଟୋକାଗୁଡ଼ାକ କି ଦୁଷ୍ଟ ହେଲେଣି । ସମୟତ ସେଇଆ, ଘୋର ଅରାଜକତା । ବଡ଼ଙ୍କଠୁଁ ଦେଖି ସାନମାନେ ବି ମାତୁଛନ୍ତି ।’’

# ଚଢ଼େଇ

ବୈଶାଖର ଆରମ୍ଭ । ଦିନ ସାଢ଼େ ତିନିଟାବେଳ । ଢ଼ଳିଲା ଖରା ବି ଜଳୁଛି । ସାମ୍ନାରେ ବାଁକୁ ଦୋ'ଟି କୃଷ୍ଣଚୂଡ଼ା ଗଛ, ଇଟାବର୍ଣ୍ଣର ଫୁଲ ଲଦି ହୋଇଛି, ମଝିରେ ମଝିରେ ଅଳ୍ପ ପୁଳିଏ ପୁଳିଏ ଗୁଜୁରା ଗୁଜୁରା ପତ୍ର । ଡ଼ାହାଣକୁ ପ୍ରକାର ପ୍ରକାର ନାଲିଫୁଲରେ ଛାଉଣି ହୋଇ ବୁଗେନ୍‌ଭିଲିଆ ଗଛଗୁଡ଼ିଏ, ଲାଗୁଛି ସେସବୁ ବି ଜଳୁଛି । ଶଙ୍କର ମିଶ୍ର ଅନ୍ୟମନସ୍କ ହୋଇ ଚାହିଁ ରହିଥିଲେ, ଅନୁଭବ କରୁଥିଲେ ଯେପରିକି ନିଆଁ ଲାଗିଛି; ସବୁ ଖାଲି ଜଳୁଛି । ଓଃ ! କି ବିଭୀଷିକା !

ହଠାତ୍ ମନେ ପଡ଼ିଗଲା, ସେଇ ଛୋଟ ଚଢ଼େଇଟି କାହିଁ ? ତା କଥା ମନେପଡ଼ିଲା ମାତ୍ରେ ଖରା ତା'ରି ଉପରେ ସତେ ଯେପରି ଢ଼ାଙ୍କି ହୋଇଗଲା । ଶୀତଳ ପାତଳ ଛାଇ ସୁଲୁସୁଲିଆ ପବନ ଦେହରେ ବାଜିଲା, ଶୁଭିଲା ପାହାଡ଼ି ଝରଣାରୁ ଦୁଲୁ ଦୁଲୁ ଶବ୍ଦ, ଉପରେ ଡ଼େଙ୍ଗା ଗଛମାନଙ୍କ ଉପରେ ହାଲୁକା ଶାଗୁଆ ଚାନ୍ଦୁଆରେ କାନ୍ଧି କାନ୍ଧି ନାଲିଫୁଲ ସଜା ହୋଇଛି । ସ୍ଥାନେ ସ୍ଥାନେ ଉଜ୍ଜଳ ନାଲି ଲତା- ପଳାଶ ଫୁଲର ଦୋଳି ତଳକୁ ଓହଳିଛି, ଆଗରେ ଏପାଖରୁ ସେପାଖ ସେପାଖରୁ ଏପାଖ ହୋଇ ଉଡ଼ିବୁଲୁଛି ସେଇ ସାନ ଚଢ଼େଇଟି । ଥଣ୍ଟଟି ନାଲି, ଦେହଟି ଚିକ୍‌କଣ ଇନ୍ଦ୍ରନୀଳ ବର୍ଣ୍ଣର, ଉଡ଼ିଲାବେଳେ ଦିଶେ ସେହି କଳାବର୍ଣ୍ଣର ଝଲକ । ହଠାତ୍ ଚଢ଼େଇଟି କୁଆଡ଼େ ହଜିଯାଏ, ପୁଣି ଦିଶେ । ପୁଣି ହଜେ ।

ଏ ଦିନେ ତାର ସେହି ବର୍ଣ୍ଣ । ବର୍ଷାଦିନେ ବର୍ଷା ଥମି ଥିଲାବେଳେ ହଠାତ୍ କେଉଁଠି ସେ ହାବୁଡ଼େ, ସେତେବେଳେ ସେ ଉଡ଼ନ୍ତା ଟିକି ଇନ୍ଦ୍ରଧନୁଟିଏ । ଦେହଟି ସେହି ବର୍ଣ୍ଣର । ଶୀତଦିନେ, ଯେତେବେଳେ ଦିନର ଆଲୁଅ ଦିଶୁଥାଏ ମ୍ଳାନ, ସେତେବେଳେ ତା ଦେହର ବର୍ଣ୍ଣ ଉଜ୍ଜଳ ରକ୍ତ-କାଇଁଚ ବର୍ଣ୍ଣପରି ।

ଯେତେବେଳେ ସେ ଦିଶେ, ସେତେବେଳେ ଉପୁଜାଏ ତାଙ୍କର କୁତୂହଳ, ବିସ୍ମୟ ଓ ଆନନ୍ଦ । ସେ ବସେ ନାହିଁ, ଶବ୍ଦ କରେ ନାହିଁ, ଏପାଖୁ ସେପାଖ ଉଡ଼ିଯାଇ କୁଆଡ଼େ ଅନ୍ତର୍ହିତ ହୋଇଯାଏ । କିନ୍ତୁ ସେ ଲୁଚିଗଲା ପରେ ବହୁତ ବେଳଯାକେ ଶଙ୍କର ମିଶ୍ରଙ୍କୁ ଲାଗୁଥାଏ ଯେପରି କି ସେ ଏକ ନୂଆ ଜୀବନରେ ଅଲଗା ପୃଥିବୀରେ ଅଲଗା ଅନୁଭୂତି ଭିତରେ ଅଛନ୍ତି, ଏଠି ତାଙ୍କ ପାଇଁ ସବୁ ଆନନ୍ଦମୟ । ସେହି ବିଚିତ୍ର ଅନୁଭୂତି ତାଙ୍କ ଚେତନାକୁ ଆଚ୍ଛନ୍ନ କରି ରହେ କିଛିଦିନ ପର୍ଯ୍ୟନ୍ତ, ସେତେବେଳେ ନିତିଦିନର ଅଭ୍ୟସ୍ତ ଜୀବନ ବିତାଇଲା ବେଳେ ବେଳେ ଚାଉଁ ଚାଉଁ ଲାଗୁଥାଏ, ଲାଗୁଥାଏ ଯେ ତାଙ୍କ ଚାରିପାଖେ ଏ ଯେଉଁ ସଂସ୍କାର, ଏଠି ତାଙ୍କର ଯାହା ଯାହା ଇନ୍ଦ୍ରିୟ ଅନୁଭୂତି ଯେ ବାସ୍ତବାନ ।

ଏଠି ସେ ଖାଲି ସ୍ୱପ୍ନ ଦେଖୁଛନ୍ତି ଓ ଏସବୁ ମିଛିମିଛିକିଆ ଓ ତାଙ୍କର ଜାଗ୍ରତ ବାସ୍ତବ ଅନୁଭୂତି ଆଉ କିଛି ? ପୁଣି କିଛିଦିନ ଗଲେ ସେଭଳି ଦ୍ୱିଧା ଓ ପ୍ରଶ୍ନର ଅବକାଶ ବି ଆଉ ଆସେ ନାହିଁ, ଜୀବନ ତାର ସାଧାରଣ ଗତିରେ ଚାଲିଥାଏ । କିନ୍ତୁ ଯେତେବେଳେ ତାଙ୍କର କୌଣସି ବିଷୟରେ ସମସ୍ୟା ଜଞ୍ଜାଳ ମନସ୍ତାପ କି ଦୁଃଖ ବଳାଏ, ନୈରାଶ୍ୟ ମାଡ଼ିବସେ, ଲାଗୁଥାଏ ସତେ ଯେପରିକି ଆଲୁଅର ଶେଷ ଧାସକୁ ଲିଭାଇ ଦେବାକୁ ଚାରିଆଡୁ ଘୋଟି ଆସିଲାଣି ମେଘ ଅନ୍ଧାର । ସେତେବେଳେ ହଠାତ୍ ପୁଣି କେମିତି ତେଜି ଉଠେ ଆଶା ଓ ବିଶ୍ୱାସ, ଲାଗେ ସବୁ ସମସ୍ୟା ଦୂର ହୋଇଯିବ ।

ମନ ଭିତରେ ଲୁଚି ଲୁଚି ରହିଥାଏ ଉତ୍‌ପ୍ରେକ୍ଷା ଯେ ପୁଣି ସେହି ବିସ୍ମୟକର ଆନନ୍ଦକର ମୁହୂର୍ତ୍ତଟି ଆସି ପହଞ୍ଚିବ ଯେତେବେଳେ ତାଙ୍କ ଆଗରେ ସେହି ଚଢ଼େଇଟି ଉଡୁଥିବାର ସେ ଦେଖିବେ, ସେ ପୁଣି ଅନ୍ୟ କେଉଁ ସ୍ଥାନ, ଅନ୍ୟ କେଉଁ ବେଳ ।

ତା'ପରେ ସତକୁ ସତ ସେ କେବେ କେଉଁଠି ଦିଶିଯାଏ ।

ଶଙ୍କର ମିଶ୍ର ମନେ ମନେ ପଛକୁ ଚାହିଁ ସ୍ମରଣ କରୁଥାନ୍ତି ଅତୀତରେ କେବେ ଓ କେଉଁ କେଉଁ ସ୍ଥାନରେ ସେ ସେହି ସୁନ୍ଦର ଚଢ଼େଇଟିକୁ ଭେଟିଥିଲେ । ସେ ତ ସାଧାରଣ ନୁହେଁ କି ସବୁଠି ମିଳେ ନାହିଁ । ଦିଶେ ଲୋକାଳୟ ନ ଥିବା ଅଗନାଗ୍ନି ବଣରେ, ନତୁବା ଜଙ୍ଗଲରୁ ଉଡି ଆସିଥିବା ସେହି ବିଚିତ୍ର ଚଢ଼େଇଟି ଅନ୍ୟ କେଉଁଠି ତୋଟା ଅରମା ବାଟରେ ହଠାତ୍ ହାବୋଡିଯାଏ, ତା'ପରେ ଲୁଚି ଯାଏ, ତା ବି କେବେ କ୍ୱଚିତ୍ । ଚାରିଆଡ ନିର୍ଜ୍ଜନ ଓ ଚୁପ୍‌ଚାପ୍ ଥିଲାବେଳେ ହିଁ ସେ ଦିଶେ, ସେଠି ସେତେବେଳେ ଅନ୍ୟ ଜନ୍ତୁ କି ଚଢ଼େଇ ବି ଦିଶନ୍ତି ନାହିଁ ।

କିନ୍ତୁ କେବେ ଦେଖିଥିଲେ ? ଶଙ୍କର ମିଶ୍ର ସ୍ମରଣ କରିବାକୁ ମନେ ମନେ କ୍ଳାନ୍ତିକର ପରିଶ୍ରମ କରୁଥାନ୍ତି; ତାଙ୍କୁ ହେଲାଣି ବୟସ ତେ'ସ୍ତରୀ, ଏକଦା ବଳିଷ୍ଠ ଅତି କର୍ମଠ ଶରୀର ବାରମ୍ବାର ବ୍ୟାଧିର ଆଘାତରେ କ୍ଷୟ ହୋଇ ହୋଇଗଲାଣି କ୍ଷୀଣ, ଦୁର୍ବଳ, ଅପାରଗ । ଏକଦା ନାନା ଜଟିଳ ସମସ୍ୟାକୁ ଆଗ୍ରହରେ ଅନାୟାସରେଖୋଲି ଖୋଲି ଦେଖିପାରୁଥିବା ମନ ଟିକିଏ ମାନସିକ ପରିଶ୍ରମ କରିବାକୁ ପଛେଇଯାଏ, ଅଳ୍ପ ଭାବୁ ଭାବୁ କ୍ଳାନ୍ତ ହୋଇଯାଏ, ସ୍ମରଣ ଶକ୍ତି ଦୁର୍ବଳ ଓ ଟଳମଳ ଅଙ୍ଗେ ଲିଭାଇଥିବା କେତେକଥା ବି ମନେ ପଡେ ନାହିଁ । ଶଙ୍କର ମିଶ୍ର କେତେବେଳେ ଭାବନ୍ତି-''ଏଇଆ ? ନା ତା ବି ନୁହେଁ ପରା ? .....ହଁ ହଁ ଏଇଆ-ନା ନୁହେଁ, ମନେ ପଡୁନାହିଁ ।'' ବିଚାର ବାଟ ଛାଡନ୍ତି, ଚେଇଁ ଚେଇଁ ସ୍ୱପ୍ନରେ ବୁଡନ୍ତି, ତହିଁରୁ ନିଜ ଅତୀତର ଜୀବନ ଅନୁଭୂତିରୁ ଯାହାକିଛି ଭାସିଭାସି ଉଠେ ।

କେବେ ଦେଖିଥିବା ସେହି ଛୋଟ ଚଢ଼େଇଟିକୁ ଆଶ୍ରା କରି ମନେ ମନେ ଟାଣ କରି ମୁଠେଇ ଧରି ସେ ସେହିପରି ସ୍ୱପ୍ନିଳ ଧ୍ୟାନରେ ମଜ୍ଜି ରହିଲେ ଓ ଅତୀତକୁ ହେଳିଲେ; କେବେ କେଉଁ ସ୍ଥାନରେ କି ପରିବେଶରେ ସେ ତାକୁ ଦେଖିଥିଲେ ! ଗୋଟିଏ ସ୍ଥାନ ପରେ ଅନ୍ୟ ସ୍ଥାନ, ନିଜ ଜୀବନର ନାନା ସମୟର ନାନା ଚିତ୍ର, ସବୁ ଉଏଁ ଆଉ ନିଭିଯାଏ, ଧ୍ରୁବ ହୋଇ ଆଗେ ଆଗେ ଦୂରରେ ଦିଶୁଥାଏ ସେହି ଚଢ଼େଇଟି । ଦିଶିଗଲା କେତେ କେତେ ଦୃଶ୍ୟ, ଅନୁଭବ ହେଲା କେତେ କେତେ ସ୍ମୃତି, ସୁଖର, ଦୁଃଖର, ପ୍ରକାର ପ୍ରକାର ଭାବର ଉଚ୍ଛ୍ୱାସ ତେଜି ଉଠିଲା, ଯେମିତି ଅକଳନ ଜଳବିସ୍ତୃତି ଉପରେ ଢେଉଟିମାନ, ପୁଣି ଦବିଗଲା, ହଜିଗଲା; ପୁଣି ଉଭେଇଗଲା, କେତେ ଭାବ କେତେ ରସ କେତେ ସ୍ୱରର ସଙ୍ଗୀତ ଝଙ୍କାରି ଉଠିଲା, ପୁଣି ତୁନି ହେଲା, ସବୁ ଶୁନ୍‌ଶାନ୍, ପୁଣି କେବେ କେଉଁଠି ତାକୁ

ଦେଖିଥିଲି- ଭାବୁ ଭାବୁ ଆଶା ଆବେଗ କଅଁଳିଲା; ମନେ ପଡିଲା ଅନ୍ୟ ଦିନର ସ୍ମୃତି । ତା ସଙ୍ଗେ ସଙ୍ଗେ ଶଙ୍କର ମିଶ୍ର ଦେଖିଗଲେ ନିଜ ଯୌବନ ଦିନଠୁଁ ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ନାନା ଅବସ୍ଥା; ଯେତେବେଳେ କେଉଁଠି ହେଲେ ସେ ସେ ଚଢ଼େଇକି ଦେଖିଥିଲେ ।

ମନେ ପଡିଲା; ପ୍ରଥମେ ଦେଖା ଆଦ୍ୟ ଯୌବନରେ । ଆଦ୍ୟ ଯୌବନ ସଙ୍ଗେ ସଙ୍ଗେ ଦେହରେ ଆସିଥିଲା ସ୍ୱାସ୍ଥ୍ୟ ଓ ବଳର ଜୁଆର; କ୍ରମେ କ୍ରମେ ଫୁଲି ଫୁଲି ବଢ଼ି ବଢ଼ି ଉଠିଲା; ଯେମିତି ସେ ଦେଖି ଆସିଥିଲେ ପିଲାଦିନଠୁଁ ପୁରୀର ସମୁଦ୍ର କୂଳରେ ଜୁଆର ମାଡେ । ତେଜୀୟାନ୍ ହୋଇ ବଢ଼ି ଚାଲିଲା ଯୌବନ, କେତେ ବଳିଷ୍ଠ କର୍ମଠ ହେଲା ତାଙ୍କ ଶରୀର । ମନରେ ସେତେବେଳେ କି ଶକ୍ତି, କି ପ୍ରଫୁଲ୍ଲତା, କି ସାହସ, କି ତେଜ, କି ଆଶା, କି ସ୍ୱପ୍ନ । ସେହିପରି ବିତିଗଲା ପ୍ରୌଢ଼ତ୍ୱ, ସତେ ଯେପରି ସେ ଚିରଯୁବା । କାହାରିକି ଭୟ ନଥିଲା, କୌଣସି ପ୍ରତିବନ୍ଧକକୁ ହଟୁ ନ ଥିଲେ, ପରିଶ୍ରମ କରି ପାରୁଥିଲେ ଅକ୍ଳାନ୍ତ ଭାବେ, ସବୁବେଳେ ଆଶା ବିଶ୍ୱାସ ଅତୁଟ ରହିଥାଏ । କେବେ ସେ ଜୁଆର ଭଟ୍ଟା ପଡ଼ିଲା ଜଣାପଡ଼ିଲା ନାହିଁ, ଧୀରେ ଧୀରେ ପାହାଚେ ପାହାଚେ ତଳକୁ ତଳକୁ । ସେତେବେଳେ ବି କେବେ କେଉଁଠି ସେ ଚଢ଼େଇକି ଦେଖିଥିଲେ ।

ତା'ପରେ ପାହାଡ଼ି ଝରଣାର ବଢ଼ି ଯେମିତି ଛାଡ଼ିଯାଏ, ପଥର ଓ ବାଲି ଉପରେ ଛାଡ଼ିଯାଏ ପାଣି ଟବଟବ ସରୁ ଧାରଟିଏ; ସେ ବି କ୍ରମେ ଶୁଖିଯିବ ପରା- ସେମିତି ଆସିଲା ଏ ବେଳ; ଯେପରିକି ମଳିନ କ୍ଳାନ୍ତ ସୂର୍ଯ୍ୟାସ୍ତ; ଆଉ-

''କାହାର ଏ ହାଡ଼ଚମମୟ କ୍ଷୀଣ ଦେହ । ସରୁ ସରୁ ହାତଗୋଡ଼, ସତେ ଅବା ନିର୍ଜୀବ, ପିଣ୍ଡଟା ଅଛି ଖାଲି ମୁଠାଏ ଖାଇବାକୁ ଓ ବ୍ୟାଧି ଦୁର୍ବଳତା ଅକ୍ଷମତାର କଷ୍ଟ ଭୋଗିବାକୁ । ଜିଭଟା ତଥାପି ସୁଆଦ ବାରିପାରେ ଓ ଲୋଡ଼େ ସେତିକି; କିଏ ଏଇଟା ?'' ଶଙ୍କର ମିଶ୍ର ଭାବୁଥିଲେ ।

ଭାବୁଥିଲେ- ଏଇ କଣ ମୁଁ, ଶଙ୍କର ମିଶ୍ର ? ମୁହଁରେ ହସ ନଥାଏ, କେବେଠୁଁ ମୁଁ ହସିନାହିଁ ଟି ! ଆଗେ ପରା ହସର କୁହାଟ ଛାଡୁଥିଲି । କୌଣସି ବସ୍ତୁକୁ ବିଷୟକୁ ଆଗ୍ରହ ନାହିଁ, ସ୍ପୃହା ନାହିଁ, ସମସ୍ତିଙ୍କଠୁଁ ଆଡ଼େଇ ଏକୁଟିଆ ନିଜକୁ ନିଜେ ଘେନି ଆମ୍ବିଳା ମୁହଁ କରି ବିଷର୍ଣ୍ଣ ହୋଇ ସମୟ ଟାଳି ଯିବାକୁ ମନ ଡ଼ାକୁଛି । ନିଜକୁ ଭାବୁଛି ଏକୁଟିଆ ଅସହାୟ ଅଥର୍ବ ବୁଢ଼ାଟିଏ, ସତେ ତ ! କିଏ ବୁଢ଼ାଟା ମୋ ଆଗରେ ? ନା-ନା-ନା, ଯେ ମୁଁ ନୁହେଁ, ମୁଁ ତ ଶଙ୍କର ମିଶ୍ର, ଆଶା ଉଦ୍ଦୀପନା ବଳ ସାହସ ହସ ଆନନ୍ଦର ଭଣ୍ଡାର । ସବୁ ଭିନେ ଠିକଣାରେ ଖୋଜୁଛୁ ବୁଢ଼ା, ଏଠି ସେ ନାହିଁ, ଏଠି ମୁଁ, ମୁଁ ଶଙ୍କର ମିଶ୍ର, ତୁ ଯା, ଯା, ଯା-

ଶେଷ ଥର କେବେ ସେ ଚଢ଼େଇକି ଦେଖିଥିଲିଟି ? କାଲି ପରି ଲାଗୁଛି । ହଁ; ସାତ ବର୍ଷ ହେଲାଣି ପରା । ସେଥର କହିଲେ ନୀଳମାଧବ ଦେଖି ଯାଉ ଯାଉ ନୟାଗଡ଼ ଭିତରେ ଠାଏ ନିଛାଟିଆ ଜଙ୍ଗଲରେ । କାର୍‌ଟା ରଖା ହୋଇଥିଲା ଡ଼ାକବଙ୍ଗଳା ହତାରେ ଓ ମୁଁ ସେପାଖ ବଣରେ ଏକୁଟିଆ ବୁଲି ବୁଲି ଏଣେ ତେଣେ ଉଣ୍ଡୁଥିଲି, ଦିନ ଚାରିଟା ବାଜିଥିବ । କିନ୍ତୁ ସେ ସେଠିକା ବାସିନ୍ଦା ନୁହେଁ, ନିଶ୍ଚୟ ଉଡ଼ି ଉଡ଼ି ଆସିଥିବ ବାଲିଗୁଡ଼ା ମାଳ ଅଭ୍ୟନ୍ତରରୁ ଦଶପଲ୍ଲା ଅରଣ୍ୟ ବାଟେ । ସେଇପଟେ ତା ଘର ଓ ଦକ୍ଷିଣରେ ଉତ୍ତରରେ ଯେତେ ଯେତେ ଉଚ୍ଚ ପର୍ବତମାଳ ଅଛି ସେଇଠି । ପୁଣି ମୁଁ ଯିବି ସେଇସବୁ ମାଳକୁ । ମୁଁ ସେଠି ଯେତେ ଯେଉଁଠି ପ୍ରକାର ପ୍ରକାର ମୂଲ୍ୟବାନ୍ ଧାତୁ ଦ୍ରବ୍ୟର ଖଣି ଖୋଜି

ଖୋଜି ସନ୍ଧାନ କରିଥିଲି ସେ କାମ କଣ ପୂରା ସରିଲାଣି ? ଆହୁରି ବହୁତ ବାକି ଅଛି ଯେ । ପୁଣି ଯିବି ସେହି କାମରେ, ସେଇଠି ଅଗନାଗ୍ନି ବନସ୍ତ ଭିତରେ ହାବୁଡ଼ିବ ପୁଣି ସେହି ଚଢ଼େଇ, ଶାଳଗଛ ମୂଳେ ନିଃଶବ୍ଦ ନିସ୍ପନ୍ଦ ହୋଇ ମୁଁ ଠିଆ ହୋଇ ରହିଯିବି ।

ବେଳେବେଳେ ବଣୁଆ ହାତୀ ଯେମିତି ଠିଆ ହୋଇଯାଏ, ଓ ତାକୁ ଦେଖି ପାହାଡ଼ ଚଢ଼ାର କ୍ଲାନ୍ତି ଭୁଲିବି, ମୋର ଝାଳ ସରସର ମୁହଁରେ ବାଜୁଥିବ ସୁଲୁସୁଲିଆ ପବନ । କୁରେଇ ଫୁଲର ବାସ୍ନାରେ ଭାରି ଭାରି, ଆଉ କେତେ ସଜ କେତେ ଶୀତଳ ! ସାଂଗର ଲୋକେ ? ସେ ତ କେତେ ପଛରେ ଧଇଁସଇଁ ହୋଇ ଆସୁଥିଲେ, କେବେ କିଏ ଚାଲିପାରିଛି ମୋ ସଙ୍ଗରେ ପାଦ ପକାଇ ?

ଦିଶୁଥାଏ, ଢେଉ ପରି ପାହାଡ଼ମାଳ । ପାହାଡ଼ ଉପରେ ପାହାଡ଼; ତା ଉପରେ ତା ଉପରେ ବିମାନ ପରି ଖଞ୍ଜା ହୋଇଛି ।

ମନରେ ଗୋଟାଏ ଉଲ୍ଲାସର ତାତି ।

ଆଁ ଟିଏ କରି ବୁଢ଼ା ଶଙ୍କର ମିଶ୍ର ଦାଣ୍ଡ ପିଣ୍ଡାରେ ଚୌକିରେ ବସି କାନ୍ଥକୁ ଆଉଜି ଢୁଳେଇ ପଡ଼ିଥିଲେ ।

# ଶରଶଯ୍ୟା

## ୧

କାମରୁ ଫେରି ସେ ଆଜି ବାସୁଛନ୍ତି- କମଳା ଅନୁଭବ କଲା ।

କରଲେଉଟେଇ ଯନ୍ତ୍ରଣାରେ ମୁହଁ ନୋଚାକୋଚା କରି ସେହି ଖଟ ଉପରେ ପଡ଼ି ପଡ଼ି ତୀକ୍ଷ୍ଣ ଦୃଷ୍ଟିରେ ତାଙ୍କ ମୁହଁକୁ ଅନେଇ ରହିଲା ।

ମନେପଡ଼ିଗଲା- ସେ ପରା ନିଷ୍ପତ୍ତି କରିଛି ତାଙ୍କୁ ଦେଖିଲେ ମୁହଁ ଶୁଖେଇ ଆପଣା ଦେହଦୁଃଖ କଥା ଜଣେଇବ ନାହିଁ, କାନ୍ଦି କୁଞ୍ଚେଇ ହେଉ ପଛେ - ହସିବ, ଅନ୍ତତଃ ହସିବାକୁ ଚେଷ୍ଟା କରିବ, ଫେର୍ ମନଟା ସନ୍ତସନ୍ତିଆ ହୋଇଯାଉଛି କାହିଁକି ? କାହିଁକି ହଠାତ୍ ଭାବିବାକୁ ସୁଖ ଲାଗୁଛି - ଆଉ ବେଶିଦିନ ମୋର ନୁହେଁ । ନୁହେଁ ତ ନୁହେଁ, ତାଙ୍କ ବୋଝ ଉପରେ ନଳିତାବିଡ଼ା ମାଡ଼ି ଫଳ କ'ଣ ?

କମଳା ଚେଷ୍ଟାକରି ହସୁ ହସୁ ସୁରବାବୁ ମୁହଁ ଶୁଖେଇ ତା' ପାଖକୁ ଆସିସାରିଥିଲେ । ବାଁ ହାତରେ ମୁଣ୍ଡକୁ ଚାପିଧରି ମୁଣ୍ଡବାଳ ଓଟାରୁ ଓଟାରୁ କହିଲେ - ''ଆଜି କ'ଣ ଭାରି କଷ୍ଟ ବଢ଼ିଛି କମ ? ଓଃ । କ'ଣ ମୁଁ କରିବି । ଏମିତି କେତେଦିନ !''

କମଳା ହସିଦେଇ କହିଲା -''କାହିଁ କି କଷ୍ଟ ? ସବୁଦିନେ ଯାହା ଆଜି ତ ସେଇଆ, ନୂଆ ଆଉ କ'ଣ ?''

ତା'ର ତୀକ୍ଷ୍ଣ ଦୃଷ୍ଟି ଆଗରେ ଯେପରିକି ତାଙ୍କ ମୁହଁ ଆହୁରି ଶୁଖିଗଲା । ସେ କହିଲେ- ''ହଁ, କହିବ ନାହିଁ କାହିଁକି ? ତମ ଦସ୍ତୁର ତ ସେଇଆ । ତମ ଜାତିଟାର । ନିଜ ଦେହ ଭିତରେ କ'ଣ ହଉଚି ସେକଥା ନିଜ ଆଗରେ ବି କହିବ ନାହିଁ, ପର ତ ପର । ଆଖି କାନ ବୁଜି ଆପଣାକୁ ଜାଳିପୋଡ଼ି ସମସ୍ତିଙ୍କି ସେବାକଲେ ଆଗ ସ୍ୱର୍ଗରେ ବସିବ ବୋଲି ତମମାନଙ୍କ ଧାରଣା, ନା କ'ଣ କହୁଚ କମ ?''

ସୁରବାବୁ ତା' ଗାଲ ସାଉଁଳିବାକୁ ହାତ ବଢ଼ାଇଲେ । କିନ୍ତୁ ସେ ଯେପରିକି ତାଙ୍କ ସ୍ପର୍ଶ ଦାଉରୁ ଉଧୁରିବାକୁ ଚାହେଁ - ଚଞ୍ଚଳ ଘୁଞ୍ଚିଗଲା କି ମୁହଁଟା କେମିତି ହୋଇଗଲା ଯନ୍ତ୍ରଣାରେ । ଯେମିତି କ'ଣ ଛାତି ଆଡ଼କୁ କେଞ୍ଚା ମାରୁଛି । ହଠାତ୍ ମୁଣ୍ଡ ଘୂରେଇ ଦେଲା, ଆଖି ବୁଜିଦେଇ ସେ ଭାସି ରହିଲା ଶୂନ୍ୟରେ । ଅଧ ମିନିଟ୍ ପରେ ପୁଣି ଲେଉଟି ଆସିଲା, ତଳି ଓଠକୁ କାମୁଡ଼ି ଧରି ସମ୍ଭାଳିନେଲା । କହିଲା-''ଲୁଗାପଟା ବଦଳିନା କାମରୁ ଫେରିଚ ଦେହ ବେସ୍ତ ଲାଗିବଣି ଯେ, ଯାଅ ଖିଆପିଆ କର ।'' ଚେଁ ଚେଁ ହୋଇ ଡ଼ାକିଲା, ''ଇନ୍ଦିରା, ଇନ୍ଦିରା-'' ଇନ୍ଦ୍ରମଣି ତାଙ୍କ ଚାକର ଓ ପୂଝାରୀ ।

ସୁରବାବୁ କହିଲେ-''ମୁଁ ଯାଉଛି ପଛେ । ତୁମେ ପାଟି କରନା, ଦୁର୍ବଳ ଦେହରେ ଆହୁରି କଷ୍ଟ ହେବ । କ'ଣ ଅଛି ଏ ଦେହରେ ଆଉ ? ବଡ଼ପାଟି କଲେ ତ ଝୋଲାମାରିଯିବ ।''

ସେ ଦୀର୍ଘଶ୍ୱାସ ପକେଇ ଆଖି ବୁଜିଦେଲା । ମିନିଟିଏ ପରେ ଅନେଇଁଲା । ସୁରବାବୁ ସେମିତି ଠିଆହୋଇ ରହିଛନ୍ତି ।

କାନରେ ଝାଇଁ ମାରୁଚି ସେହି ପଦେ କଥା-''କ'ଣ ଅଛି ଏ ଦେହରେ ଆଉ ।'' ନାକରେ ସେହି ବାସ୍ନା । ଆଖିରେ ସବୁ କେମିତି ଗୋଳେଇ ମିଶି ହୋଇ ଝାପ୍‌ସା ହୋଇଯାଉଛି, ପୁଣି ପରିଷ୍କାର ଦିଶୁଛି, ପୁଣି କୁହୁଡ଼ିଆ ହୋଇଯାଉଛି, ପୁଣି ସ୍ଥିର ରହୁଛି ଦୃଷ୍ଟି । ଏଥର ସେ ଦେଖୁଛି - ବରଷା ଶେଷର ଶୀତୁଆ ମହଳଣ ଆଲୁଅରେ ଝଟକିଲା ପରି ଦିଶୁଛି ସ୍ଥିର ମଣିଷ ଦେହ । ସେ ତା'ର ସ୍ୱାମୀ । ଛୟାଳିଶ ବର୍ଷର ଜନ୍ମଦିନ ପାଖ ହେଲା, ସେମିତି ସେହି ଟାଣ ଗଢ଼ଣ, ବରଂ ଆହୁରି ଟାଣ । ସେହି ଓସାର କପାଳ, ମୁହଁରେ ଜ୍ଞାନର ତେଜ, କଠିନ ଚିବୁକରେ ଦୁରବସ୍ଥା ସହିତ ଲଢ଼ି ଲଢ଼ି ଆଗକୁ ମାଡ଼ିବାର ବେପରୁଆ ଠାଣି, ସେମିତି ଛାଣ୍ଡ ଅଛି ଦେହ । ଏ ଦେହ ତା'ର, ଏ ଦେହ ତା'ର- କମଳାର ଦେହ ଶିରିଶିରେଇ ଉଠିଲା, ମୁହଁ ତାତି ଉଠିଲା, ଆଖି ଚାରିପାଖ ପୋଡ଼ିଲା, ଭୋକିଲା ଆଖିରେ ଅନେଇ ରହିଲା ସୁରବାବୁଙ୍କୁ । ପୁଣି ମନେପଡ଼ିଲା ତାଙ୍କର ସହାନୁଭୂତିବୋଳା ମନ୍ତବ୍ୟ । ଏତ ସେ, ପୂର୍ଣ୍ଣାବୟବ ମନୁଷ୍ୟ, ଆଉ ନିଜେ ସେ କ'ଣ ହେଲାଣି ? କ'ଣ ହେବ ? ବିନା କାରଣରେ ଯେଉଁ ସନ୍ଦେହର ଟିକି ମେଘ ତା'ର ଚେତନା ଉପରେ ଭାସି ବୁଲୁଥିଲା ହଠାତ୍ ସେ ଟାଙ୍ଗି ହୋଇଗଲା ଏମୁଣ୍ଡୁ ସେମୁଣ୍ଡୁ, ଇଚ୍ଛାହେଲା ବର୍ଷା ହେବ । ଦାନ୍ତ ଚିପି ଚିପି କହିଲା -

''ମଦଘଡ଼ା କାମ ସରିଲେ ଗଡ଼ଗଡ଼ା-''

ସୁରବାବୁ ଚମକି ପଡ଼ିଲେ, କହିଲେ-''ଏଁ, କ'ଣ କହିଲ ?''

କମଳା ଈର୍ଷାରେ ହସିଲା, କହିଲା, ''କିଛି ନୁହେଁ, ଦେଖ, କୋଉଦିନୁଁ ତମକୁ କହୁଛି, ମୁଁ ତ ଆଉ ପାରିଲି ନାହିଁ, ବିଛଣାନାଗୀ ହୋଇ ପଡ଼ିରହିଲି, ତମର ଭାରି ଅଯତ୍ନ ହଉଚି । ତମକୁ ମୋ ରାଣ, ତୁମେ-''

ଆଶ୍ଚର୍ଯ୍ୟ ହୋଇ ଦେଖିଲା- ସୁରବାବୁ ମୁହଁ ବୁଲେଇଲେ ନାହିଁ, ତାଙ୍କ ଆଖି ଜିକି ଜିକି ହୋଇ ମିଟିମିଟି କଲା ନାହିଁ - ଏଭଳି ପ୍ରସ୍ତାବରେ ସବୁଦିନେ ତାଙ୍କର ଯେଉଁ ବିଷର୍ଣ୍ଣଭଙ୍ଗୀ ହୁଏ ଆଦୌ ତା' ହେଲା ନାହିଁ, ବରଂ ରାଗିଯାଇ ସେ କହିଲେ-

''କଣ ତମେ ଏମିତି ଏସବୁ ବିଷୟଗୁଡ଼ା କହୁଚ, ଏ କ'ଣ ଭଲ କଥା ? ଛି ।''

କମଳାର ଛାତି ଦବିଗଲା, ତାଙ୍କ ପାଇଁ ରାଗ ନୁହେଁ ଯେ ଗୋଟାଏ ଅଜଣା ଆଶଙ୍କାରେ । କହିଲା-

''ମାଲୋଃ । ତମେ ରାଗିଲ କି ? ତମେ ତ କାମ କରି କରି ଆସିଚ, ଯାଉନ ଲୁଗା ବଦଳି ଗୋଡ଼ହାତ ଧୋଇବ, ଜଳଖିଆ ଖାଇବ, ମୋ ପାଖେ ଠିଆ ହୋଇ ରହିଚ କାହିଁକି କହିଲ ? ମିଛରେ ଭୋକ ମରିବ ।'' ଚିଁ ଚିଁ କରି ଡାକ ଛାଡ଼ିଲା-''ଇନ୍ଦିରା, ବାବୁ ପରା ଠିଆ ହୋଇଛନ୍ତି, ମୁଁ ଡାକୁଚି ଶୁଣୁନାହିଁ ?''

ସୁରବାବୁ ଚାଲିଗଲେ ।

ଅଳ୍ପକ୍ଷଣ ପାଇଁ ପବନରେ ରହିଗଲା ଖାଲି ସେହି ବାସ୍ନା ।

କମଳା ଖଟ ଉପରେ ଚିତ୍‌ହୋଇ ପଡ଼ି ରହି ଭାବି ଲାଗିଲା । ପଦାରେ କେଡ଼େ ଛୁଣିକା ଛାଇ ବଢ଼ିଲାଗିଛି ।

ସେଇଠି ପଡ଼ି ପଡ଼ି ସାମ୍ନାରେ ଝରକାବାଟେ ବାଡ଼ର ସଜନା ଗଛଟା ଦିଶେ । ଖରାରେ ଝିଲି ଝିଲି ହୋଇ ମୁରୁକି ହସା ଦେଉଥିଲା ତା'ର ପତ୍ରଗୁଡ଼ିକ, ଧୀରେ ଧୀରେ ଗଛଟା ହେଲାଣି ଗୋଟାଏ ଅନ୍ଧାର ସ୍ତମ୍ଭ ।

ଚେତନାରେ ଫେରିଯାଇଛି କାହିଁ ବାଇଶ ବର୍ଷ ତଳକୁ । ଘନ ଜନ୍ମ ହୋଇନାଇଁ, ମାଣିକ, ସୁନା-ସେମାନେ ତ ସ୍ୱପ୍ନରେ ନାହାନ୍ତି । ବିଭାଘରର ପହିଲି ବର୍ଷଟା ।

'' ତୁମେ ଭାରି ବାସୁଛ କମ-ଆଃ-''

''ଛି-ଛି-ଉଠ ଉଠ- ସେ ଘରେ ବୋଉ ଅଛନ୍ତି ପରା-ହେଇ କିଏ ଡାକିଲାଣି ଯାଅ ଦେଖ- ତୁମର କେଉଁ ଛାତ୍ର ହେବ ପରା । ପାଠ ପଢ଼େଇ ଆସିଲ-ଭୋକ କରୁ ନାହିଁ-''

ମହକି ଉଠୁଛି ଚାରିଆଡ଼ । ତା'ର ମୁଣ୍ଡ ବାଳକୁ ଜାଲ ପରି ଆପଣା ମୁହଁରେ ଘୋରେଇ ପକେଇ ତୁନି ହୋଇ ସେ ପଡ଼ି ରହିଛନ୍ତି ?

''ଉଠ-ଯାଉଚ ?-''

''ତୁନି ରହ । ମୁଁ ଗୀତ ଶୁଣୁଚି ।''

''ଧ୍ୟାତ୍‌ ।''

''ମଣିଷ ଛାତିରେ ଅଛି ସଂଗୀତ, ଦେହରେ ଅଛି ବାସ୍ନା; ସ୍ପର୍ଶରେ କ'ଣ ଅଛି ?''

''ନିଆଁ ।''

''କହି ପାରିଲ ନାହିଁ । ସ୍ପର୍ଶରେ ଅଛି ପଦ୍ମର ପରଶ, ଆଉ ନିଦ ।''

''ହୁଁ, ସବୁ ଅଛି ତୁମ ଭାଷାରେ । ତୁମେ ସାହିତ୍ୟ ପ୍ରଫେସର କିନା ?''

''ସାହିତ୍ୟ ନାଁ ଧରନା । ସାହିତ୍ୟ ଜୀବନଠୁ ବଡ଼ ନୁହେଁ, ଜୀବନର ବଦଳା ନୁହେଁ, ଜୀବନକୁ ଆଶ୍ରା କରି ଗୋଟିଏ କଳା-ରହ, ମୁଁ ଜୀବନକୁ ପିଏଁ ।''

''ଲାଜ ମାଡୁନାହିଁ କେମିତି ମ' ?''

''ଲାଜ ଗୋଟାଏ ଲୋକଦେଖାଣିଆ ଭେକ, ଯେଉଁଟାରେ ବିଶ୍ୱାସ କରେ ନାହିଁ ତାକୁ ରଖି ଲାଭ କ'ଣ ?''

ଚମକି ପଡ଼ି କମଳା ଉଠିବାକୁ ଚେଷ୍ଟା କଲା । ଏକା ଝାଙ୍କେକେ ଅନୁଭବ କଲା ଦେହଯାକର ସବୁ ବଥା, କେଞ୍ଚା, ଦୁର୍ବଳତା । କରୁଣ ହୋଇ ପଡ଼ି ରହି ସେ ଧକେଇ ହେଲା, ଆଉ ସେତିକିବେଳେ ବୁଝିପାରିଲା, ସେ ବାସ୍ନାଟା ସେପରି କିଛି ଗୋଟାଏ ଆଶ୍ଚର୍ଯ୍ୟ ଜିନିଷ ନୁହେଁ, ଗୋଟାଏ ଚିହ୍ନା ଅତରର, ସେ ବଜାରରେ ମିଳେ । ଜଣେ ଲଗେଇଥିଲେ ଆଉ ଜଣେ କତିରେ ଥିଲେ ଆଉ ଜଣକ ବି ବାସେ ।

ବହୁକାଳୁ ସେ ଅତର ସଉକି ହେବା ଛାଡ଼ିଦେଇଛି । ସବୁ ସଉକ ସବୁ କଅଁଳ ଖୋଇ ଛାଡ଼ିଦେଇ ସେ ଘରର ଟାଣୁଆ ଘରଣୀ ହୋଇଥିଲା । ପିଲାକୁ ପାଳିବାର ସବୁ ପରିଶ୍ରମ ତାଆରି ।

ସେମାନେ ଉଡୁରି ଯାଇଛନ୍ତି । ମାଣିକ, ସୁନା ପରଘର କଲେଣି, ଘନ କୋଇମ୍ବାଟୁର୍‌ରେ ଜଙ୍ଗଲ ବିଦ୍ୟା ପଢୁଛି । ଇଚ୍ଛା ହେଲାଣି - ପିଲାଟାଏ ହେଉପଛେ ଚାକିରି ଧରିଲେ ବାହା କରିଦେଲେ ଘର ତୁଲେଇବାକୁ ବୋହୂ ଆସିବ । ଖାଲି, କାମ ବେଳକୁ ସତ ବଳୁନାହିଁ ।

ସନ୍ତାନ ଗଢ଼ି ସଂସାର ଆବୋରି ଦେହକୁ ପୂର୍ଣ୍ଣାହୂତି ଦେଇ ଆପଣାର ସବୁ ଐଶ୍ୱର୍ଯ୍ୟ ସେ ଉଜାଡ଼ି ଦେଇଥିଲା ଏହିମାନଙ୍କ ପାଇଁ, ପାଇଥିଲା ତ୍ୟାଗର ଆନନ୍ଦ । ହାତ ପାପୁଲିର କଅଁଳ ପଣ ଘରଧନ୍ଦାରେ ହିଁ ସରିଥିଲା, ରଙ୍ଗ ମଉଳିଥିଲା, ମୁଣ୍ଡବାଳ ଉପୁଡ଼ି ଉପୁଡ଼ି ରହିଲାଣି ପିଠି ମଝିରେ । ସମସ୍ତିଙ୍କି ଖୋଇ ଆପେ ଖାଇଲା ବେଳକୁ ଖାଲି କାମ ବଢ଼େଇ ଦେବାଲାଗି ଖିଆ, ପିନ୍ଧିବାକୁ ଯାହା ମିଳିଲା ହାତ ପାଆନ୍ତି, ଲଗେଇବାକୁ ବଜାରର ଗନ୍ଧ ନଡ଼ିଆତେଲ, ପରିଶ୍ରମ କରିବାକୁ ଅଧିକାରଟା ଥିଲା ବଡ଼ ସଂପତ୍ତି, ଦେଢ଼ବର୍ଷ ହେବ ରୋଗରେ କଷ୍ଟ ପାଇ ଅଚଳ ହୋଇ ଖଟରେ ପଡ଼ି ପଡ଼ି ତା ବି ଯାଇଛି । ବହୁତ ଡାକ୍ତର ଦେଖିଲେଣି ବହୁତ ଔଷଧ ଦେହରେ ଭେଦିଲାଣି କିଛି ଉପକାର ହେଉନାହିଁ । ଗୋଡ଼ରେ ଅଣ୍ଟାରେ ସେହି ଦରଜ, ଦେହରେ ସେହି ଉପସର୍ଗ । ଦୁର୍ବଳତା ବଢ଼ିଚାଲିଛି, ବୁଝିଲାଣି ଦେହସାରା ନିସ୍ତେଜ ହୋଇ ମରି ମରି ଆସୁଛି, ପଡ଼ି ପଡ଼ି ଖାଲି କଲବଲ ।

ସେ ଓ ଅତର ।

କିନ୍ତୁ ସେହି ବାସ୍ନାଟା ତାକୁ ଅଟା କରିବାକୁହିଁ ତାଙ୍କରି ଦେହରେ ଲାଗି ହୋଇ ଫେରି ଆସିଛି । ସାଧାରଣ ନୁହେଁ, ଖୁବ୍ ଅସାଧାରଣ । ସେ ସେସବୁର ପାଖ ପଶନ୍ତି ନାହିଁ, ଖାଲି ପଢ଼ା, ଲେଖା । ଖିଅର ହେବାକୁ ଭୁଲିଯାଆନ୍ତି, ମୁଣ୍ଡ କୁଣ୍ଡେଇବାକୁ ବେଶୀ ନିଘା ନାହିଁ, ପୋଷାକ ଭଲ କି ମନ୍ଦ ଏତେକଥା ଭାବି ନାହାନ୍ତି କେବେ । ଜ୍ଞାନରେ ବଡ଼, ପ୍ରଫେସର ଲୋକ । ତାଙ୍କୁ ସବୁ ସହେ, ସବୁ ମାନେ, ଖାଲି ମାନେ ନାହିଁ ଅତର ବାସ୍ନା ।

କାହାର ତେବେ ସେ ?

ଓଃ । କେଡ଼େ ଭଲ ସ୍ୱାମୀ ତାର । କ'ଣ ନ ଦେଇଥିଲ ଭଗବାନ୍ !

ଅନ୍ଧାର ପଡ଼ି ଆସୁଥିଲା । କମଳା କାନ୍ଦିଲା । ଲୁହ ବି ବେଶି ନାହିଁ । ତତଲା ଆଖିକି ତିନ୍ତେଇଲା ମାନିଆ କେଇଟା ଟୋପା ମୋଟେ ।

ଇନ୍ଦ୍ରା ଆଲୁଅ ଥୋଇଦେଇ ଗଲା । କମଳା ପଚାରି ବୁଝିଲା - ସୁରବାବୁ ନାହାନ୍ତି । ବୁଲି ଗଲେଣି ।

''କୁଆଡ଼େ ଗଲେରେ ?''

''କହିକରି ଯାଇନାହାନ୍ତି ତ ଅପା-

''ହୁଁ ।''

ଗୁମ୍ ହୋଇ ରହିଲା ।

ବଜାରରେ ଅତର କିଣିବାକୁ ମିଳେ, କାହାରି ଏକଚାଟିଆ ନୁହେଁ ।

ସଂସାରଯାକ ମଣିଷ ଭର୍ତ୍ତି, ଖୋଜିଲେ ମଣିଷ ବି ମିଳନ୍ତି ।

ଓଃ, କାହାରି ପାଇଁ କେହି ଅପେକ୍ଷା କରେ ନାହିଁ ।

ସବୁ ସ୍ନେହ, ସବୁ ସୋଗ - ଦି'ଦିନିଆଁ, ମିଛ ! ମିଛ !

ପିଠି ବୁଲେଇଦେଇ କମଳା ପଡ଼ି ରହିଛି, ଲୁହ ଟୋପା ଟୋପା କେରା କେରା ହେଲାଣି । ଇନ୍ଦ୍ରା ଠିଆ ହୋଇଛି । ଦେଖି ଦେଖି ଆଖିସହା ହେଲାଣି, ତଥାପି ସେ ଦୁଃଖ କରେ- କାହିଁକି ଏ ଏଡ଼େ ବେମାରିଆ, କେତେଦିନ ଏମିତି ପଡ଼ିଥିବେ ।

ଲୋକେ କହନ୍ତି ସେ ମାଇଚିଆ ।

ମାଇଚିଆ ଇନ୍ଦ୍ରା ରୋଗିଣୀ ମାଇପିଟିର ମନ ଦୁଃଖ ବୁଝିବାକୁ ଧ୍ୟାନ ବଢ଼ୋଉଛି ।

କିଛି କହୁନାହାନ୍ତି ଯେ ! ପଚାରିଲା-''କଣ ତରକାରି ହବ ଅପା ?''

''କେଇଦିନ ମୁଁ ଥିବି ମତେ ପଚାରୁଥିବୁରେ ? ମୁଁ କ'ଣ ବସିଥିବି ?''

ପାଟି ଗୋଦରା ଶୁଖୁଛି । କାନିଟାକୁ ଚୋବେଇ ଚୋବେଇ ଇନ୍ଦ୍ରା କହିଲା -''ତମେ କାନ୍ଦୁଚ ଅପା । ଛି- ଦେହ କ'ଣ ଭଲ ହେବ ନାହିଁକି ?''

''ଚୂଲିକି ଯାଉ ସେ ରଡ଼ ଦେହରେ । ମଣିଷ ବଞ୍ଚି କି ଲାଭ । ଖାଲି ଦହଗଞ୍ଜ ସିନା ସାର, ନହେଲେ କିଏ କାହାର, ଜୀଇକିରି ଫଳ କ'ଣ ?''

ଇନ୍ଦ୍ରା ଚାଲିଗଲାଣି । କମଳା ଲେଉଟି ପଡ଼ି ଦେଖିଲା ।

ଯାଃ ମନକଥା ଜଣକ ଆଗରେ ହେଲେ ସେ କହି ଦେଇଛି । ମୁହଁ ପୋଛିଲା । ପରିଷ୍କାର ତୁଣ୍ଡ ଖୋଲି ସେ କହିଦେଇଛି ଯେ ସେ ମରିବାକୁ ଚାହେଁ । ଏଥର ହାଲୁକା ଲାଗୁଛି ।

ମରଣ ଉପରେ ସ୍ଥିର ହୋଇ ଚିନ୍ତା ଢ଼ାଳିଦେଇ ସେ ଶୋଇ ରହିଛି ।

ପଡ଼ି ପଡ଼ି ଜୁକୁଜୁକୁ କରି ଅନେଇ ରହିବା ଅପେକ୍ଷା ମରଣ ଭଲ ।

ସହିବା ଅପେକ୍ଷା ମରଣ ଭଲ । ମରଣ ଆସୁଛି ତ, କେତେ ଡେରି ?

କ୍ଷମା କଥା ମନେପଡୁନାହିଁ, ମନେପଡୁଛି ଖାଲି ଅଭିମାନ ।

ଘନ ବୋଉ ବୋଲି ପାଣି ପିଏନାହିଁ କିନ୍ତୁ ଆଗ ତାର ପଢ଼ା ତା'ର ଭବିଷ୍ୟତ ଚିନ୍ତା । ଚାରିମାସ ତଳେ ଯେତେବେଳେ ଅବସ୍ଥା ଅତି ଖରାପ ହୋଇଥିଲା ସେତେବେଳେ ସେ ଚାରିଦିନରୁ ବେଶୀ ରହିପାରିଲା କେଉଁଠି ? ବାପେ ବି ଜିଗର କରି ପଠାଇଦେଲେ, ସମସ୍ତଙ୍କର ଏକ ଦୁଆ, ''ପଢ଼ା ମାରାହେବ କାମ ମାରାହେବ !'' ମାଣିକ, ସୁନା- ପରଗୋତ୍ରୀ ଝିଅ- କେଇଥର ଆସିବେ ? କାହିଁକି ଅବା ଆସୁଥିବେ ? କେହି ଆସିବେ ନାହିଁ । ସମସ୍ତଙ୍କର ନିଜର ସଂସାର ଅଛି, ଧନ୍ଦା ଅଛି ।

ଆପଣାର ଯେ ସେ କଲେଜରୁ ଆସିଲେ ତ ଗଲେଣି ବୁଲି ।

କୁହା ନାହିଁ ପୋଛା ନାହିଁ, ଚାଲିଗଲେ- ।

ଆଲୁଅ ଜଳୁଛି, ପଦାକୁ ଚାହିଁ କମଳା ନିଷ୍ଚଳ ହୋଇ ପଡ଼ିରହିଛି । ପାଟି ଅଳ୍ପ ଖୋଲିଛି, ଯେପରିକି ଖୋଲୁ ଖୋଲୁ ଅଟକିଛି । ଯେପରିକି ଗୋଟାଏ କ'ଣ କହୁ କହୁ ସେଇଠି ବାଧା ପାଇ ମନ ଉଡ଼ି ଚାଲିଯାଇଛି ଅନ୍ୟ ଆଡ଼େ, ତାର କାହାଣୀ ସରି ନାହିଁ ।

## ୨

ସେ ଭାବିଥିଲା ଏ ବୟସରେ ଦେହ-ଲାଳସା ଶେଷ ହେବା ଉଚିତ । ଗୋଟିଏ ପୁଅ, ଯୋଡ଼ିଏ ଝିଅ- ପନ୍ଦର ବର୍ଷର ଶାଶୁଘରକୁ ଆସି ବାଇଶ ବର୍ଷ ସେଠି ଘରକରଣା । ଦୈର୍ଘ୍ୟରେ ଯୁଗେ, ସାଙ୍ଗର

ଲୋକେ କେତେ ତ ଗଲେଣି ସେପାରିକି, କେତେ ସଂସାର ଚୂନା ହେଲାଣି । ଏକୋଇଶ ବର୍ଷ ତଳେ ଘନର ଜନ୍ମ ପଛେ ପଛେ ବି ସେ ଏକଥା ଭାବିଥିଲା । ଡାକ୍ତରଖାନା ମନେପଡ଼େ, ଆଉ ମନେପଡ଼େ ଯନ୍ତ୍ରଣା, ଗୋଟିଏ ଛୋଟ ଅପରେସନ, ଡ୍ରେସିଂ ବେଳର କଷ୍ଟ, ତା ସହିତ ଶୀତଦିନେ ଅଦିନିଆଁ ବରଷା ପାଗ, ମଞ୍ଜ ଥରେଇ ଥରେଇ କୋଇମରା ପବନ ଯେ ସବୁ ତାତି ନିଭେଇ ଦିଏ । ଅଧ୍ୟାପକ ଶାନ୍ତ ଭଦ୍ର ସୁରବାବୁ ତେଣୁ ଅଧରାତିରେ ଚମକି ପଡ଼ନ୍ତି ତାର ଚିତ୍କାର ଶୁଣି - "ତମକୁ ନିଦ ହଉନାହିଁ କି ? ହେଇ, ପିଲାଟା ଉଠି ପଡ଼ିଲା, ମୁଁ କ'ଣ କରିବିଟି ।" ତା'ପରେ "ଶୋଃ-ଶୋଃ-ଶୋଃ-" କହି ପିଲାକୁ ଚାପୁଡ଼ାଏ । ପିଲା ପ୍ରକୃତରେ ଉଠିପଡ଼ି ଗର୍ଜନ ଛାଡ଼ି କାନ୍ଦିବାଯାକେ ।

ଆନନ୍ଦକୁ ଆଶ୍ରା କରି ଜୀବନ । ସବୁବେଳେ ସେଇ ଗୋଟାଏ ଭୟ ଆବୋରି ରହିପାରି ନାହିଁ, ଭୟକୁ ଆଶ୍ରା କରି ଜୀବନ ନୁହେଁ । ତେଣୁ ପୁଣି କେବେ ସେ ହୁଗୁଳା ହୋଇଯାଇଛି । ଆତ୍ମରକ୍ଷା ପାଇଁ ଶାସ୍ତ୍ରର ସଦୁପଦେଶ ନିଦବେଳର ମନରେ ଜାବୁଡ଼ି ରଖି ପାରିନାହିଁ । ଦେହ ଦେହହିଁ ରହିଛି-ସେ ଆଘାତ ପାଏ ପୁଣି ଆଘାତର କଷ୍ଟ ଭଲ ହୋଇ ନୂଆ ଆଘାତକୁ ଅପେକ୍ଷା ରଖେ ।

ଘନ ପରେ ମାଣିକ ପରେ ସୁନା ।

ସେମାନେ ଆନନ୍ଦର ଫଳ, ଠିକ ଉଲ୍ଲାସର ନ ହୋଇ ପାରନ୍ତୁ ପଛେ ।

ତଥାପି ସେ ପ୍ରାଣପଣେ ଆପଣାର ବିଶ୍ୱାସ ଜନ୍ମାଏ, ଦେହ ଲାଳସା ଶେଷ ହେବା ଉଚିତ । କେତେଥର ତାର ନିର୍ଜୀବା 'ବଉଳ' ଶୋଭନାକୁ କହିଛି- "ବଉଳ ଲୋ, ଏ ଖାଲି ଯନ୍ତ୍ରଣା, ଏ ଖାଲି କଲବଲ । ସୁଖ କାହାକୁ କହନ୍ତି ? ବାପ ଘରେ ଭଲ ଥିଲେ ଲୋ, ସେ ଯୋଡ଼ ପହଁରା, କଇଁଫୁଲ ତୋଳା, ଗଛ ଚଢ଼ା, ଆଉ ପଡ଼ିଆଏ ପଡ଼ିଆଏ ଦଉଡ଼ା, କାହିଁ ସେ ଆଉ ?"

ଟାଣ କାର୍ଯ୍ୟକ୍ଷମ ନିରୋଗ ଅଙ୍ଗପ୍ରତ୍ୟଙ୍ଗ ଜୀଅନ୍ତା ହଲିଲା ଛାଇ ମନେପଡ଼େ, ଦୂରର ଅତୀତ ମନ ଭୁଲେଇ ଭୁଲେଇ ସାକୁଲେଇ କୋବଲେଇ ଡାକେ ।

ଦୀର୍ଘଶ୍ୱାସ ସହିତ ଅଙ୍ଗେ ନିଭେଇବା ଦର୍ଶନଶାସ୍ତ୍ରର ଢେଉ ଅନ୍ତର ଠେଲି ଠେଲି ଉପରକୁ ଉଠେ ।

ବଉଳ ବୁଝୁଥିଲା । ବଉଳର ଦ୍ୱିତୀୟ ସନ୍ତାନ ଜନ୍ମହେବା ପରଠୁଁ ଲାଗିରହିଲା ତା'ଠି ରୋଗ, ଦିନକୁ ଦଶଥର ଝାଡ଼ା, ଖାଇଲେ ହଜମ ହୁଏ ନାହିଁ, ନିରକ୍ତିଆ ଅବସ୍ଥା ବଢ଼ିଚାଲିଲା ଦିନୁଁଦିନ । ଚାହୁଁ ଚାହୁଁ ବିଦାକାଠି । ବଉଳର ବର ଲୁହା କାରଖାନାରେ ବକୁଆ ଫୋରମ୍ୟାନ । ଭୀମ କେମିତି ଦିଶୁଥିବ ତାରି ଗୋଟିଏ ସଂକ୍ଷିପ୍ତ ପରିଚୟ ।

ବଉଳ ସା' ଦେଇ କହେ-"ସତ ଲୋ ସତ, କିଏ ଜାଣିଥିଲା ଏତେ କଲବଲ ? ମଣିଷ ଘର କରେ କାହିଁକି କେଜାଣି ? ସେ ରୂପ ସେ ରଙ୍ଗ ସେ ବଳବହପ କୁଆଡ଼େ ଉଭେଇ ଯାଏଟି ଲୋ ।" କାଳେ ପତିଦ୍ରୋହ ହେବ ବୋଲି ବଉଳ ତୁନି ତୁନି କହେ-"ବାପଘର ଛାଡ଼ିଲେ ମନ ଜାଣି ପଖାଳ ଗଣ୍ଡାଏ କେହି ଦେବାକୁ ନାହିଁ ।"

କମଳା ମୁଣ୍ଡ ହଲୋଉଥିଲା, ଉଁ ଚୁଁ ହୁଏ ନାହିଁ । ସୁରବାବୁଙ୍କୁ ସେ ଲୋଭୀ କି ନିର୍ଦ୍ଦୟ ବୋଲି କହିବା ଚାରା ନଥିଲା । ଚାବି ତାରି ପାଖେ, ଯାହା ମିଳିଲା ତାରି ପାଖେ ଅଜାଡନ୍ତି । ନିଜର ସଉକ ବି ନାହିଁ । ବଉଳର ବର ଆଉ ସେ ! ଆପଣା କଥାକୁ କାଟି ସାନ୍ତ୍ୱନା ଦେଇ କହେ-"ଆଲୋ

ସବୁ ଭାଗ୍ୟ, କହିବୁ କାହାକୁ ?'' ବଉଳର ଶିରୀତୁଟା ସ୍ୱାସ୍ଥ୍ୟ, ଫୁରଫୁର ମୁଣ୍ଡ, ମଇଳା ଲୁଗାରୁ ତା' ଅବସ୍ଥା ବିଷୟରେ କମଳାର ନିଜର ଧାରଣା ଜନ୍ମେ । ଆଉ ସେ ବୁଝେ, ଦାନ୍ତ ହଲର ହଲର ପାନପାକୁଳି କରା ଫାଳିକିଆ ହାଡୁଆ ମୁହଁ ବଉଳର ଅଛି କହୁଛି, ପ୍ରକୃତରେ ସେ ଗୋଟିଏ ବିଦ୍ରୋହୀ ।

ମନର ଗୁପ୍ତ ବିଦ୍ରୋହ ଘେନି ବଉଳ ବଞ୍ଚିରହି ପାରିଥିଲା, କିନ୍ତୁ ପୁଣି ଶୁଣାହେଲା ବଉଳର ଛୁଆହେବ । ଛୁଆ ହେଲା, କିନ୍ତୁ ବଉଳ ରହିଲା ନାହିଁ ତା' ପୁଅକୁ ଦେଖିବାକୁ । ଡାକ୍ତରଙ୍କ ଦୋଷଦିଆ ଆଖି ଆଗରେ ଫୋରମ୍ୟାନ ବାବୁ ବଂଶୀଧରକୁ କାଖେଇ ଠିଆହୋଇ ଗେଲ କରିଥିଲେ, ତା'ର ନିରକ୍ତିଆ ମା' ପ୍ରସୂତି ମେଜିଆ ଉପରେ ଆଖିବୁଜି ପଡ଼ି ରହିଥିଲା ଖଣ୍ଡେ କୋତରା ଚାଦର ପରି ।

ଏଇ ଅନ୍ତିମ ଦୃଶ୍ୟର କାହାଣୀ କମଳା ଶୁଣିଥିଲା ଅବଶ୍ୟ ସୁରବାବୁଙ୍କଠାରୁ, ସୁରବାବୁ ସହୃଦୟ ସାହିତ୍ୟ-ପଢ଼ାଳି, ଲୁହଢ଼ାଳି ଆଖି ପୋଛି ଦେଖିଥିଲେ, ହୃଦୟ ଢ଼ାଳି ବର୍ଣ୍ଣନା କରିଥିଲେ ତା'ର ବାହାର କଥା । ମାର୍ଜିତ ଭାଷାରେ ଯଥାସାଧ୍ୟ ଜୀବନ୍ତ କରିଥିଲେ ବିବରଣୀକୁ ।

ଭିତର କଥା କମଳା ଆପଣା ଭିତରେ ଅନୁଭବ କରିଥିଲା ।

ବଉଳ ତାରି ।

ସେ ନିଜେ ସାହିତ୍ୟିକା ନୁହେଁ, ନାରୀ ।

ଖଟରେ ପଡ଼ି ଦୂରକୁ ଚାହିଁ ଦେହକୁ ଛାଡ଼ିଯାଇ ତା'ର ଚେତନା ଅନ୍ତରୀକ୍ଷରେ ମୁକ୍ତିର ମାର୍ଗ ଖୋଜୁ ଖୋଜୁ ବଉଳକୁହିଁ ଭେଟିଥିଲା କେଉଁ ସ୍ଥିତିରେ । ଚାଉଁକିନା ଦିଶି ଯାଇଥିଲା ହାଡ଼ଚମର ସେ ନୋଚାକୋଚା ଫାଳିକିଆ ମୁହଁରେ ଚିରୁଡ଼ାଏ ବଙ୍କା ହସ, ଜୀବନ ବିମୁଖ ଅବିଶ୍ୱାସୀ ହସ ଯାହାକୁ କମଳା ଆଗେ ଦୟା କରୁଥିଲା । ଆଜି ତା'ର ଦୟାର ଭଣ୍ଡାର ଖାଲି, ସେ ନିଜେ ଦୟନୀୟା । ଲାଗୁଛି, ବଉଳହିଁ ଜିତିଛି, ତା'ର ସେ ବଙ୍କା ହସରେ ସୂର୍ଯ୍ୟକିରଣର ଝଲକ ।

''ଯିବା ସମସ୍ତେ, କିଏ ଆଗ କିଏ ପଛ, ତେବେ ଏ କଲବଲ କାହିଁକି ?'' ସେ ପଚାରନ୍ତା । ଚେତନା ଘଟକୁ ଫେରିଆସୁଛି । ଝଣଝଣେଇ ଉଠୁଚି ଦେହକଷ୍ଟ । ମନେପଡୁଛି, ସବୁ ମନେପଡୁଛି । ଖିଅକୁ ଖିଅ ଯୋଡ଼ିଲେ ଗୋଟିଏ ରୂପ ହୁଏ । ସେଦିନ ତ ଆସିଥିଲା ସଞ୍ଜବୁଡ଼େ । ''ଏଇ ଦେଖ କମ'', ସୁରବାବୁ ଚିହ୍ନେଇ ଦେଇଥିଲେ, ''ଜଣେ ନୂଆ ମଣିଷ ଆସିଛନ୍ତି । ଯାଙ୍କ ନାଁ ଶ୍ରୀମତୀ ଚନ୍ଦ୍ରମିଧା ଓରଫ ଉଷାରାଣୀ ଦେବୀ । ଆଶ୍ଚର୍ଯ୍ୟ ଏ । ଶ୍ୟାମ ଦେଶର ଲୋକ, ସିଲୋନର ନାରୀନିକେତନରେ ପ୍ରଫେସର ଥିଲେ । ୟୁନିଭରସିଟିମାନଙ୍କ ପ୍ରଫେସରବଦଳ ପ୍ରଥା ଅନୁସାରେ ଆମ କଲେଜକୁ ପ୍ରଫେସର ହୋଇ ଆସିଛନ୍ତି । ପଢ଼ାନ୍ତି ତ ଇଂରେଜୀ, କିନ୍ତୁ ହିନ୍ଦୀ, ବଙ୍ଗଳା ଓ ତାମିଲ ଭାଷାରେ ଅସାଧାରଣ ପାଣ୍ଡିତ୍ୟ ଅର୍ଜିଛନ୍ତି । ଆସିବା ଆଗରୁ କୁଆଡ଼େ ପୁରୀରେ ଦି'ମାସ ଥିଲେ, ଆଉ ଦି'ମାସରେ ଓଡ଼ିଆ ବି ଶିଖିଯାଇଛନ୍ତି ବଡ଼ଚଞ୍ଚଳ । କିଛି ଲେଖିପାରିବେ, କିଛି କହି ପାରିବେ । ଆଉ ଜାଣ - ପିଲାପରି ଅଖଳା ଆଉ ସରଳ । ମୁଁ ବର୍ତ୍ତମାନ ତାଙ୍କ ପ୍ରମାଣ ଦେଉଛି, ତାଙ୍କ ପୂର୍ବପୁରୁଷ ଏଇ କଳିଙ୍ଗର ଲୋକଥିଲେ, ତେଣୁ ଓଡ଼ିଆ ଜ୍ଞାନ ତାଙ୍କ ପ୍ରାରବ୍‌ଧ । ତୁମେ ବର୍ତ୍ତମାନ ବୁଝିପାରିବ ତାଙ୍କ ଓଡ଼ିଆ ଶିକ୍ଷା କେତେଦୂର ।''

ଚନ୍ଦ୍ରମିଧା ହସୁଥାନ୍ତି, ଠିଆ ହେଲେ ବି ଦେହରେ ଗତି ଥାଏ । ଦୁଇ ବାହାକୁ ଛାତି ମଝିକି ଆଣୁଥାନ୍ତି ଫେର ପାଡୁଥାନ୍ତି, କସରତ କଲାପରି ।

ସୁରବାବୁ କହିଲେ - ''ସ୍ୱାଗତଂ''

ଚନ୍ଦ୍ରମିଧା କହିଲେ -''ୱିଲକୁମିଆନ୍-ୱେଲକମ୍-ସ୍ୱାଗତଂ''

ସୁରବାବୁ କହିଲେ-''ଶୁଣିଲ, ଖାଲି ଅର୍ଥନୁହେଁ, ଭାଷାତତ୍ତ୍ୱ ଅନୁସାରେ ଉତ୍ପତ୍ତି ବି ।''

ଚନ୍ଦ୍ରମିଧା ସୁରବାବୁଙ୍କ ଆଡ଼କୁ ଆଖିମିଟିକା ମାରି କହିଲେ- ''ଆମୋ-ଆଇ ଲଭ- ମେଁ ପ୍ୟାର କରତି ହୁଁ- ଆମି ଭାଲୋ ବାସି- ଆମେ ଭାଲୁ-'' । ତା'ର ଭାଷାର ଜ୍ଞାନର ପ୍ରଦର୍ଶନୀ ଦେଖାଇଲା । ଓଡ଼ିଆରେ ହେଲା ''ଆମେ ଭାଲୁ ।''

କମଳା ହସିଲା । ସୁରବାବୁ କିଛି କହିଲେ ନାହିଁ ।

କମଳା କହିଲା-''ଦେବୀ ଚନ୍ଦ୍ରମିଧା ! ପିଲାପିଚିକା କେଇଟା ?''

ସୁରବାବୁ ଗମ୍ଭୀର ହୋଇ ଚାହିଁଲେ, ଆଖିବାଟେ ନିଆଁଧାସ ।

ଚନ୍ଦ୍ରମିଧା ହସିଲା ତା'ର ସେ ଅଦ୍ଭୁତ ହସ - ପାନ ପତ୍ର ପରି ଧାର ମୁହଁଟି ଚମ୍ପା ଫୁଲପରି ଗୋରା, ଧାର ଆଖିର ଦୃଷ୍ଟି ଛାଟି ହେଉଚି ଏକରୁ ସେକରକୁ; ମୁହଁଯାକ ହସର ଢେଉ, ପୋହଳା ପରି ଓଠର ପ୍ରେମରେ ମୁକ୍ତାପରି ଦାନ୍ତ ।

ହସି ହସି ମୁଣ୍ଡକୁ ଝାଙ୍କି ସୁରବାବୁଙ୍କୁ କହିଲା - ''ୱାଚାଟ୍'' ଅର୍ଥାତ୍ ''ହ୍ୱାଟସ୍ ଦ୍ୟାଟ୍'' - କ'ଣ ହେଲା ?

ସୁରବାବୁ ହିଁ ତା'ର ଅଭ୍ୟର୍ଥନାର ଭାର ନେଲେ, କମଳା ଉଠିବାକୁ ଚେଷ୍ଟା କଲା ନାହିଁ । ଦିଅନ୍ତୁ ସେ କୈଫିୟତ - ଯେ କମଳା ଏହିପରି ।

ଦାଣ୍ଡଘରୁ ସେ ଦୁହିଁଙ୍କ ହସ ଶୁଭିଥିଲା, କମଳା ବୁଝିଥିଲା ଯେ 'ଚନ୍ଦ୍ରମିଧା' ପ୍ରକୃତରେ ଅସାମାନ୍ୟା, ତା'ର ହସ କେବଳ ସଙ୍ଗୀତ ନୁହେଁ, ସେ ଲଜ୍ଜା ସଂକୋଚହୀନ ବଳିଷ୍ଠ ଜୀବନର ସ୍ୱାଧୀନ ବାଣୀ । ଈର୍ଷା ଉପୁଜାଏ, କମଳା ସେ ସ୍ୱାସ୍ଥ୍ୟ ସେ ସ୍ୱାଧୀନତା କେବେ ପାଇନାହିଁ । ତା'ର ସଂକୀର୍ଣ୍ଣ ସଂସ୍କାର-ନିବୁଜ ସରୁ ଗୋହିରିରୁ ସେ ଚନ୍ଦ୍ରମିଧାର ଅବାରିତ ଗତିପଥ ଆଡ଼କୁ ଚାହିଁଥିଲା, ସେହିଦିନ ପହିଲି କରି ଅନ୍ତଭିତରେ ଚୋରା କମ୍ପ ପରି ସେ ଅନୁଭବ କରିଥିଲା ଆଶଂକାର ଥର ଥର ଶିହରଣ । କେହି ବୁଝେଇ ନାହିଁ । କେହି କିଛି କହି ନାହିଁ । କିନ୍ତୁ ତା'ର ନାରୀ ସ୍ୱଭାବ ଆପେ ଆପେ ମାନବ ଅବସ୍ଥିତିର କେଉଁ ସୂକ୍ଷ୍ମସ୍ତରରୁ ଅର୍ଥ ଘେନିଥିଲା ।

ସେହି ସଞ୍ଜରେ ସେ ଭଗବାନଙ୍କୁ ଡାକିଥିଲା, ହେ ପ୍ରଭୁ, ମୁକ୍ତି ଦିଅ ।

ଘଟନାର ଅର୍ଥ ନିର୍ଭର କରେ ଦୃଷ୍ଟିଭଙ୍ଗୀ ଉପରେ, ଦୃଷ୍ଟିଭଙ୍ଗୀ ନିର୍ଭର କରେ ମନର ଅବସ୍ଥା ଉପରେ, ମନର ଅବସ୍ଥା ନିର୍ଭର କରେ ଅନ୍ୟକେତେ ଅବସ୍ଥା ଉପରେ...

କେବେ ତା'ର ଓ ସୁରବାବୁଙ୍କ ଏକାଠି ବସି ତାଙ୍କଠୁଁ ଶୁଣିଥିବା ବିଶ୍ଳେଷଣର କାହାଣୀ ଭାସି ଚାଲିଯାଏ ।

ସେ ନିରକ୍ଷରା ନ ଥିଲା, ମଫସଲରେ ବଢ଼ିଛି, ନି.ପ୍ରା. ସାରିଥିଲା । ଘରେ ବୋଉକୁ ଖୁସି କରିବାକୁ ଭକ୍ତିଗ୍ରନ୍ଥ ପଢ଼ିଥିଲା, ଆପଣାକୁ ଖୁସି କରିବାକୁ ପଢ଼ିଥିଲା କେତେକ ଉପନ୍ୟାସ ଯାହାକି ଜୀବନର ଏକ ନାୟକ ଖୋଜିବାକୁ ପ୍ରସ୍ତୁତ କରାଏ ।

ନୂଆ ଦୃଷ୍ଟିଭଙ୍ଗୀରେ ଅତୀତକୁ ଚାହିଁ ଦେଖିଥିଲା- ସୁରବାବୁ ତାକୁ କେବେ ଭଲ ପାଇ

ନାହାନ୍ତି, ସେ ନିଜକୁ ଭଲ ପାଉଥିଲେ, ସେହି ଭଲପାଇବା ବିଛେଇବା ପାଇଁ ମଡ଼େଇବା ପାଇଁ ତାକୁ ଚାହିଁଥିଲେ ରଞ୍ଜା ପରି ହେବାକୁ ।

ମୂଳରୁ ସେ ତାକୁ ପଢ଼େଇବାକୁ ଚେଷ୍ଟା କରିଥିଲେ, ପାରି ନଥିଲେ, ଆଶା ଛାଡ଼ିଥିଲେ ।

ଯଦି ବୁଲେଇ ନେଇଛନ୍ତି ତେବେ ଜିଗରରେ ପଡ଼ି, ନ ହେଲେ ବହିର ପାଚିରି ଉଚ୍ଚୁଆଳରେ ତାଙ୍କ ଛାଏଁ ସେ । ଆସିଲେ କି କାମ କଲେ ।

ନୂଆ ହୋଇ ମନେପଡ଼େ ତାଙ୍କ ଆକ୍ଷେପର ସ୍ୱାର୍ଥପର ଅର୍ଥ - ''ଏ କାମରେ ମତେ ଯଦି କେହି ସାହାଯ୍ୟ କରିବାକୁ ଥାଆନ୍ତା କମ, ତେବେ, ମୁଁ ଅନେକ ବାଟ ଆଗେଇଥାନ୍ତି । ଡି. ଲିଟ୍ ପାଇବା କ'ଣ ସେଡ଼େ ଅସମ୍ଭବ ହୋଇଥାନ୍ତା ?''

ମନେପଡ଼େ, ତା'ର ରୋଷେଇ, ତା'ର ପାନ, ତା'ର ଘରଧନ୍ଦା ସମ୍ଭାଳିବା, ପିଲାଙ୍କ ନେଞ୍ଜରା ସହିବା, ଏଗୁଡ଼ା ଡି.ଲିଟ୍ ପାଇଁ ଯଥେଷ୍ଟ ଉପକରଣ ନୁହେଁ ।

ଏଥର ତ ଚନ୍ଦ୍ରମିଧା ଆସିଲେଣି, କରନ୍ତୁ ସେ ସାହାଯ୍ୟ, ଡି. ଲିଟ୍ ମିଳୁ ।

ସେ ତାଙ୍କର କିଛି କରି ନାହିଁ ପରା, ତାଙ୍କ ପରି ପଣ୍ଡିତ ସେ ନୁହେଁ ତାଙ୍କ ଆଣ୍ଠୁଭଞ୍ଜ ।

ତାଙ୍କର ଯୁକ୍ତିର ଗୋଟାଏ ନୂଆ ଅର୍ଥ ସ୍ପଷ୍ଟ ଜଣାପଡ଼େ - ସୁବିଧା ପାଇଲେ ସାଧାରଣ ମତାମତ ଅନେକ ତ ସେ ଶୁଣାଇଛନ୍ତି ଏବଂ ସେ କହନ୍ତି - ଆମ ସମାଜର ଘରଣୀମାନେ ଭଲ ବୋହୂ ହୋଇପାରନ୍ତି, ତାଙ୍କୁ 'ସ୍ତ୍ରୀ' କୁହାଯାଇପାରେ; କିନ୍ତୁ ସେମାନେ ସହଧର୍ମିଣୀ ନୁହନ୍ତି ।

''ବୁଝିଲ କମ, ସେମାନେ ସହଧର୍ମିଣୀ ନୁହନ୍ତି, କାରଣ ଧର୍ମମାନେ ଠାକୁର ପୂଜା ନୁହେଁ । ଧର୍ମମାନେ ଆଦର୍ଶ ଅନୁଯାୟୀ ବୃତ୍ତି । ସ୍ୱାମୀର ଧର୍ମ ଯଦି ଡାକ୍ତରି ଆଉ ସ୍ତ୍ରୀର ଧର୍ମ ରୋଷେଇ ତେବେ ତୁମେ କ'ଣ ସ୍ତ୍ରୀକୁ ସହଧର୍ମିଣୀ କହିବ ?''

ଆଉ ସ୍ମରଣ ହୁଏ ସାହିତ୍ୟକୁ ଅନୁସରି ଜୀବନ ବିଷୟରେ, ସମାଜ ବିଷୟରେ କେତେଥର ସେ କେତେ କଥା କହିଛନ୍ତି ।

''ନୈତିକତା କଥା ଦେଖ । ଜାଣିବା ଲୋକେ ତାକୁ ନୂଆ ଅର୍ଥ ଦେଇଛନ୍ତି । ଲୋକେ ନୈତିକତା ବୋଲି କହି ବିରାଡ଼ି ବୈଷ୍ଣବ ପରି ଅନେକ ମିଛ ଅନେକ ଠକାମି ଲୁଚେଇ ରଖନ୍ତି । ହୃଦୟରେ ବିଶ୍ୱାସ ନାହିଁ, ତୁଣ୍ଡରେ ଭାରି ରାମ ନାମ । ଆମ ଘର ମାଇପେ ଭାରି ନୈତିକତା ବଢ଼େଇ କରନ୍ତି କିନ୍ତୁ ମନଟିମାନ ଛୋଟ, ଅନ୍ଧାରୁଆ । ଅତି ହିସାବି ହେବାକୁ ଯାଇ ସ୍ୱାର୍ଥପର ହୁଅନ୍ତି, ଅତି ଓଲୁ ହେଲେ ଉଦାର ବୋଲାନ୍ତି, ଭାରି ଜାଣିଲାବାଲା କିଏ ନା ଯେ ପରର ଛିଦ୍ର ଖୋଜି ମିଛ କାହାଣୀ ଯୋଡ଼ି ବୁଲି ବୁଲି ଗପେ, ମନରେ ବାର ଆଡ଼କୁ ଆଶା ତ ମୁଣ୍ଡରେ ସିନ୍ଦୂର, କାନ୍ଧରେ 'ପତି ପରମଗୁରୁ' ବୁଟ୍ । ଆପଣା ଦେହକୁ ଖାଲି ଜଣକପାଇଁ ସମ୍ଭାଦି ରଖି ମନରେ ଅନ୍ୟ ସବୁ ବିଷୟରେ ବାର ଆବର୍ଜନା କୁଢ଼େଇ ରଖିଲେ କିଛି ବାହାଦୁରି ନାହିଁ, ସେ ପ୍ରକୃତ ନୈତିକତା ନୁହେଁ ।''

ସବୁ କଥାରେ ସେ ମୁଣ୍ଡଟୁଙ୍ଗାରି ଥିଲା । ସତ ତ - ତାଙ୍କ କଥା କ'ଣ ମିଛ ହୋଇପାରେ ! ସେହି କଥା ବହିରେ ଲେଖା ହୋଇଥିବ, ସେହି କଥା ସେ ପଢୁଥିବେ, ପଢ଼ାଉଥିବେ ।

କାର୍ଯ୍ୟରେ ଏ ତଥ୍ୟର ଉପାଦେୟତା କଥା କେବେ ସେ ଭାବି ନାହିଁ, ଉଠେଇ ନାହିଁ । କେବର କଥା କାଲିପରି ଲାଗୁଛି ।

ଉପର କ୍ଲାସର ଛାତ୍ର ବିଶିବାବୁ ''ସାର୍-ସାର୍'' ହୋଇ ଘନ ଘନ ଆସନ୍ତି, ପଢ଼ିବାକୁ, ଯୁକ୍ତି କରିବାକୁ ତାଙ୍କର କେଡ଼େ ଆଗ୍ରହ ! କି ସୁନ୍ଦର ଗଢ଼ଣ ! ଚଷମା ଉପରେ ଆଖିପତାର ଘଞ୍ଚ ବାଳ ସତେକି ଓହଳି ପଡ଼େ, ଖରା ଚାଇଁ ଚାଇଁ ସକାଳୁଆ ପୋଖରୀ ଉପରେ ନିଆ- ଅରମା ପରି । ହସ ମାଡ଼େ, ଖୁସି ଲାଗେ । ସେହି ଉଜ୍ଜ୍ୱଳ ପାତଳ ଗୋରା ଧାର ମୁହଁକୁ ଦେଖିଲେ ଚିହ୍ନା ଲୋକକୁ ଭେଟିଲା ପରି ଗୋଟାଏ ବିଶ୍ୱାସ ଆସେ । ସେ ତାଙ୍କ ଆଗରେ ହୋଇଛି, ସ୍ୱାମୀ ସହିତ ସେ ଏକାଠି ବସିଥିଲା ବେଳେ ବାସିଲୁଗା ବଦଳି ଚାହା ଜଳଖିଆ ନେଇ ଥୋଇ ଦେଇ ଆସିଛି । ତା'ପରେ ହଠାତ୍ ଦିନେ ସୁରବାବୁ ବିଶିବାବୁଙ୍କ ବିରୁଦ୍ଧରେ ତା' ଆଗରେ କହିଲେ । ''ହୁସିଆର ! ପୋଡାମୁହାଁ । ମନେ ମନେ ସଇତାନ୍ । ଶୁଣ ।''

ଅନ୍ତତଃ ତାଙ୍କୁହିଁ ଖୁସି କରିବାକୁ ସେ ତାଙ୍କୁ ଆଢ଼ ହୋଇ ଘର ଭିତରେ ଲୁଚିଲା ।

ଏମିତି କେତେ ଲୋକଙ୍କ ବିରୁଦ୍ଧରେ ସେ ତା' ଆଗରେ କହିଛନ୍ତି ।

ଅତୀତର ସ୍ମୃତି ଅଣ୍ଡାଳି ବସିଲେ ଯେତେ ମୁହଁ ଜିକ୍ ଜିକ୍ ଦିଶେ ସବୁରି ବିରୁଦ୍ଧରେ ଚୁନିଚାନି ତା' କାନ ପାଖେ ସେ ଗାଇଛନ୍ତି କିଛି ନା କିଛି ଇତିହାସ ।

ନୂଆ ଟୀକା ଲଗାଇ କମଳା ପଢ଼ିବାକୁ ଲାଗିଲା - ତାଙ୍କର ଏ ଭଲଲୋକିରେ ଗୋଟାଏ ଦୂରଭିସନ୍ଧି ଥିଲା, ତାର ମନକୁ ଆୟତ୍ତ କରି ସେ ତା' ପାଦରେ ବେଢ଼ି ପିନ୍ଧାଇଛନ୍ତି, ହୁଏତ ତାକୁ ସେ ବିଶ୍ୱାସ କରି ନାହାନ୍ତି ।

ଯାରି ନାଁ ନୀତି, ସ୍ନେହ, ଘରକରଣା ।

ଗୋଟାଏ ଫମ୍ପା ଆଦରା ଆଦରି, ଆପଣା ମନରୁ କାଢ଼ି ସେ ତହିଁରେ ସୁନେଲି କଲେଇ ଲଗେଇ ଥିଲା ।

ଜୀବନ ପଛେଇ ଯାଇଛି, ଆଉ ସେ ଟୋକୀ ହେବ ନାହିଁ ।

''ଭାରି ଜଣେପରେ ଦିଶୁଛି, ସେଇ ଡମର ଚନ୍ଦ୍ରମିଧା କି ଅର୍ଦ୍ଧଚନ୍ଦ୍ର ମିଧା- କେତେ ରାଇଜ ବୁଲିଚି କେତେ ମଣିଷ ଦେଖିଚି, ସତରେ, ଆମ ମନ ସିନା ସଂକୀର୍ଣ୍ଣ ତାଙ୍କର ସବୁ - ଏତେ ଓସାର । ହଁ, ପୁଅ ନାହିଁ କି ପତି ନାହିଁ, କି ଭାତ ମୁଠେ ପେଇଁ କାହା ହାତ ତଳକୁ ଅପେକ୍ଷା ନାହିଁ, ସେ ଡରିବ କାହିଁକି କାହାକୁ ? ସେ କ'ଣ ଆମରି ପରି ହୋଇଛି ?''

ଜିଭ ଆଗରେ କଥା ଅଟକି ଯାଇଛି, କହିବାକୁ ମନ କରିଚି ସିନା, କହିପାରି ନାହିଁ । ମନ ଜଗି ଚଳିଚି, ମନେ ପଡ଼ିଚି - ତାଙ୍କର ସେ ଚିନ୍ତିତ ମୁହଁ, ରାତି ରାତି ଅନିଦ୍ରା, କାହାପାଇଁ ? ତାରି ପାଇଁ ତ ? ଅତୀତର ଜୀବନ-ବସନ୍ତ ଫୁଲର ଦୋଳି ଓହଳେଇ ଦେଇଛି ଚେତନାରେ ।

ଦୁହେଁ ଦୋଳିରେ ଝୁଲିଛନ୍ତି ।

ସେ ମନରେ ଈର୍ଷା ନାହିଁ, ସାନ ସ୍ୱାର୍ଥ ନାହିଁ, କେବଳ ଆଞ୍ଜୁଳା ଆଞ୍ଜୁଳା କରି ଫୁଲ ପାଖୁଡ଼ା ପରି ଆଶୀର୍ବାଦ ବିଞ୍ଚିବା ।

ଆହା, ସେ ସୁଖରେ ରହନ୍ତୁ, ସମସ୍ତେ ସୁଖରେ ରହନ୍ତୁ, ସୁଖରେ ରହନ୍ତୁ-

ଏମିତି ଆମର ଦିନ ସରିଯାଉ ଦୀପ ନିଭିଯାଉ ସେ ରହିଥାନ୍ତୁ ସୁଖରେ ଆହା !

କିନ୍ତୁ ଗୋଡ଼ ଆଡୁ ସତେକି ଦେହଟା ମରି ମରି ଆସୁଛି । ଫମ୍ପା ହାଣ୍ଡିପରି ଫମ୍ପା ବ୍ୟକ୍ତିତ୍ୱ

ସାମାନ୍ୟ ଠୋକରରେ ବି ଶବ୍ଦ କରୁଛି । ସେ ଅନୁଭବ କରିଛି - ଦେହ ଆଉ ମନ ସମାନ୍ତରାଳ ନୁହେଁ, ଅଥବା ନୁହେଁ ଖାଲି ଗୋଟାଏ ଆରଟା ଉପରେ ସାପେକ୍ଷ, ଦୁହିଁଙ୍କୁ ଏକାଠି ମୋଡ଼ି ଗୁରେଇ ରଖିଛି ମହାକାଳ - ସମୟ । ଦୁହିଁଙ୍କ ଉପରେ ତାହାରି ଚାପ ।

ଅଣାୟତ୍ତ ରହି ସେ ନାଚିଛି, କିନ୍ତୁ ସେ ନାଚ ଯୌବନର ନାଚ ନୁହେଁ ।

ଦରଶୁଖିଲା ମୂର୍କୁଟିଆ ପତ୍ର ଶୀତୁଆ ଉତ୍ତରା ପବନରେ ହଲି ହଲି ଡ଼େମ୍ଫ ଲାଗିହୋଇ ନାଚିଛି ।

ସେ ନାଚରେ ଆଶା ଯେପରି ନାହିଁ କ୍ଷମା ବି ନାହିଁ ।

ଆପଣାକୁ କ୍ଷମା ନାହିଁ ଆପେ ମରିବାକୁ ଚାହେଁ ।

ପରକୁ କାହୁଁବା ହେବ !

କେଡ଼େ ସୁସ୍ଥ ଅଛନ୍ତି ସେ ! ପଥର ଉପରେ ପାଣିମାଡ଼ ପରି ସବୁ ଅନୁଭୋଗ ଦେହେ ଦେହେ ନିଗିଡ଼େଇ ଦେଇଛନ୍ତି । ବୟସ ବଢ଼ିଛି ଦାରିଦ୍ର୍ୟ ବଢ଼ିଛି, ସତେକି ତା ସଙ୍ଗେ ସଙ୍ଗେ ସେ ବି ଉଠିଛନ୍ତି ଉପରକୁ ଉପରକୁ । ଭାବିଲେ ଈର୍ଷା ହୁଏ, ମାଡ଼ି ମାଡ଼ି ପଡ଼େ, ସେ ସତେକି ଆହୁରି ଉଞ୍ଚ ହୋଇ ମୁଣ୍ଡଟେକନ୍ତି । ପିଲା ତିନିହେଁ ମଣିଷ ହୋଇ ସଂସାର ଧରିଛନ୍ତି, ତାଙ୍କର ସେହି ପୁରୁଣା ଅଭ୍ୟାସ । ସେଡ଼ିକି ସକାଳୁ ଉଠିବେ, ସେମିତି ବ୍ୟାୟାମ କରିବେ, ଗୋଡ଼ ହାତ ହଲେଇ ଭିଡ଼ି ମୋଡ଼ି ହୋଇ ବୁଲିଯିବେ ।

ହଁ, ବୁଲିଯିବେ, ଆଖି ଆଗରେ ସକାଳୁଆ ପୃଥିବୀ ଖୋଲା ପଡ଼ିଥିବ, କବିତା ଖେଳେଇବା ପାଇଁ ଆକାଶ ।

ସେମିତି ପାଠ ପଢ଼ା, ସେମିତି ସୀତାର - ଆଳାପ, ଅଧରାତି ଟପି କାମ ସେଡ଼ିକି ଜୋର୍‌ରେ ।

ଆଉ ତାର ପୃଥିବୀ ଖାଲି ଏ ଦେହ ଯନ୍ତ୍ରଣାର ଅନୁଭୂତି, ପୋଡ଼ା ଜଳା ମନର, ପରିସର ଏହି ଖଟ, ନ ହେଲେ କଷ୍ଟେମଷ୍ଟେ ଘୁସୁରି ଘୁସୁରି ପିଣ୍ଡାଏ ପିଣ୍ଡାଏ ଯାଇ ପାଇଖାନା ଲେଉଟାଣି ବାଟ ।

ଝରକା ବାଟେ ଚାହିଁଲେ ଫାଙ୍କ ଫାଙ୍କ ସାନବଡ଼ ଗଛର ଗୋଟାଏ ବାଡ଼, ଦୂରରେ ଗୋଟାଏ ଘରର ପିଠି । ଏହାରି ଉପରେ ତେର୍ଛା ହୋଇ ଆକାଶ, ଦୂରର ପାଣିକଳର ଉଞ୍ଚ ପାଣି ଭଣ୍ଡାର, ଚିନି କାରଖାନାର ଚେମେଣି ବିଭିନ୍ନ ଉଚ୍ଚତାର କୋଠାମାନଙ୍କ ମୁଣ୍ଡ ଓ ଦୂରର ବଡ଼ ବଡ଼ ଗଛମାନଙ୍କ ବିଛେଇ, ସନ୍ଧିଏ ସନ୍ଧିଏ ତଳୁ ଉପରକୁ ଯାଉ ଯାଉ ଅସମ ଭାବେ ସୀମାବଦ୍ଧ ସେ ଆକାଶର ରୂପ ।

ଫମ୍ପା ଫାଙ୍କା ଆକାଶ । ସେ କ'ଣ ସେଠିକି ଯିବ ? କେବେ ? କିନ୍ତୁ ଦେହ ଭିତରେ ଜୀବନର ଶେଷ ବିନ୍ଦୁ ବି କଟାଳ କରେ ବଞ୍ଚି ରହିବାକୁ, ସେଇଠି ପଡ଼ି ସେ ପଦାର ଋତୁ ପରିବର୍ତ୍ତନ ଦେଖେ, ସାଧାରଣ କାଉ, ଘରଚଟିଆ, ଚିଲ ଏମାନଙ୍କ ଗତି ଆଉ ଭାବାନ୍ତରକୁ ବି ସେ ଲକ୍ଷ୍ୟକରି ପଡ଼ିଥାଏ, ଆଉ ଆକାଶ ଯେତେବେଳେ ନେଳି ଦିଶେ, ବାଡ଼ର ସଜନା ଗଛରେ ସେତେବେଳେ ଲେନ୍ତି ଲେନ୍ତି ଫୁଲ ଫୁଟେ, ସେ ଆପଣା ରୋଗକୁ ପାସୋରି ଖୁସି ହୁଏ । ତା'ର କାମର ହାତବାରିସି

ମାଇଚିଆ ଇନ୍ଦିରାକୁ ଡାକି ବରଗେ -"ହଇରେ ଇନ୍ଦିରା, କେଡ଼େ ସୁନ୍ଦର ଛନଛନିଆ ହେଇଚି ଏ ସଜନା ଶାଗ ଆଉ ଫୁଲ, କରୁନୁ ଆମର ? ବାବୁ ଭଲ ପାଆନ୍ତି ।" ଭାରି ଭଲ ପାଆନ୍ତି । ପଦାରେ ମଣିଷଙ୍କ ପାଟି ତୁଣ୍ଡ ତାକୁ ଖୁସିଲାଗେ । ଚାରିଆଡ଼େ ଶୂନ୍‌ଶାନ୍ ପଡ଼ିଲେ ଛାତି ଉପରେ ଲାଗେ କେଡ଼େ କାକର ।

ଆଖିରୁ ଧାରା ଗଡ଼େ ।

ଦୁର୍ବଳ ଲୋକ ଆଉ ପାଗଳ ରାଗରେ ବଳ ପାଇଲା ପରି ସେ ଈର୍ଷା ଅଭିମାନରେ ବଳପାଏ, ପେଟ ବଥା କରି ନଟରା କାଶରେ ତଣ୍ଟି ପାଖେ ସେହି ଏକମାତ୍ର ଟାଣ ଦରଜ ସ୍ଥାନ, ଯାହାକୁ ଆଶ୍ରା କରି କାଶ ଛିଣ୍ଡେଇବାକୁ କାଶି ହୁଏ ।

ଆଉ ସେ ଭାବେ - ସମସ୍ତିଙ୍କି ଅନେଇ ବସିଛନ୍ତି ବୋଲି ଭାବିବା ଖାଲି ମୋହ, ସୁସ୍ଥ ମଣିଷ କେବେ କଙ୍କାଳକୁ ଆଦରି ମୁହଁଚାହିଁ ବସିଥିବା କ'ଣ ସମ୍ଭବ ?

ଖାଲି ଭେଳିକି, ଖାଲି ଠକାମି ।

ତେଣୁ ତ କହେ - "ବଡ଼ କଷ୍ଟ ଦେଲି, ତୁମେ ଆଉ ଗୋଟିଏ ବାହା ହ' ।"

ଆଉ ସେ କହନ୍ତି, "ହଁ, ତୁନି ହ', ତମ ମୁଣ୍ଡ ଖରାପ ହେଇଚି, ଲୋକେ ହସିବେ ।"

କିନ୍ତୁ ଏ ଉଷାରାଣୀ ଆସିଲା ଦିନୁ ସତକୁ ସତ ତା ମୁଣ୍ଡ ଖରାପ ହେଲାଣି । ତାର ବିଦେଶୀ ନାଁ ପରିବର୍ତ୍ତେ ଉଷାରାଣୀ ବୋଲି ତାକୁ ଭାବିବାକୁ ଏକ ପ୍ରକାର ଜିଗର ଧରନ୍ତି ସେହି । କୌଣସି ନା କୌଣସି କ୍ରମେ ପ୍ରତିଦିନ ତା ନାଁ ପଡ଼େ । ନାନା ମତେ ସେ ତାର ପ୍ରଶଂସା ଗାଆନ୍ତି ।

ଆଉ କମଳା ତାର ଶରଶଯ୍ୟାରେ ପଡ଼ି ବୁଝିପାରେ ସୁସ୍ଥ ମଣିଷ ତାର ଆୟୁଷ ଝଡ଼େଇବାକୁ ଚାହେଁ ନୂଆ ଉଇଁ ଆସୁଥିବା ସୂର୍ଯ୍ୟକୁ ଚାହିଁ ।

ତେଣୁ ତ ସେ ବାରମ୍ବାର କହେ-ଦେହ ଲାଳସା ଭୁଲ, ଖାଲି ଅନ୍ଧ ବିଶ୍ୱାସ ।

ଶୁଣେ ସେହି ରୋଷେୟା ଇନ୍ଦିରା । "ବୁଝିଲୁ ଇନ୍ଦିରା, ସଂସାରଟା ଏଇଆ, ପୁରୁଷଜାତିଙ୍କି ବିଶ୍ୱାସ ନାହିଁ ।" କ'ଣ ଏ ଦୁଇକଥାର ସମ୍ବନ୍ଧ ଇନ୍ଦିରା ବୁଝେ ନାହିଁ, କିନ୍ତୁ ପୁରୁଷଜାତି ପ୍ରତି ତାର ସ୍ୱଭାବଗତ ରାଗ । ତା'ର ଅଭିଳାଷ ସେ ସ୍ତ୍ରୀ ହୋଇ ଜନ୍ମ ହୋଇଥାନ୍ତା ।

କୁଆଡୁ କ'ଣ ବୁଝି ସେ ନାକରେ କାନ୍ଦି କାନ୍ଦି କହେ, "ତୁମେ ଭଲ ହୋଇଯିବ ଅପା ।"

ଦୁଇ ଦଦରା ନାହା ଅପୂର୍ଣ୍ଣ ଭାଷାରେ ପରସ୍ପରକୁ ଛୁଇଁଦିଏ ।

ଭାସି ଚାଲିଯାଏ ।

କମଳା ନିରାଶ୍ରୟତା ଭିତରେ ଶାନ୍ତିପାଏ ।

କିନ୍ତୁ ସ୍ୱାମୀର ଭାବାନ୍ତର ବୋଲି ଯାହା ସେ ଭାବେ ତା ଦିନୁଁ ଦିନ ଲକ୍ଷ୍ୟ କରେ । ଦେଖେ ସେ ଦିନୁ ଦିନ ତେଜି ଉଠୁଛନ୍ତି ।

ମୁହଁ ଆଖିରେ ନୂଆ ପଲ୍ଲବୁଥିବା ଯୌବନର ଝଳି । କେତେବେଳେ ମୁଗ୍‌ଧ ହେଲାପରି ତୁନିତାନି, କେତେବେଳେ ବିନା କାରଣରେ ଚମକ ।

ସୀତାରରେ ନୂଆ ସୂର ।

କଲେଜରୁ ଫେରିବାକୁ ଡ଼େରି ହେଉଛି ।

ସଞ୍ଜ ପରେ ବୁଲି ବାହାରନ୍ତି ।

ପ୍ରଥମେ ପ୍ରଥମେ କେତେଥର ସେ କହି କରି ଯାଇଥିଲେ - ''ଯାଉଛି ଯିବି ଚନ୍ଦ୍ରମିଧାଙ୍କ ପାଖକୁ । ତୁଳନାତ୍ମକ ଭାଷାତତ୍ତ୍ୱ ବିଷୟରେ ଗୋଟାଏ ପ୍ରବନ୍ଧ ଲେଖିଛି, ତେଣୁ ତାଙ୍କ ସଙ୍ଗେ ଟିକିଏ କଥା ଭାଷା ଅଛି ।''

କ୍ରମେ ଚନ୍ଦ୍ରମିଧା କଥା ସେ କହିବାକୁ ପାସୋରି ଯାଉଛନ୍ତି, ତାର ନାଁ ଶୁଣିଲେ ତାଙ୍କୁ କେମିତି ଅପ୍ରସ୍ତୁତ ଲାଗେ, କିଛି ନ ବୁଝିଲାପରି ''ଉଁ-ଉଁ-'' କହନ୍ତି ।''

କିନ୍ତୁ ପଦାରେ ତାଙ୍କର ଡେ଼ରି ହେଉଛି, ଡେ଼ରି ହେଉଛି ।

କେହି କହି ନାହିଁ ତାକୁ, କିନ୍ତୁ କମଳା ବୁଝୁଛି ଜୀବନ ଜିତିବହିଁ ମରଣକୁ, ଜୀବନ ସରସର ସୁସ୍ଥ ସବଳ ସୁନ୍ଦର ଦେହ ଆସନ କରି ବସିବ ମଲା ମଣିଷର ଶବ ଉପରେ ।

ଆଉ ଆଜି ସେ ବାସୁଛନ୍ତି, ଆଉ ପୁଣି ଯାଇଛନ୍ତି ବୁଲି ।

ସାପୁଆ ଆକାଶ ଶେଷରେ କ'ଣ ସେଠି ଦିଶୁଛି ନିଆଁ ପରି ? ହେଇ ଉଠିଲା ବଡ଼ ଗୋଲ ଜହ୍ନ । ଆଜି ପ୍ରତିପଦ ଯେ ।

ସୁନ୍ଦର ଜହ୍ନ, ହସ ହସ ଜହ୍ନ, ସଜନା ଗଛ ବି ସାଜିଛି ନଈକୂଳ ବୁଲାଳି ସୁନ୍ଦରୀ ପରି ।

ସେହି ଥିଲା ତାର ଆଶା, ଜୀବନର କରୁଣ ଆକାଂକ୍ଷା ।

ହଠାତ୍ ତାର ଚେତନା ଉପରେ ଯେପରିକି ଗଡ଼ି ଚାଲିଲା ଦିଗନ୍ତ ଆବୋରି ଏକ ବିଶାଳ ଜୁଆରର ଢେଉ ।

ହଠାତ୍ ସେ କ'ଣ ଆବିଷ୍କାର କରିଛି, ସେ କ'ଣ କହିବାକୁ ଚାହେଁ ।

ହଠାତ୍ ତାର କହିବା କଥା ଭୁଲି ହୋଇଯାଉଛି । ତା'ର ବା ପ୍ରୟୋଜନ କ'ଣ ?

ତଥାପି ପାଟି ଅଳ୍ପ ଆଁ ହୋଇ ରହିଛି ।

ରାତି ସାଢ଼େ ନ'ଟାରେ ସୁରବାବୁ ଫେରିଲେ । ସେ ବି ଜୀବନ କଥା ଭାବି ଭାବି ଫେରିଲେ । ନିଷ୍ଚୟ କଲେ ଆହୁରି ଥରେ - ଜୀବନ ଓ ଆନନ୍ଦ ଅଭିନ୍ନ । ମୃତ୍ୟୁ, ଶୋକ ଓ ସଂକୀର୍ଣ୍ଣତା ଅଭିନ୍ନ ।

କମଳା ସେହିପରି ଚିତ୍ ହୋଇ ପଡ଼ି ରହିଥାଏ, ବେକ ଭାଙ୍ଗି ମୁହଁ ଜହ୍ନ ଆଡ଼କୁ । ପାଟି ଅଳ୍ପ ଆଁ । ଅକୁହା କଥା କହିପାରି ନାହିଁ ।

# ବଘେଇ

ଆଦ୍ୟ ଆଷାଢ଼ରେ ଆକାଶ ଗୋଟାକଯାକ ଯେତେବେଳେ ସତେ ଅବା କଳା ମେଘର ଓଜନରେ ତଳକୁ ଓହଳି ପଡ଼ିଥାଏ, ଚାରିଆଡ଼େ କଳା ଘୁମର, ଦିନ ଚାରିଟା ବେଳେ ବି ସୁନେଲି କିରଣ ତ କାହିଁ ସାତ ସପନ, ମିଞ୍ଜି ମିଞ୍ଜି ଆଲୁଅ, ଯହିଁରୁ ବାରି ହୁଅନ୍ତା ଏ ସଞ୍ଜ ନୁହେଁ, ଦିନ, ସେ ସୁକୁସୁକୁ ମରମର । କୁଟ୍ରା ବୋବେଇଲା, ଭାବିଲା ବୋଧହୁଏ ସଞ୍ଜ ବୁଡ଼ିଲା । ଚଢ଼େଇ ବି ବଣା ହେଲେ, ପକ୍ଷି ଯାକି ପତ୍ର ଗହଳିରେ ବସି ପଡ଼ିଲେ ଓ ଆଗତୁରା ଗାଇ ଦେଲେ ସେ ଦିନଟିର ମୃତ୍ୟୁ ଲାଗି ବିଳାପ ଗୀତ । ଯୁଆଡ଼େ ଚାହିଁଲେ କରୁଣ, ଉଦାସ, ଶୂନ୍ୟତା-ଯେମିତି ଦୂରର ଦୂରର କାନ୍ଦୁରା ହଜିଲା ସ୍ମୃତି, କେଉଁ ଅନ୍ୟ ଜନ୍ମର, ଅନ୍ୟ ଦେଶର, ଝଙ୍କ କରି ଉଠୁଚି, କଳା ବିସ୍ମୃତିର ଗଣ୍ଡ ଭିତରେ ବୁଡ଼ି ଯାଉଛି ହଜି ଯାଉଛି । ଯେମିତି ସେ ସବୁ ଥିଲା ସୁଆଦିଆ ମନଭୁଲା ଆଶା, ସ୍ୱପ୍ନ, ପ୍ରବଣତା, ଖାଲି ତାର ସ୍ମରଣରୁ ବି ଆଲୁଅ ଛିରିକି ପଡୁଥିଲା, ଆନନ୍ଦର ବାଟ ଦିଶୁଥିଲା - ଆଉ ଏବେ ସେହି ସ୍ମୃତିର ସ୍ୱପ୍ନର ଆବେଶ ବି ମନକୁ କାଟୁଚି -ସବୁ ଫମ୍ପା, ଚାରିଆଡ଼ ଶୂନଶାନ୍, ଥମ୍ଭିଲା ପବନରେ କଣ ପ୍ରତୀକ୍ଷା ଥିଲା ପରି ଲାଗୁଚି । କିନ୍ତୁ ସେ ଆଶା ନୁହେଁ, ଆଶଙ୍କାର ।

ବଣ ପାହାଡ଼ ଭିତରେ ସ୍ଥାନେ ସ୍ଥାନେ ଯେପରି ଗାଁ ଖୋଲ ଥାଏ, ସେଠି ବି ସେପରି - ଚାରି ପାଖେ ପାହାଡ଼ ଘେରେଇ ହୋଇ ଉପତ୍ୟକା, ସେଠି ଏଠି ସେଠି ଚାଷ ଜମି, ଠାଏ ଠାଏ ବା 'ଗୁଡ଼ା', ସମୁଦାୟ ମିଶି 'ଲେଡେଂ' ଗାଁ । ମଝି ବସ୍ତିଟି ତାର କଡ଼ ଗାଁ । ଦୁଇ ଧାଡ଼ି ହୋଇ ତା ଘରଗୁଡ଼ିକ । ଏକା ବଡ଼ ଗାଁରେ ସେମିତି ତିରିଶି ଘର ।

ଅନ୍ଧାର ପଡୁଥିବା ଦେଖି ବଣ ପର୍ବତରେ ଥିବା ଲୋକେ ଘରକୁ ଫେରୁଥିଲେ -କିଏ ପାହାଡ଼ ଢାଲୁରେ ଚାଷ କରିବ ବୋଲି ତଡ଼ାତଡ଼ି ସଫାସଫି କରିବାକୁ ଯାଇଥିଲା, କିଏ ବୋଝେଇ ହୋଇ ଆସୁଥିଲେ, ପତ୍ର, କାଠ, ଖାଇବା ପାଇଁ ବଣର କେଉଁ କନ୍ଦା (ଖମ୍ଭ-ଆଳୁ) ।

ଭାରି ପୁରୁଣା ଗାଁଟିଏ ଲେଡ଼େଂ । ଶାନ୍ତିପ୍ରିୟ ମଣିଷ ଗୁଡ଼ିଏ, ଖଟିଖିଆ, 'ଲେଡେଂ' ଅର୍ଥ 'ଜିଆ' । ସତେ ଅବା ଏ ମଣିଷଙ୍କୁ ଠିକ୍ ଖାପିଯାଏ ସେ ନାଁଟି ।

ଆର୍ଯ୍ୟ ଅନାର୍ଯ୍ୟ, ଆଦିବାସୀ ଅଣ ଆଦିବାସୀ, ଓଡ଼ିଆ ଭାଷୀ କନ୍ଧ ଭାଷୀ ଶବର ଭାଷୀ, ମଝିରେ କେତେବେଳେ ପଶ୍ଚିମା 'ପଠାଣ୍', ନୂଆ ନୂଆ ଇଂରେଜ ଅମଳରେ କେତେବେଳେ ଇଂରେଜ, -ଲେଡେଂ ଗାଁର 'ଡଂକୁଣୀ ମାଲି' ବୋଲି ଚଟା ପାହାଡ଼ ଉପରେ ଗୋରା ପଲ୍‌ଟଣ ଗୁଡ଼ାଏ ମାସ ମାସ ଛାଉଣୀ କରିଥିଲେ, ଦେଶୀ ରାଜା ଦେଶୀ ଲୋକଙ୍କ ସଙ୍ଗେ ଯୁଝୁଥିଲେ, -ଏମିତି କେତେ ପ୍ରକାର ସେଠି ମିଶି ଯାଇଛନ୍ତି । ରକ୍ତରେ ରକ୍ତ ମିଶିଚି, ନିଶ୍ୱାସରେ ନିଶ୍ୱାସ, ରୀତି ନୀତିରେ ରୀତି

ନୀତି, ସତେ ଯେମିତି ସେ ମାଟି ଡାକି ଆଣିଚି ନାନା ପ୍ରାନ୍ତରୁ ନାନା ସଂସ୍କୃତିକୁ ସେଠି ପାଣି ମଡ଼େଇ ତାକୁ ପବିତ୍ର କରିବାକୁ, ଯେପରିକି ''ଗଙ୍ଗେ ଚ ଯମୁନେ ଚୈବ ଜଲେଽସ୍ମିନ୍ ସନ୍ନିଧିଂ କୁରୁ ।'' ସବୁ ଏକାକାର ହୋଇ ଭାଷା ସେଠି ରହିଛି ଓଡ଼ିଆ, ଧର୍ମ ରହିଛି 'ହିନ୍ଦୁ ଧର୍ମ', ଯାହାକୁ ପଚାରିଲେ ସୁଦ୍ଧା କେହି କହିବ ନାହିଁ, ''ଆମ ଘର ଲଙ୍କା'', ''ଆମ ଘର କାନ୍ୟକୁବ୍ଜ'', ସେଭଳି ତାଙ୍କ କଳ୍ପନାରେ ବି ନାହିଁ । କହିବ, ''ମିଁ ଲେଡ଼େଙ୍ଗିଆ'' -''ମୁଁ ଲେଡ଼େଂର ଲୋକ ।''

''ଏଇ ମାଟି - ଏଇ ଦେଶ'' ବୋଲି ତାଙ୍କଠିଁ ଗର୍ବ କେହି କେବେ ଦେଖି ନାହିଁ, ଗର୍ବ କହିଲେ ବୁଝାଏ ମଣିଷଟା ଅନ୍ୟମାନଙ୍କ ଅପେକ୍ଷା ନିଜକୁ ବଡ଼ ବୋଲି ଭାବେ, ତାଙ୍କର ସେପରି ନାହିଁ । ଥରେ ଜଣେ ପାଠ ପଢ଼ା ବାବୁ ଆସିଥିଲେ, ଖୁବ୍ ଶସ୍ତାରେ ବା ମାଗଣାରେ ଏଠୁ ଦି'ଭାର ମକା ନେବାକୁ ଚେଷ୍ଟା କରିଥିଲେ । ଗାଁ ମୁଣ୍ଡିଆଳ ଧ୍ରୁବ ସିଂ ଗାଁର ଆଉ କେତେ ବଡ଼ ବଡ଼ ଲୋକ ଥାଇ ସେମାନଙ୍କୁ ପାକଳା ପାକଳି କରିବା ଉଦ୍ଦେଶ୍ୟରେ ସେ କହିଥିଲେ, ''ଧଉଳି ଶିଳା ଲିପିରେ ମହାରାଜା ଅଶୋକ ଯେଉଁ ବନବାସୀ ଅବିଦିତ ଲୋକଙ୍କ କଥା ଲେଖେଇ ଗଲେ ତାଙ୍କ ଭିତରେ ତୁମ ପୂର୍ବ ପୁରୁଷ ନିଶ୍ଚୟ ଥିଲେ, ମହାବୀର ଯୋଦ୍ଧା ଥିଲେ, ଅଶୋକ କଳିଙ୍ଗ ଦେଶକୁ ଯୁଦ୍ଧରେ ଜିଣି ମାଡ଼ି ବସିଲେ ସିନା, ବଣରେ ରହୁଥିବା ସେ ବୀରମାନଙ୍କୁ ଜିଣି ପାରିଲେ ନାହିଁ, ହଟି ଲେଉଟି ଗଲେ, ସେଥିପାଇଁ ତାଙ୍କ କଥା ଲେଖାଇଲା ବେଳେ ପଥର ଉପରେ ଖୋଳେଇ ଲେଖେଇ ଗଲେ -ଅବିଜିତା ନାମ୍ ।''

ଧ୍ରୁବ ସିଂ ମୁଣ୍ଡ ଟୁଙ୍ଗାରି କହିଲେ, ''ନାମ୍ କରିବାଟା ସବୁଠୁ ଭଲ ।''

ପାଠୁଆ ଜଣକ ଆହୁରି ବୁଝେଇଲେ, ଗାଁ ଲୋକ ମୁଣ୍ଡ ଟୁଙ୍ଗାରିଲେ, ଆଦୌ ଉତ୍ସାହିତ ହେଲେ ନାହିଁ, ଧ୍ରୁବ ସିଂ କହିଲେ, ''ସେକଥା ଥାଉ କିନା, ଆମର ଏ ଉତୁରୁଡ଼ି ନଇରେ ବନ୍ଧ ବାନ୍ଧିଲେ ବହୁତ ଜମିରେ ପାଣି ମାଡ଼ନ୍ତା, ଆମେ ଯେତେ ବାନ୍ଧୁଚୁ ସବୁ ଭସେଇ ନେଉଚି, ଆମ ଦ୍ୱାରା ହେବ ନାହିଁ, ସେଇଟା କିଏ କରିଦେବ କେବେ କରିଦେବ ଆଗ ସେ କଥା କହ । ବଡ଼ ବଡ଼ ବନ୍ଧ ପୋଖରୀ କେତେଟା ଖୋଳେଇ ଦେଲେ ପାଣି ରହନ୍ତା, ଖରାଦିନେ ପିଇବାକୁ ବି ପାଣି ମିଳେ ନାହିଁ । ଧାନ ଚାଉଳ, ଟଙ୍କା ତିନୋଟି ଦିନକୁ କରଜ ମିଳିଲେ କେଡ଼େ ଉପକାର ହୁଅନ୍ତା । କଣ କଲେ ଆଉ ଦିଟା ବେଶି ପାଚିବ, ଆଉ ଗଣ୍ଡିଏ ଅଧିକ ଖାଇବାକୁ ମିଳିବ ସେ କଥା କିଏ ବୁଝୁଛି କହ । ଆଉ ଆମର କୋଉ ଗୋସେଇ ବାପର ଗୋସେଇ ବାପ କେମିତି ବଢ଼ିଆ ଲଢୁଆ ଥିଲା ଆମେ ଜାଣି କୋଉ ପେଟ ପୂରିବ ? ଆମ ଦୁଃଖବେଳେ ଆମ ପିଠିରେ ପଡୁଛନ୍ତି ଆମ ଗୋସେଇଁ ବାପମାନେ ?''

ବୁଢ଼ା ଧନୁ ପଣ୍ଡିତ କହିଲେ, ''ସତ ସତ । ଆମେ କିଏ ଲଢ଼େଇ କିଏ ? ଆମେ 'ଲେଡେଂ' ଲୋକ । କନ୍ଧ କହିବେ ଲେଡେଂ, ଆମେ କହିବୁ ଜିଆ । ଜିଆ ମାଟି ସାଙ୍ଗରେ ଥାଏ, ମାଟି ତିଆରି କରେ, ମାଟି ଖାଏ, ମାଟି ଖୋଳେ, ମଲେ ମାଟିର ବଳ ବଢ଼ାଏ, ଆମେ ସେଇଆ । ରକ୍ତ ଶୀତଳ, ମନ ବି ଶୀତଳ, ଶୀତଳ ବି ଖାଉଁ, ପଖାଳ ପିଆଜ, ଶୀତଳ ଲୋଡୁଁ, ସେଥିପାଇଁ ଦେହ ଖୋଲା ଥାଏ । ସେ କୋଉ ରାଜା କଥା କି ଯୁଦ୍ଧ କଥା ଆମ କଥା ନୁହେଁ ।''

ଧନୁ 'ପଣ୍ଡିତ' ପ୍ରସିଦ୍ଧ ଠାକୁରାଣୀ 'ବ୍ରାହ୍ମୁଣୀ ଦେଇ'ଙ୍କ ପୂଜକ । 'ପଣ୍ଡିତ' ବ୍ରାହ୍ମଣ ନୁହେଁ ଆଦିବାସୀଟିଏ, 'ବ୍ରାହ୍ମୁଣୀ ଦେଇ' ଗୋଟିଏ ପୁରୁଣା ଶାଳଗଛ ମୂଳେ ସିନ୍ଦୂର ବୋଳା ହୋଇ ଯୋଡ଼ିଏ ଉପରେ ତୃତୀୟଟି ହୋଇ କଳା ପଥର ତିନିଖଣ୍ଡି, କଳା କନା ଖଣ୍ଡିଏ ଘୋଡ଼ା ହୋଇଛି, ସାମ୍ନାରେ

ସିଧା ସିଧା ହୋଇ ଶାଳ କାଠ ତିନିଖଣ୍ଡି ପୋତା ହୋଇଛି । କେଉଁ କାଳରୁ କନ୍ଧମାନଙ୍କ 'ଧରଣୀ ଦେବତା' ହୋଇଥିବେ ସେ, ତାପରେ କେଉଁ କାଳରୁ 'ବ୍ରାହ୍ମଣୀ ଦେଈ' । କିନ୍ତୁ 'ପରମ ବୈଷ୍ଣବୀ' ଦୁର୍ଗା ବିଗ୍ରହ ଭଳି ସାତ୍ତ୍ୱିକ ଉପଚାରରେ ସେଠି ପୂଜା ହୁଏ ନାହିଁ, କୁକୁଡ଼ା, ଘୁଷୁରୀ, ଛେଳି ବଳି ପଡ଼ନ୍ତି, ମଦ ବି ପୂଜା ଭୋଗ ହୁଏ । ସେଠି ନାନା ଯାତ୍ରା ନାନା ଉତ୍ସବ ଭିତରେ ଦଶହରା ଦୁର୍ଗା ପୂଜା ବି ହୁଏ, ମହାନବମୀ ସକାଳେ ମଇଁଷୀ ବଳି ପଡ଼େ, ବହୁତ ଆଡୁ ଲୋକ ଆସନ୍ତି ।

ଆଷାଢ଼ର ସେଦିନ ଛାଇ ଲେଉଟାବେଳେ ଅନ୍ଧାରରେ ଲେଡେଂ ଗାଁ, ତାର ମାଟି ଆକାଶ ପାହାଡ଼ ସବୁ ଯେତେବେଳେ ନିଭି ନିଭି ଆସୁଥାଏ, ଅଟକି ରହିଥାଏ କଣ ଗୋଟାଏ ପ୍ରତୀକ୍ଷାରେ, ସେତେବେଳେ ପର୍ବତ ଉପରୁ ଶୁଭିଲା ପ୍ରଚଣ୍ଡ ରଡ଼ିଟାଏ, ତାପରେ ତୁହାଇ ତୁହାଇ । ସେ ଭୟଙ୍କର ରଡ଼ିରେ ଚାରିଆଡ଼ ଥରି ଉଠିଲା ।

ଉପତ୍ୟକାରେ ସମସ୍ତେ ସେ ବୋବାଳି ଶୁଣିଥିବେ । ଚାରିଆଡ଼େ ନିସ୍ତବ୍ଧ ପଡ଼ିଗଲା, କେଉଁଠି ଟିକିଏ ଖୁଡ଼୍ ଶବ୍ଦ ବି ନାହିଁ, ସତେ ଅବା ବେଙ୍ଗ ବେଙ୍ଗୁଲି ବି ଖସ ଖସ ନକରି ଖେପା ମାରିଲେ ।

ଧୂର୍ବ ସିଂ ପିଣ୍ଡା ଉପରେ ବସି ତା ଅଡଲ ପେଟ ଉପରେ ବର୍ଷିକିଆ ନାତିଟିକୁ ଶୁଆଇ ନଚୋଉଥାଏ, ଥାପୁଡୋଉଥାଏ, ଧଇଁ ସଇଁ ହୋଇ ଧାଇଁ ଆସିଲା ଧନୁ ପଣ୍ଡିତ୍ । ଦିହେଁ ସମାନ ବୟସି, ଷାଠିଏ ଉପରେ ଆହୁରି ପାଞ୍ଚ । ଧୂର୍ବ ଗୋରା ଲୋକ, ଜାତିରେ ଗଣ୍ଡ, ମୁଣ୍ଡବାଳ ବଡ଼ ଟୋପି ପରି ଅରାଏ ଫରଚା ହୋଇ ଚନ୍ଦା, ତା ଚାରିକରେ ଗହଳି ହୋଇ କଳା-ଧଳା ବାଳ । ଧନୁର ବାଳ ଝୋଟ, କିନ୍ତୁ ଏବେ ସୁଦ୍ଧା ବହଳ, ଜାତିରେ ସେ ଥାନାପତି, ହାଡୁଆ କଳା ଲୋକ, ଲମ୍ବ ମୁଣ୍ଡବାଳକୁ ମୁଣ୍ଡ ମଝିରେ ଫିରେଇ କାଟି ଦିଭାଗ କରିଛି, ସେ ବେକ ତଳକୁ ଲୋଟୁଛି, ନିଶଦାଢ଼ୀ ବହଳ ହୋଇ ଝୁଲୁଛି ।

ଡରି ଡରି ଥିରି ଥିରି ତୁନି ତୁନି କରି ଧନୁ କହିଲା, ''ଶୁଣିଲୁ ?''

ସେତେବେଳେକୁ ରଡ଼ି ଶବ୍ଦ ଦୂରେଇ ଦୂରେଇ ଯାଇ ବନ୍ଦ ହେଲାଣି ।

ଧୂର୍ବ ସିଂ କହିଲା, ''କଣ ?''

ଧନୁ କହିଲା, ''ବାଘ ।''

ଧୂର୍ବ ଗମ୍ଭୀର ହୋଇ କହିଲା- ''ପର୍ବତ ଉପରେ-''

ଧନୁ କହିଲା- ''ଗର୍ଜନ କଲା ।''

ଦିହେଁ ଗୁମ୍ ହୋଇ ରହିଗଲେ । ବାଘକୁ ସମ୍ମାନ ଦେବାକୁ ମନ କରି ସେମାନେ ଟିକିଏ ସଂସ୍କୃତିଆ ସାଧୁଭାଷା ଚେଷ୍ଟା କରିଥିଲେ, ସେତିକି ।

ବଣରେ ବାଘ ରଡ଼ିବା କିଛି ନୂଆ କଥା ନୁହେଁ, ସୂର୍ଯ୍ୟ ପୂର୍ବଦିଗରେ ଉଦୟ ହେବା ପରି ନିତ୍ୟ ନୈମିତ୍ତିକ । ସେ ବଣ ଦେଶରେ କେଉଁ ଗାଁରେ, କେଉଁ ଉପତ୍ୟକାରେ, କେଉଁ ପର୍ବତରେ ବାଘ ଗୋରୁ ଖାଇବା କି କେତେବେଳେ ମଣିଷ ଖାଇବା ବି ଅତି ଜଣାଶୁଣା ଘଟଣା, ପୃଥିବୀର ସୃଷ୍ଟି ଦିନୁଁ ଯେପରି ପୃଥିବୀ ଇତିହାସରେ ବାରମ୍ବାର ରହିଆସିଚି, ହତ୍ୟା, ବିଭୀଷିକା, ଲୁଣ୍ଠନ, ଅତ୍ୟାଚାର, ହିଂସା, ପର ଉପରେ ଆଧିପତ୍ୟ ଓ ଶୋଷଣ, ତା ବିରୁଦ୍ଧରେ କହିବାକୁ କେତେ ଧର୍ମ କେତେ ଧର୍ମପ୍ରଚାରକ ଆସିଛନ୍ତି ପୁଣି ଶୂନ୍ୟରେ ମିଶିଛନ୍ତି, କେତେଥର ଉଇଁଲାପରି ଦିଶିଚି ସତ୍ୟଯୁଗର ଉଷା,

ଆକାଶରେ ରକ୍ତର ଛିଟା ଦିଶିଛି ସିନ୍ଦୂରା ଫାଟିଲା ପରି, ତଥାପି ବାରମ୍ବାର ଜନ୍ମ ହୋଇଛନ୍ତି ସାପ, ବାଘ, ନାନା ହିଂସ୍ରକ ଜନ୍ତୁ ଆଉ ରାକ୍ଷସ ଆଉ ମଣିଷ ପହିଲ କାଢ଼ିଛନ୍ତି ବୀରଭୋଗ୍ୟା ବସୁନ୍ଧରା ବୋଲି କହି । ସେହିପରି -ଏ ବଣ ଦେଶର ଇତିହାସରେ ବାରମ୍ବାର ବଘେଇ ଘୋଟିଛି, ଛାଡ଼ିଯାଇଛି ପୁଣି ଘୋଟିଛି, ଠାଏ ବନ୍ଦ, ଠାଏ ନୂଆ ହୋଇ ଆରମ୍ଭ ।

କିନ୍ତୁ କେଜାଣି କେମିତି ହୋଇଥିଲା ଯେ, ଲେଡ଼େଂ ଉପତ୍ୟକା ଭିତରେ ରହିଥିବା ଜୀଅନ୍ତା ମଣିଷଙ୍କ ସ୍ମୃତି ଭିତରେ ସେଠି ବାଘ ଉପଦ୍ରବ ନଥିଲା, ଯଦିଚ ଲେଡ଼େଂ ଡେଇଁଲେ ବଣ ଭିତରେ, ଅନ୍ୟ ଗାଁରେ ଥିଲା । କେମିତି ବର୍ତ୍ତିଥିଲା ଲେଡ଼େଂ ? ଏତେ ରାଜ୍ୟରେ ଅଶାନ୍ତି, ଆତଙ୍କ ବିଭୀଷିକା, ଲେଡେଂ ଛାଡ଼ ପାଇଥିଲା କେମିତି ? ଧନୁ ପଣ୍ଡିତକୁ ପଚାରିଲେ ସେ ବିସ୍ମୟକର ଅଧାହସଟିଏ ଦେଖାଇ ଦେଇ କହେ, ''ଲେଡେଂ ପୁଣ୍ୟ ଭୂମି, ଲେଡେଂ ମାଟି ପବିତ୍ର ।''

ପୁଣ୍ୟ ଭୂମି- କାରଣ ତା ମାଟିରେ ଭେଦିଛି ଅସୁମାରି ବଳି ପଡ଼ିଥିବା ପଶୁପକ୍ଷୀଙ୍କ ରକ୍ତ । ବ୍ରାହ୍ମଣୀ ଦେଇ ଠାକୁରାଣୀ ଓ ତାଙ୍କ ତଳର ଠାକୁର ଠାକୁରାଣୀଙ୍କ ପାଖେ ବର୍ଷଯାକ ବଳି ପଡୁଥାନ୍ତି ଘୁଷୁରୀ ଛେଳି, କୁକୁଡ଼ା ପାରା । ଏ ପୁଣ୍ୟ ଭୂମିରେ ଲୋକେ ଯେଡ଼େ 'କାଷ୍ଟାନିଷ୍ଟାରେ' ଧର୍ମ କରନ୍ତି ଅନ୍ୟଠିଁ ସେଡ଼େ ଉଗ୍ର ଭାବେ ତା ଦିଶେ ନାହିଁ, ଲମ୍ବା ବାଳ ବଢ଼ାନ୍ତି, ଉପାସ କରନ୍ତି, କେତେ ଲୋକ ଜଟା ବାନ୍ଧନ୍ତି, ଜଟାରେ ବର ଖିଅ ମାଲିସ କରନ୍ତି, ବର୍ଷଯାକ କେତେ ଯାତ୍ରା ଅଛି, ପେଟେଇ ପେଟେଇ ଘୁଷୁରିବା ଯାତ୍ରା, ଗୁରୁଣ୍ଡି ଗୁରୁଣ୍ଡି ଯିବା ଯାତ୍ରା, ଜିଭକୁ ପିଠିକୁ ଡାଙ୍ଗଣରେ ଫୋଡ଼ିବା ଯାତ୍ରା, ଆପଣା ଦେହରେ ବିଛୁଆତୀ ଲଗାଇ ହେବା ଯାତ୍ରା, ନିଆଁ ଉପରେ ଚାଲିବା ଯାତ୍ରା, ଗୀତ ବାଜାର ତ ଧୁମ୍ ଉଡ଼େ, ଲୋକେ ଏତେ ଧର୍ମ କରନ୍ତି ବୋଲି ଠାକୁରାଣୀମାନେ ଖୁସିଥାନ୍ତି, ତାଙ୍କ ଡରରେ ବାଘ ପଶେ ନାହିଁ । ଲେଡେଂର ଲୋକେ ସେଥିପାଇଁ ଗର୍ବ ଅନୁଭବ କରନ୍ତି, ତାଙ୍କ ଧାରଣା ବିଧାତା ତାଙ୍କୁ ଏ ସଂସାରରେ ସବୁଠୁ ଶ୍ରେଷ୍ଠ ମଣିଷ କରି ଜନ୍ମ ଦେଇଛି, ନହେଲେ ଏଭଳି ଆଉ କେଉଁଠି ଅଛି ?

ଧର୍ମଗତ କାରଣ ଛଡ଼ା ଆଉ ଗୋଟାଏ କାରଣ କଥା ବି କେହି କେହି ତୁନି ତୁନି କହନ୍ତି । ଇଂରେଜ ଅମଳରେ ପାହାଡ଼ ଉପରେ ବରଗଛ ତଳେ ଯେତେବେଳେ ପଲଟଣ ଛାଉଣୀ ପକାଉଥିଲେ ସେତେବେଳଠୁ ଯେ ବହୁତ ବର୍ଷଯାକେ ଏ ଅଞ୍ଚଳରେ ବଣରେ ବାଘ ମାରିବା ପାଇଁ ସାହେବମାନେ ଲେଡେଂରେ ବସା ବାନ୍ଧୁଥିଲେ, ବୁଲି ବୁଲି ବନ୍ଧୁକରେ ବାଘ ଶିକାର କରୁଥିଲେ । ବାଘ ମାରିବାକୁ ତାଙ୍କର ଭାରି ସଉକ । ତାଙ୍କ ସଙ୍ଗରେ ଯିବେ ବୋଲି ଲେଡେଂର ତିନିଚାରି ଜଣ ଲୋକଙ୍କୁ ସେମାନେ ମାଗଣାରେ ଗୋଟିଏ ଲେଖା ବନ୍ଧୁକ ଦେଇଥିଲେ, ତାଲିମ୍ କରିଥିଲେ । ସାହେବ ନଥିଲାବେଳେ ସେମାନେ ବି ବୁଲି ବୁଲି ବାଘ ମାରୁଥିଲେ । ବାଘ ମାରିଲେ ସେ ବଣରେ ନିଧଡ଼କରେ ବୁଲି ହେବ, ଜଙ୍ଗଲ କର୍ମଚାରୀ ଅବକାରୀ କର୍ମଚାରୀ ପୁଲିସ୍ କର୍ମଚାରୀ ସବୁ ବୁଲା କର୍ମଚାରୀଙ୍କର ସୁବିଧା, ବେପାରିଙ୍କର ତ ସହଜେ, କବାଟ ଖୋଲା । ପୁଣ୍ୟଭୂମି ଲେଡେଂରେ ବହୁକାଳ ଏମିତି ଚାଲିଥିଲା, ବଘେଇ ନ ଥିଲା । ବୁଲନ୍ତୁ, ଯେ ଯେଉଁଠିକି ଇଚ୍ଛା, ବଣର ଲୋକେ ପାହାଡ଼ ଡ଼ାଲୁରେ, ଅନ୍ୟଠିଁ ବଣ ହାଣି ଜାଗା ସଫା କରି ଯେଉଁ ହଳଦୀ ଫସଲ ଉପୁଜାନ୍ତି, ଯେଉଁ ବଡ଼ କାନ୍ଦୁଲ ଫସଲ, ଆଉ ଇଙ୍କା, ଢୋଣା, ମକା, ଜଡ଼ା, ସୋରିଷ, ଅଳସି -କେତେ ପଣସ, ସପୁରୀ, କଦଳୀ, କମଳା -ଯେତେ ତେନ୍ତୁଳୀ, ଅଦା, ପାଳୁଅ, ମହୁଲ, ଝୁଣା, ହରିଡ଼ା, -ଅତି ଶସ୍ତାରେ ଖାଲି ନାଁକୁ ମାତ୍ର ଦାମ୍ ଦେଇ

ନେଇ ଯାଆନ୍ତୁ ଯେଉଁ ବେପାରି ଯେତେ ପାରୁଛନ୍ତି ପଦାକୁ, ବିକିବେ, ଭଲ ଦାମ୍ ପାଇବେ- ବାଘ ନଥିଲା କି ଆକଟ ନଥିଲା ।

ତାପରେ ହଠାତ୍ ବାଘ ରଡ଼ି !

ତହିଁ ଆରଦିନ ପୁଣି ସଞ୍ଜ ବୁଡୁ ବୁଡୁ ବାଘ ରଡ଼ି ଶୁଭିଲା । ସେ ଉଚ୍ଛନ୍ନ ହୋଇ ରଡ଼ି ରଡ଼ି ବୁଲୁଛି । ସତେ ଯେପରି ଘଡ଼ି ଘଡ଼ି ସ୍ୱରରେ ସେ ପ୍ରଚାର କରୁଛି, ''ଏଠି ମୋର ପିତୃ ପୁରୁଷ ଅମଳର ବାଘୁଆ ସିଂହାସନ, ବଣର ରାଜା ବାଘ, ବାଘ ନଥିଲେ ବାଘୁଣୀ, ବାଘ ବଂଶର ଯେ ଥାଉ, ଏକା କଥା, ମଝିରେ କେମିତି ଫାଙ୍କା ପଡ଼ିଥିଲା ସିନା, ପୁଣି ମୁଁ ଆସିଛି, ଏ ବଂଶର ଅଛିଣ୍ଡା ଧାର ପୁଣି ଲାଗିଗଲା ।'' ତାପରେ ରାତିଯାକ ଯେତେ ବିଲୁଆ ପହରିକିଆ ବୋବେଇଲେ ସେମାନେ ସତେକି ସେ ବାଘ-ଯୁବରାଜ କି ବାଘ-ଯୁବରାଣୀଙ୍କ ପାଳିଆ, କେହି କେହି ଲେଡେଂ ଲୋକେ ସେପରି ବି ଭାବୁଥାନ୍ତି, ଯେମିତି ନିଜେ ଧୃର୍ବ ସିଂ । ଆଗ ନିଶା ରାତିରେ ବାଘ ବୋବେଇ ବୋବେଇ ଦୂରକୁ ଗଲା, କେତେବେଳେ ପରେ ଏକାଠି ଅତର୍କ୍କ ହୋଇ ବୋବେଇ ଉଠିଲେ ବିଲୁଆ ଗୁଡ଼ାଏ, ଯେପରି ପ୍ରାଣବିକଳରେ ବୋବୋଉଛନ୍ତି, ଜୀବନ ମରଣ ସମସ୍ୟା, ନ ବୋବେଇଲେ ଏ ଜୀବ ଯିବ । ଧୃର୍ବ ସିଂ ତାର ଭାରିଜାକୁ କହିଲା-

''ଶୁଣିଲୁ -ଏଟା ଜୟନାଦ ।''

''ମତେ ଭାରି ଡର ମାଡୁଛି ଗୋ-''

''କିଛି ଡର ନାହିଁ, ଆମର ପୁଣ୍ୟ ମାଟି, ଏଠି ବାଘର ବପୁ ଖଟିବ ନାଇଁ, ସେ ପଳେଇବ । ଏ ଯେ କୋହ୍ଲିଆମାନେ- ଯେ କୌଣସି ଅଚିହ୍ନା ଜନ୍ତୁ ଯଦି ପଦାରୁ ଆସିବ, ଚେହେରାରେ କି ପାଟିରେ କି ଧମକ ଚମକ ଦ୍ୱାରା ଡରେଇ ପାରିବ, ଏମାନେ ତାକୁ ଜୟଧ୍ୱନି ଦେବେ । କୁକୁଡ଼ା କଲିଜାଠୁଁ କୋହ୍ଲିଆଙ୍କ କଲିଜା ଆହୁରି ସାନ । ଅସଲ ଡରୁଆ, ସବୁ ଦିନେ ।'' ବିଲୁଆ ପଲ ଖୁବ୍ ବୋବେଇଲେ, ବଣଯାକ । ସତେ ଅବା ପରସ୍ପର ସଙ୍ଗେ ପ୍ରତିଯୋଗିତା କରୁଥାନ୍ତି । ସେଇଠୁ ତୁନି ହେଲେ । ରାତି ସରିଲା । କ୍ରମେ ବାଘ ବିଷୟରେ ବଳକା ଖବର ଆସିଲା । ଓଦା ମାଟିରେ ତା ପାହୁଲ ପଡ଼ିଥିବା ଦେଖାଗଲା, ମାପ କରାଗଲା, ସେ ପାଦ ଚିହ୍ନରୁ ଜଣାଗଲା ସେ ମସ୍ତବଡ଼ ବାଘ । ତା ସଙ୍ଗେ ଯୋଡ଼ାଏ ସାନ ସାନ ବାଘର ପାଦଚିହ୍ନ ବି ବାରିହେଲା, ଅନୁମାନ ହେଲା -ମସ୍ତବଡ଼ ବାଘୁଣୀଟାଏ, ତା ସଙ୍ଗରେ ଦିଟା ଛୁଆ । କାଳ କ୍ରମେ ବଣରେ କେତେ କେତେ ବେଳେ କେହି କେହି ସେମାନଙ୍କୁ ଦୂରରୁ ଦେଖି ପଳାଉଥାନ୍ତି, ଗାଁରେ କହୁଥାନ୍ତି ।

ଲୋକେ ବଣରେ ନ ବୁଲିଲେ ବଣରେ କାମ ନକଲେ ଚଳି ପାରନ୍ତେ ନାହିଁ, ବଣ ହିଁ ତାଙ୍କର ଘର, କିନ୍ତୁ ସେମାନେ ଡରିଯାଇ ସତର୍କ ହେଲେ, ଗୋଟି ଗୋଟିକିଆ ହୋଇ ବୁଲନ୍ତି ନାହିଁ, ପଞ୍ଝା ପଞ୍ଝା ହୋଇ ଯା ଆସ ହୁଅନ୍ତି, କାମ କରନ୍ତି ।

ଆଗ ଆଗ ବାଘ ଗର୍ଜନ ଶୁଣିବା ଛଡ଼ା ଆଉକିଛି ଅନିଷ୍ଟ ହେଲା ନାହିଁ । ତାପରେ ଦେଖାଗଲା, ଗୋରୁ ଗାଈ ଚରିବାକୁ ଯାଇ ହଜିଲେ ଆଉ ମିଳୁ ନାହାନ୍ତି, ତାପରେ ପ୍ରତି ତିନିଦିନେ ଚାରିଦିନେ ଆଖ ପାଖରେ କେଉଁଠି ହେଲେ ବଣରେ ରାଣି (ଅର୍ଥାତ ଗୋଠ) ଭିତରକୁ ପଶି ଆସି ବାଘୁଣୀ ଗୋଟାଏ ମଇଁଷି କି ଗାଈ କି ବଳଦ ଘୋଷାରି ନେଇଗଲା ବୋଲି ଖବର ଖେଳୁଥାଏ,ଲେଡ଼େଂ

ଉପତ୍ୟକାରେ ଓ ଆଖପାଖରେ 'ବଘେଇ' ଲାଗିଗଲା, ଅର୍ଥାତ୍ ବାଘ ମାତିଛି, ଖାଉଛି ବୋଲି ଭୟ ଘୋଟିଗଲା । ଲୋକେ ଗୋଠ ମାନଙ୍କୁ କଟକଣା କରି ପଘାଏ ପଘାଏ ବାନ୍ଧି ଗାଁରେ ହିଁ ରଖିଲେ, ଭୋକରେ ତାଙ୍କ ପେଟରେ ଧଡ଼ ପଡ଼ୁ ପଛେ, ତାକୁ ଖୋଲିଲେ ନାହିଁ, ଘାସ ପତ୍ର କାଟି ଆଣି ଖୁଆଇଲେ, ନିଜେ ବି ଗାଁ ଛାଡ଼ି ଦୂରକୁ ଯାଆନ୍ତି ଅଳ୍ପ । କିନ୍ତୁ ତାପରେ ଆରମ୍ଭ ହୋଇଗଲା ପ୍ରକୃତ 'ବଘେଇ', ବାଘ ମଣିଷ ଖାଇଲା ।

ବାଘ ଶାଗ ଖାଏ ନାହିଁ, 'ବାଘ ମଣିଷ ଖାଏ, ଲୋକଙ୍କ ତୁଣ୍ଡରେ ସବୁକାଳେ ଏ ଅପବାଦ' ଏକଥା ଜଣେଇ ଜଣା, ଯେମିତି- ବିଷାକ୍ତ ସାପ ଦଂଶେ, ଅରଣା ମଇଁଷି ଭୂଷେ । ସ୍ୱଭାବର ମୁହଁ କେହି ଚୁଣ୍ଟି ନ ପାରିଲେ ସ୍ୱଭାବ ବାହାରେ, ତାର ବଳକା ଦୋଷ ନଥିଲା । ମଣିଷ ଯେମିତି, ସ୍ୱାଧୀନ ଭାବେ ଭାବନ୍ତି ''ସଂସାରରେ ଜନ୍ମ ହୋଇଛୁଁ, ସଂସାରରେ ଥିବା ଯାକେ ଆମ୍ଭକୁ ଗଣ୍ଡିଏ ଖାଇବାକୁ ମିଳିବା ଆମର ଜନ୍ମଗତ ଅଧିକାର, ବଞ୍ଚି ରହିବା ପାଇଁ ନିମ୍ନତମ ଉପାଦାନ ଯାହା, ତା ଆମକୁ ମିଳିବା ଆମର ଜନ୍ମଗତ ଅଧିକାର,'' ହୁଏତ ସେ ବାଘ ବି ସେମିତି କିଛି ଭାବିଥିଲା- ''ମୋର ପ୍ରତିଦିନ ଖୋରାକି ମତେ ମିଳିବା ମୋର ଜନ୍ମଗତ ଅଧିକାର ।''

ଲେଡେଂ ପାଖର ୮/୧୦ ଖଣ୍ଡ ଗାଁରୁ ଲୋକ ବାଘ ମୁହଁରେ ଗଲେ, ଲେଡେଂ ଗାଁରେ ସେ ସମସ୍ତିଙ୍କର ବନ୍ଧୁବାନ୍ଧବ ଅଛନ୍ତି; ତାପରେ, ଅଶିଣ ମାସରେ, ମେଘର ବଳ ହଟିଥାଏ, କେତେବେଳେ କାଁ ଭାଁ ହାଲୁକା ହୋଇ ଅସରାଏ, ମଣିଷ ଲୁଚିଯିବ, ବଣରେ ହାତୀଆ ଘାସ, ସେ ନୂଆ ନୂଆ ଫୁଲ ଉଡ଼ାଉଥାଏ, ସେତିକି ବେଳେ ବି ଦି ଦିନ ଛଡ଼ାରେ ଲେଡେଂ ମୌଜାର ବିଭିନ୍ନ ବସ୍ତିରୁ ଜଣ ଜଣକୁ ବାଘ ଖାଇଲା, ଦିନ ଗଣୁ ଗଣୁ ଛଅଜଣ ଗଲେ, ଗୋଟିଏ ଆଠ ବର୍ଷର ଝିଅ, ସ୍ତ୍ରୀଲୋକ ଯୋଡ଼ିଏ, ବୁଢ଼ାଟିଏ, ଦି ଜଣ ଯୁବକ । କିଏ ଗାଁ ତଳ ଝରଣାକୁ ଯାଇଛି ଝରଣା କୂଳରୁ ତାକୁ ଉଠେଇ ନେଲାଣି, କିଏ ଦଳରେ ଥାଇ ବାଟରେ ଚାଲୁଥିଲା, ଗୋଟାଏ କରରୁ ବାଘ ଝପଟି ଆସି ମଣିଷ ଧରି ଧାଇଁ ପଳାଇଲା, କିଏ ମଞ୍ଚାରେ ବସି ଚାଷ କ୍ଷେତରେ ଫସଲ ଜଗିଥିଲା, ଦେଢ଼ ପୁରୁଷ ଉଚ୍ଚରେ ମଞ୍ଚା, ବାଘ ମଞ୍ଚା କୁଡ଼ିଆ ଆଡ଼କୁ ଡେଇଁ ପଛଆଡ଼ୁ ହାବୁକା ମାରିଲା, ଲୋକଟା ତଳେ ପଡ଼ିଗଲା, ତାପରେ ଶିକାର ।

ବାଘ ମଣିଷ ଖାଏ, ତା ଉପରେ ଯେ ପୁଣି ବାଘୁଣୀ, ଓ ଯାର ଆହୁରି ବଳକା ପ୍ରୟୋଜନ, -ଦି ପିଲାକୁ ଶିକାର ବିଦ୍ୟା ଶିଖେଇବ, ନିଜ ପେଟ ପୋଷିବା ଛଡ଼ା ଦି ପିଲାଙ୍କ ପେଟ ବି ପୋଷିବ । ଏଥିରେ ସନ୍ଦେହ ନାହିଁ ଯେ ବାଘୁଣୀର ବାଘୁଆ-ବିବେକ ବୋଲି ଯଦି କିଛି ଥିବ, ତେବେ ଲେଡେଂ ଗାଁର ମଣିଷକୁ ଧରି ଧରି ଖାଇବା ତାର ସଂପୂର୍ଣ୍ଣ ବିବେକାନୁମୋଦିତ । ସେ ତା ବାପା ଅଜାଙ୍କ ଧନ ହିଁ ରକ୍ଷା କରୁଥିଲା । ଲେଡେଂ ଲୋକେ ଯେତେ ତାକୁ ଶୋଧନ୍ତୁ କଟା ସମ୍ପା କରନ୍ତୁ, ତାକୁ ଡରନ୍ତି ଭକ୍ତି କରନ୍ତି ସମସ୍ତେ । କିନ୍ତୁ ସହନ୍ତେ ବା କେତେ ? ଗୁରେଇ ତୁରେଇ ପୁଣି ଲାଗିଗଲା ଲେଡେଂ ଉପତ୍ୟକାରେ ମଣିଷଖିଆ । ଶୋକ, କ୍ରୋଧ ଓ ନୈରାଶ୍ୟ ଲେଡେଂ ଅଧିବାସୀଙ୍କ ମନରେ ଏକାଠି ମିଶି କ୍ରମେ ତାଙ୍କୁ ଉତ୍ୟକ୍ତ କଲା । ଲୋକେ କୁହାକୁହି ହେଲେ ।

ଆଉ ଲେଡେଂରେ ବନ୍ଧୁକ ନଥିଲା କି ବନ୍ଧୁକୀ ନଥିଲେ । ଲେଡେଂ ଲୋକେ ହୁଏତ ପଦାକୁ ଯାଇ ସେଭଳି କିଛି ଉପାୟ ପାଇଁ ଆୟୋଜନ କରିଥାନ୍ତେ । କିନ୍ତୁ ଏତିକିବେଳେ ହଠାତ୍ ଦିନେ ଧନୁ

ପଣ୍ଡିତକୁ ବ୍ରାହ୍ମଣୀ ଦେଈଙ୍କ ଆଦେଶ ରଡ଼ି ଦେଲା-

''ଧନୁଶର ବାଟୁଳିଖଡ଼ା ବର୍ଚ୍ଛା ଖଣ୍ଡା ଠେଙ୍ଗା ଯାଆ ଅଛି ଧର । ଚଇତ୍ର ମାସରେ ବଣରେ ଶିକାର କଲାପରି ଏକାଠି ବାହାରିପଡ଼, ବାଘୁଣୀକୁ ସବଂଶେ ନିପାତ କର, ସେଇଟା ଦେବତା ନୁହେଁ, ସେ ଦୁଷ୍ଟ, ମୋର ହୁକୁମ୍ ହେଲା, ସେ ମରିବ ।''

ଡର ଡର ଥର ଥର ଲେଡେଂ ଉପତ୍ୟକାର ବଡ଼ ଗାଁରେ ସାନ ସାନ ଗୁଡ଼ାକର ହଠାତ୍ ଦେଖାଗଲା ନୂଆ ଆଶା, ନୂଆ ତେଜ, ସ୍ଥାନେ ସ୍ଥାନେ ଗାଁର ପୁରୁଷ, ସ୍ତ୍ରୀ, ପିଲା ଏକାଠି ରୁଣ୍ଡନ୍ତି, ଠାକୁରାଣୀଙ୍କ ହୁକୁମ୍ ଆଉ ଥରେ ଶୁଣେଇ ଦିଆହୁଏ, ତା ସଙ୍ଗେ ସଙ୍ଗେ ବାଘୁଣୀଟାର ସବୁ ଅପକୀର୍ତ୍ତି । ସତକୁ ସତ, ବାଘ ବୋବାଳି ବି ଆଉ ଶୁଭିଲା ନାହିଁ, ଲେଡେଂ ଉପତ୍ୟକାରେ ଓ ଆଖପାଖ ଜଙ୍ଗଲରେ ମଝିରେ ମଝିରେ ଖାଲି ଶୁଭୁଥାଏ ବାଜା ଶବ୍ଦ ଓ ଏକାଠି ହୋଇ ମଣିଷଙ୍କ ଉତ୍ତେଜିତ କୋଳାହୋଳ, ବେଳେ ବେଳେ ସେ ଗହଳି ହାଉଯାଉରୁ ଶବ୍ଦ ବାରିହୁଏ :-

''ଆରେ ରେ-ମଣିଷଖିଆ ବାଘୁଣୀ ! -ବାଘୁଣୀ ଧ୍ୱଂସ ହେବ ।''

ବାଘ ତୁନି ପଡ଼ିଥାଏ, ସତେ ଅବା ସେ ବୁଝି ପାରିଥାଏ ଯେ ତା ଦିନକାଳ ଶେଷ । ସତେ ଅବା ଜନ୍ତୁ ହେଲେ ବି ସେ ବୁଝୁଥାଏ, ଯେ ଖଣ୍ଡାଠୁ ଯେମିତି କଲମ୍‌ର ବଳ ବେଶି, ସଂସାରରେ ସବୁଠି ବେଶି ବଳ ବୋବି ଅର୍ଥାତ୍ ମୁଖରବ୍ ଧ୍ୱନିର । ଲେଡେଙ୍ଗିଆଙ୍କ ସାହସ ବଢ଼ିଲା, ସେମାନେ ହସି ହସି କୁହାକୋହି ହେଲେ, ''ଆଉ ବାଘ ଗୋରୁ ବି ଖାଉ ନାହିଁ, ମଣିଷତ ମଣିଷ, ଡରିଲାଣି, ବୁଝିଲାଣି ମରଣ ନିକଟ ।''

ବ୍ରାହ୍ମଣୀ ଦେଈ ଠାକୁରାଣୀଙ୍କ ପାଖେ ବାଘ-ମାରୀ ପୂଜା କରାହେଲା, ପଣ୍ଡିତ ଦିନଯାକ ଉପାସ କରିଥାଏ, ତା ସଙ୍ଗେ ଗାଁ ମୁଣ୍ଡିଆଳ ଧୂର୍ବ ସିଂ । ଘୁଷୁରି, ଛେଳି, ପାରା, କୁକୁଡ଼ା ବଳି ପଡ଼ିଲେ, ମଦ ଢ଼ଳା ହେଲା, ବାଜା ବାଜିଲା, ବାଜା ଶବ୍ଦ ଉହାଡ଼ରେ ପଣ୍ଡିତ ଭୁଟୁରୁ ଭୁଟୁରୁ ହେଉଥାଏ, ତା ଆଖି ଦିଟା ଚଢ଼ା ଚଢ଼ା ଦିଶୁଥାଏ । ଲୋକେ ଗୋଡ଼ ତଳେ ପଡ଼ିଲେ । ତା'ପରେ ଛାଇ ଢ଼ଳିଥାଏ, -ଧୂର୍ବ ସିଂ ଓ ଧନୁ ପଣ୍ଡିତ ବଡ଼ ପାଟିରେ ଜନତାଙ୍କୁ ବୁଝାଇଲେ ବାଘମରା ଆୟୋଜନର ସବୁ ନିର୍ଘଣ୍ଟ । ଆସନ୍ତା କାଲି ସକାଳୁ ସକାଳୁ ଲେଡେଂ ବାସୀ ସମସ୍ତେ ବ୍ରାହ୍ମଣୀ ଦେଈ ଠାକୁରାଣୀଙ୍କ ପାଖେ ରୁଣ୍ଡିବେ । ସକାଳୁ ସକାଳୁ ଗାଧୋଇ ଖାଇ ବାହାରି ଆସିଥିବେ, ସଙ୍ଗରେ ଆଣିଥିବେ ବାଜା, ଅସ୍ତ୍ରଶସ୍ତ୍ର, ଯାହାଠି ଯାହା ଥିବ; ସେମାନେ ଠାକୁରାଣୀଙ୍କ ସିନ୍ଦୂର ମୁଣ୍ଡରେ ମାରିବେ, ଠାକୁରାଣୀଙ୍କ ଆଶୀର୍ବାଦ ସେ, ତାପରେ ଶିକାରକୁ ବାହାରି ପଡ଼ିବେ । ଶିକାରର ବାଗ ହେବ ସହଜ, ଯେମିତି ଚିରାଚରିତ ଉପାୟରେ ଚୈତ୍ରମାସରେ ହରିଣ ସମ୍ବର ମରାଯାଏ, ଲୋକେ ଖେଳେଇ ହୋଇ ପଡ଼ିବେ, ବଣକୁ ଘେରାଉ କରିବେ, ବାଜା ବଜେଇ ବଜେଇ ବଣ ବୁଦାରେ ବାଡ଼ିରେ ପିଟି ପିଟି ଚାରିଆଡୁ ଚାପି ଆଣିବେ, ତାକୁ ଠା କେତେଜଣ ଶିକାରୀ ଘାଟିଜାଗା ଦେଖି ଧନୁ ଧରି ଛକିଥିବେ, କିଏ ତଳେ କିଏ ଗଛ ଉପରେ -ବାଘକୁ ଦେଖିଲେ ବି କେତେଲୋକ ଯାଇଁ ଯାଇ ଜାଗା ଓଗି ଧନୁ ଟାଣିବେ, ବାଘ ହଠାତ୍ ବାହାରିଲେ ତାକୁ ଛେକିବାକୁ କେତେ ଲୋକଙ୍କ ହାତରେ ଲମ୍ବା ବର୍ଚ୍ଛାଥିବ, ପାଖକୁ ଯାଇ ବି କେହି କେହି ଖଣ୍ଡାରେ ତାକୁ ହାଣି ପକାଇବେ ।

ଏହି ବାଗରେ ଇତିହାସରେ ଅନ୍ତତଃ ଲେଡେଂ ଇଲାକାର ବଣର ଇତିହାସରେ -କେବେ

କେହି ଗାଁ ବାଲା ବାଘ ମାରିଥିଲେ ବୋଲି ଶୁଣା ନଥିଲା ସତ, ଗାଁ ବାଲା ବି ଭାବି ନଥିଲେ ଯେ ବଣ ଘେରୋଉ କରି ହରିଣ ଠେକୁଆ ଖେଦିବା ଓ ମାରିବା ଯେପରି ବାଘକୁ ମାରିବା ବି ସେପରି, ଅଥବା ଚଇତି-ଶିକାର ବେଳେ ବଣ ଯେମିତି ପାତଳ ଦିଶେ । ଗଛରେ ପତ୍ର ଅଛ, ଡାଳ ସବୁ ଅଧା ଅଧା ଲଣ୍ଡା, ଅଶିଣର ଭରା ବଣ ଦିଶିବ ସେହିପରି । ପ୍ରକୃତ କଥା, ସେମାନେ ଏ ସବୁ ବିଷୟରେ ଆଦୌ ଭାବି ନଥିଲେ, ରାଗିଥିଲେ, ତାତିଥିଲେ, ମାତିଥିଲେ, ଧନୁ ପଣ୍ଡିତ ତୁଣ୍ଡରେ ତାଙ୍କ ଠାକୁରାଣୀଙ୍କ ଆଦେଶ ସତେ ଅବା ସେମାନଙ୍କ ନିଜ ଅନ୍ତରର କାମନା, ଥରେ ସେ ଦେବୀଙ୍କ କାଳିସୀ ତୁଣ୍ଡରୁ ବାହାରିଲା ପରେ, ଶହ ଶହ ଲୋକଙ୍କ ତୁଣ୍ଡରେ ଭାଷା ହୋଇ ଜନ୍ମ ହେଲା ପରେ ସେ ନିଜେ ହୋଇଥାଏ ଗୋଟାଏ ଆଶ୍ଚର୍ଯ୍ୟ, ସ୍ୱାଧୀନ, ସ୍ୱତନ୍ତ୍ର ସୃଷ୍ଟି, ବଳୁଆ, ନିଡରୁଆ, ଅନ୍ୟମାନଙ୍କ ଆତ୍ମବିଶ୍ୱାସ ବଢ଼ାଉଥାଏ ।

"ମାର ! ମାର ! ମାର ! ମାର !" -ଥାଏ ଥାଏ ହଠାତ୍ କେଉଁଠି ଗୁଡ଼ାଏ ଲୋକ ଏକାଠି ହାଉଳି ହୋଇ ରଡ଼ି ଛାଡ଼ନ୍ତି ।

ସେମାନେ ଧରି ନେଇଥିଲେ, ସକାଳ ପାହିବ, ଦିନ ଚହଟିବ, ବାଘୁଣୀ ମରିବ, ବାଘ ବଂଶ ଲୋପ ହେବ । ପୁଣି ଆଗପରି ନିବାଘିଆ ନିରାପଦ ବଣ, ଯେଣେ ଇଚ୍ଛା ତେଣେ ବୁଲିବାକୁ, ମଣିଷ ନିଧଡ଼କ ହେବେ । ସଞ୍ଜଟି ଖୁବ୍ ଉତ୍ସାହରେ ଆନନ୍ଦରେ କଟିଲା, ଭୟ ଛାଡ଼ି ପଳାଇଲା, ସତେ ଯେପରି ବାଘ ମରି ସାରିଛି, ତାର ଚେର ଉପୁଡ଼ିଛି ।

ଏତେ ମଣିଷ, ତାଙ୍କ ବିପକ୍ଷରେ ମୋଟେ ଗୋଟାଏ ବାଘୁଣୀ, ଆଉ ତା'ର ବାପ ଛେଉଣ୍ଡ ଛୁଆ ଦି'ଟା । ବାଘୁଣୀଟାର ନଖ ଅଛି ଦାନ୍ତ ଅଛି ସତ, କିନ୍ତୁ ଦେହେ ଦେହେ ଜନ୍ମରୁ ତାଠି ଯେତିକି, ଏବେ ବି ସେତିକି ଶସ୍ତ୍ର ସେ ଦେହରେ, ବଦଳାଇ ପାରିବ ନାହିଁ, ବଢ଼ାଇ ପାରିବ ନାହିଁ । ତାର ନରମ ଦେହ, ତଳିପେଟ କଅଁଳ, ପେଟରେ କେଞ୍ଚାଏ ମାରିଲେ ଖଣ୍ଡିଆ ହେବ । ତାଠି ମୃତ୍ୟୁ ନ ଭେଦିଲା ଭଳି ତା ଦେହ ମନ୍ତୁରା ହୋଇନାହିଁ, କିଳା ହୋଇନାହିଁ, ଛାଉଣି ହୋଇନାହିଁ, ସାଧାରଣ ଜନ୍ତୁ ଦେହଟାଏ, କେହି ନ ମାରିଲେ ବି ନିଜେ ମରନ୍ତା । ଯେମିତି ତା ଆଗରୁ ମରିଛନ୍ତି, ଆହୁରି କେତେ ବାଘ ଆଉ ହାତୀ । କିନ୍ତୁ ଏତେ ଲୋକଙ୍କ କାମନାର ଏକତ୍ୱରୁ ଆତ୍ମବିଶ୍ୱାସ ଆସିଲା ପରେ କଳ୍ପନା ଯେତେବେଳେ ସେମାନଙ୍କୁ ସତ ପରି ଲାଗୁଥାଏ, ଲାଗୁଥାଏ ଯେ ବାଘୁଣିଟା ମଲାଣି, ପଟୁଆର କରି ତା ମୂର୍ଦ୍ଧାରକୁ ଚାରିଆଡ଼େ ଦେଖାଇ ବୁଲାହେଉଛି, ଲେଡେଂ ଲୋକେ ସେ ରାତିରେ ସ୍ୱପ୍ନ ଦେଖୁଥାନ୍ତି ବାଘ କେମିତି ମରୁଛି, ଗର୍ବ ଅନୁଭବ କରୁଥାନ୍ତି ଯେ ସେମାନେହିଁ ମାରିଛନ୍ତି ।

ରାତି ପାହିଲା, ଆରମ୍ଭ ହେଲା ସେଦିନର କାର୍ଯ୍ୟକ୍ରମ । ସେମାନେ କଣ ଘାଟି ଜାଗା ବାଛି ଜଗିବାକୁ ତୁନିତାନି ଆଗତୁରା କେହି ଚାଲିଗଲେ ? ଆଦୌ ନୁହେଁ । ସେମାନେ କ'ଣ ଖବର ଉଣ୍ଡିଲେ, ଯେ କେଉଁଠି ବାଘୁଣୀ ଲୁଚିଛି, ସେ କଣ କରୁଛି ? ତା ବି ନୁହେଁ । ଧର, ଯଦି ବାଘୁଣୀ ବି ତାଙ୍କରି ପରି ମାତି ଉଠିବ, ଅନ୍ଧରାଗ କି ପ୍ରତିହିଂସା କି ଆତଙ୍କରେ ପାଗଳ ହୋଇ ନିଜ ନିରାପତ୍ତା ନିଜ ଜୀବନକୁ ଛି' କରିଦେଇ ପରିଣାମ ନ ଭାବି କାହା କାହା ଉପରେ ଆକ୍ରମଣ କରିବ, ତେବେ କି ଉପାୟ କରାଯିବ, ପଳାଇବା ଉଚିତ୍ ମଣିଲେ, ଅଥବା 'ବୀରତ୍ୱ ସହକାରେ ପଛଘୁଞ୍ଚା ଦେବା' ପ୍ରୟୋଜନ ହେଲେ ସେଥିପାଇଁ ବାଟ ରଖାଯିବ- ଭାବିଥିଲେ ସେମାନେ ? ଆଦୌ ନୁହେଁ । ସେମାନେ

ସତେ କି ନଈବଢ଼ି, କି ତୋଫାନ, ଆପଣା ମଉତାହିଁ ତାଙ୍କ କାର୍ଯ୍ୟର ଦିଗବାଗ ଠିକଣା କରିବ, ଆଉ କିଛି ନୁହେଁ । ସେମାନଙ୍କର ଅନ୍ୟ ବିଶେଷତ୍ୱ ଥିଲା ଯେ ସବୁ ଲେଡେଂ-ବାସୀ ବ୍ୟକ୍ତିଗତ ଭାବେ ଓ ପୁଣି ସାମୂହିକ ଭାବେ ବିଶ୍ୱାସ କରୁଥିଲେ ଯେ ସେମାନେ ଯାହା କରିବାକୁ ଯାଉଛନ୍ତି ତାହା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଐତିହାସିକ କର୍ତ୍ତବ୍ୟ, ସେ କାର୍ଯ୍ୟ ଅତି ଠିକ୍, ଅତି ଉଚିତ୍, ଯାହାକୁ କୁହାଯାଏ ପବିତ୍ର କାର୍ଯ୍ୟ, ଧର୍ମକାର୍ଯ୍ୟ । ସେ ଜାତିର ଆଦିବାସୀ ସହଜେ ବାଘ ମାରିବାକୁ ରାଜି ହୁଏନାହିଁ, କାରଣ ସେ ଭାବେ ବାଘ ଗୋଟିଏ ଦେବତା, ବାଘ-ଦେବତାର ପୂଜା ବି ଅଛି । ସାହେବଙ୍କଠୁଁ ବନ୍ଧୁକ ପାଇ ଯେଉଁ କେତେଜଣ ପୂର୍ବେ ବାଘମାରିଥିଲେ ସେମାନେ ପୂରା ଆଦିବାସୀ ନ ଥିଲେ, ତଥାପି ସେମାନେ ଆଦିବାସୀ ସଂସ୍କାରକୁ ବିଶ୍ୱାସ କରୁଥିଲେ, କିନ୍ତୁ ଆପଣା ମତ ସହିତ ସାଲିସ୍ କରିଥିଲେ ଏଇଆ ଭାବି ଯେ ଦୋଷ ହେଲେ ସାହେବଙ୍କର ହେବ, ବନ୍ଧୁକ ସେ ଦେଲେ, ବୁଦ୍ଧି ସେ ଶିଖାଇଲେ । କିନ୍ତୁ ସେଦିନ ସକାଳେ ଲେଡେଂ ଲୋକଙ୍କ ମନରେ ସେଭଳି ସଂସ୍କାରର 'କିମ୍ବା କିନ୍ତୁ' ବି ନଥିଲା, ନିଜେ ଠାକୁରାଣୀ କହିଚନ୍ତି, ତେଣୁ ବାଘ ନମଲେ ବି ସତେ ଅବା ମରି ସାରିଲାଣି- ସେମାନେ ହେବେ ଖାଲି ନିମିତ୍ତମାତ୍ର, ତେଣୁ ସବୁ ଧୀରେ ସୁସ୍ଥେ, ସେମାନେ ଏ ଘଟଣାର ଯାଥାର୍ଥ୍ୟ ବିଷୟରେ କୁହାକୁହି ହେବେ, ତାପରେ ଯିବେ ।

ଠାକୁରାଣୀ ଆଗରେ ଲୋକେ ରୁଣ୍ଡିଲେ । ସଂକ୍ଷେପରେ ଠାକୁରାଣୀ ପୂଜା ହେଲା । ପଣ୍ଡିତ ସିନ୍ଦୂର ବାଣ୍ଟିଲା, ସେମାନେ ଲଗାଇହେଲେ । ଲେଡେଂ ଗାଁର ମୁଣ୍ଡିଆଳ ଗୋଟିଏ ଓଜସ୍ୱିନୀ ବକ୍ତୃତା ଦେଲା । ଲେଡେଂ ଉପତ୍ୟକା କେଡ଼େ ଶାନ୍ତ, ନିରାପଦ ଥିଲା, ତାପରେ ବାଘ କେତେ ଉପଦ୍ରବ କଲାଣି, ବାଘ କେଡ଼େ 'ଅମଣିଷ' ନୃଶଂସ, ପାପୀ, କେତେ ଅନୀତି କଲାଣି, ଏପରି ତା ବିରୁଦ୍ଧରେ ନାନା 'ଅଭିଯୋଗ' ଆଗତ କଲା, ତୁଣ୍ଡେ ତୁଣ୍ଡେ ତାକୁ ପ୍ରମାଣ କଲା, ବାଘକୁ ଦୋଷୀ କଲା, ତାର ମୃତ୍ୟୁଦଣ୍ଡ ଘୋଷଣା କଲା, ସମ୍ବାଦର ବିକୃତି ବି ଘୋଷଣା କଲା । ତା ପଛେ ପଛେ ସେହି କଥା କହିଲା ଧନୁ ପଣ୍ଡିତ । ଆଉ କେତେ ଲୋକ ବି ବକ୍ତୃତା ଦେବାକୁ ଜବ ଜବ ହେଲେ, ହାତୀ ଉଚ୍ଚ ଯେଉଁ ପଥର ଉପରେ ଠିଆହୋଇ ବକ୍ତୃତା ଦିଆ ହେଲା ସେତିକି ଚଢ଼ିବାକୁ କେତେଜଣ ଠେଲା ପେଲା ହେଲେ । ଉପରୁ ଚାହିଁଲେ ଦିଶିବ, ଏତେ ମଣିଷ ଠୁଳ ହୋଇଛନ୍ତି ଯେ ମୁଣ୍ଡ-ପଟାଳି ଉପରେ ଥାଳି ମାରିଦେଲେ ଥାଳି ଚାଲି ଯିବ । ଧ୍ରୁବ ସିଂ ସେହି ଆଡ଼କୁ ଅନାଇ ଉପରୁ ରଡ଼ିଲା ।

"ଆଉ କଥାକହି ଅଳସେଇ ହେବାକୁ ବେଳନାହିଁ । ଖରା ମାଡ଼ିଆସିଲା, ଏଥର ଅସଲ କାମ, ସମସ୍ତେ ଏକାଠି ହୋଇ ବଣକୁ ଘେରଉ କରି ଚାପି ବାଘକୁ ଖୋଜି ମାରିପକାଇବା, ବାଘର ମଢ଼ ଆଣିଲେ ସଞ୍ଜକୁ ପୁଣି ଏଇ ପଥର ପାଖରେ ଜମାହେବା, ନହେଲେ ବାଘକୁ ନଚେଇବା ନାହିଁ, ବଣରେହିଁ ରହିଯିବା । ଯେତେହେଲେ ଆମଠି ବୀର ରକ୍ତ ଅଛି, ଆମେ ଡରୁଆ ନୋହୁଁ ।"

ହୋ ହୋ ଗର୍ଜନ ଶୁଭିଲା ତା ସହିତ ବାଜାଶବ୍ଦ ମିଶିଲା, ଲୋକେ ବଣକୁ ଚାଲିଲେ ।

ବର୍ଷାରେ ବଣ ଉଲୁସି ଥାଏ, ବଡ଼ ବଡ଼ ଗଛ ଆଉ ଲଟା ମିଶି ମେଞ୍ଚା-ମେଞ୍ଚ୍ ଜାଲଛନ୍ଦା ହେଲାପରି, ତଳର ଗୁଳ୍ମ ବି ଘଞ୍ଚ ହୋଇ ବଢ଼ିଛି, କେଉଁଠି ଛାତିଏ ଉଚ୍ଚ କେଉଁଠି ପୁରୁଷ, ଘାସ ବି ସେହିପରି । ଢ଼ାଲୁଏ ଢ଼ାଲୁଏ ବଣ ବଢ଼ିଛି ପାହାଡ଼ ଉପରକୁ, ବଣ ବୋଝେଇ ପାହାଡ଼ରେ ପୁଣି ନାନା ଖୋଲ, କନ୍ଦି, ଝୋଲା, କେଉଁଠି ଅନ୍ଧାରେ ଅନ୍ଧାରେ ଝରଣା ଚାଲିଛି । ଘଞ୍ଚ ବଣରେ ସ୍ଥାନେ

ସ୍ଥାନେ ଆଗର ଲୋକକୁ ପଛ ଲୋକ ଦେଖି ପାରେ ନାହିଁ, କେତେବେଳେ ପଛ ଲୋକକୁ ଆଗ ଲୋକ । ଶାଗୁଆ ଘୋଡ଼ଣୀ ତଳେ କଣ ଅଛି, ସାପ କି ବାଘ ଦେଖିବା ଅସମ୍ଭବ । ସ୍ଥାନେ ସ୍ଥାନେ ଅତି ସଂକୀର୍ଣ୍ଣ ବାଟ, ବର୍ଷାଦିନେ ଯେଉଁ ସରୁ ପାଣି ଧାର ନିଗିଡ଼ି ଆସିଥିଲା, ତାହାରି ଗତିପଥ । ସ୍ଥାନେ ସ୍ଥାନେ ତା ବି ନାହିଁ । ବାଟ ନାହିଁ, ବାଡ଼ି ଗେଞ୍ଜି ଗେଞ୍ଜି ଠାସୁକୁ ମାରି ଜଣେ ଆଗେ ଆଗେ ଅମଡ଼ା ମାଡ଼େ, ଅନ୍ୟମାନେ ତା ପିଛା ନିଅନ୍ତି । ସବୁ ଶବ୍ଦ ବଣର ଗହଳିରେ ସତେଅବା ଘୋଡ଼େଇ ହୋଇପଡ଼େ, ମାଦଳା ହୋଇ ଫମ୍ପା ହୋଇ ହଜିଯାଏ, ଯେତେ ମଣିଷ ଆସିଲେ ସୁଦ୍ଧା ବଣରେ ଛପିଯାଆନ୍ତି, ନିଜ ନିଜ ସତ୍ତା ରଖିବାହିଁ ବଡ଼ କଥା, ଆଉ କିଛି ବଳ ଖଟେ ନାହିଁ ।

ଉତ୍ସାହ ମାନ୍ଦା ପଡ଼ି ଆସୁଥାଏ, ତଥାପି ସେମାନେ ତାକୁ ତେଜି ରଖିଥାନ୍ତି ବାଜା ବଜାଇ, କୁହାଟ ଛାଡ଼ି, ପାଟି କରି କରି, କାହାକାହା ସଂଗରେ ରନ୍ଧା ମଦ ବି ଥାଏ । ଟୋପିଏ ପିଇଦେଲେ ପୁଣି ଫୁର୍ତ୍ତି ଚହଟି ଯାଏ । କିନ୍ତୁ ବେଳ ଯହୁଁ ଗଲା ବଣ ଯହୁଁ ଆହୁରି ଘଞ୍ଚ ଓ ଅନ୍ଧାରୁଆ ହେଲା । ମଣିଷ ସତେ ଅବା ସେତିକି ଆସିବାର ମୂଳ ଉଦ୍ଦେଶ୍ୟ ପାଶୋରିବାକୁ ଲାଗିଲେ, କି ଆଉ ସ୍ମରଣ ବି କଲେ ନାହିଁ, ଚାଲିଛନ୍ତି ନା ଚାଲିଛନ୍ତି, ବଣ ଭିତରକୁ ଭିତରକୁ । ଖାଲି ସେତିକି ।

ଢ଼ୋଲ ଶବ୍ଦ କେଉଁଠି ଦୂରରେ ଶୁଭୁଛି । ଆଗରେ କିଛି ଲୋକ ଗଲେଣି, ପଛରେ ଆହୁରି ଆସୁଛନ୍ତି- ଧ୍ରୁବ ସିଂ ଚାଲିଥାଏ । ଟାଣ କରି କୌପୁନୀ ସେ ଭିଡ଼ିଚି, ତା ଉପରେ ପିନ୍ଧିଚି ସାନ ଗାମୁଛା ଖଣ୍ଡେ, ତା ମୁଣ୍ଡରେ ନାଲି ପଗଡ଼ିଟିଏ -ତାର ଗାଁ ମୁଣ୍ଡିଆଳ ପଣର ସନ୍ତକ ସେଇଟି । ବୟସ ହେଲାଣି, ଚର୍ବିଲେସି ହୋଇ ତାର ଥନ୍ତଲ ପେଟଟି ଚାଲିଲା ବେଳେ ନାଚୁଛି ସତ, ଓଜନ ଦେହ, ଜଙ୍ଘରେ ଜଙ୍ଘ ରଗଡ଼ି ହୋଇ ଛାଲ ଛାଡ଼ିବା ଉପରେ, କିନ୍ତୁ ଚର୍ବି ପୁଟତଳେ ବହୁକାଳର ପରଖା ହୋଇଥିବା କରଡ଼ା ଓ ଦମ୍ଭିଲା ମାଉଁସ ପେଣ୍ଡୁଳାମାନ ତା ଦେହଯାକ । ଅତୀତରେ କେତେ ପାରିଲାପଣର ସ୍ମାରକ ସେ । ତା ଓସାର କାନ୍ଧରେ ଟାଙ୍ଗିଆ ଝୁଲୁଛି, ଧନୁ ଝୁଲୁଛି, ତା ଅଣ୍ଟାରେ ଦଉଡ଼ିରେ ବନ୍ଧା ହୋଇ ଝୁଲୁଛି ହାତେ ଲମ୍ବର କାତୀ, ତା ହାତରେ ଗୋଟାଏ ବର୍ଚ୍ଛା । ତା ପାଖେ ପାଖେ ଚାଲିଛି ତା ବନ୍ଧୁ ଧନୁ ପଣ୍ଡିତ, ତାଠିଁ ଧନୁ, ଖଣ୍ଡା, କାନ୍ଧରେ ଟାଙ୍ଗିଆ । ଧ୍ରୁବ ସିଂ ଧନୁ ପଣ୍ଡିତର ମୁହଁକୁ ଅନାଇଲା । ସେ କଣ ଭାବିଲା ପରି ଅନ୍ୟମନସ୍କ ହୋଇ ଚାଲିଚି । କିଛି କହୁ ନାହିଁ । ଧ୍ରୁବ ସିଂ ବି କିଛି କହିଲା ନାହିଁ । କିନ୍ତୁ ଚାରିଆଡ଼କୁ ଆଖିପକାଇ ତାକୁ ଆବାକାବା ଲାଗିଲା, ''ସତେ ତ, କୁଆଡ଼େ ସେ ଚାଲିଚି ?''

ଧ୍ରୁବ ସିଂ ଭାବୁଥାଏ -''ଥଳ ଆଉ ବେଳ, ଏ ଦିଟା ଅସରନ୍ତି ପରା ! ମାଟି ବି ଥଳ, ଆକାଶ ବି ଥଳ ପାଣି ବି କାହିଁ କୋଉଠି ସରୁଛି ? ଯେତେବାଟ ଯାଅ- ଆହୁରି ଅଛି । ବେଳ ବି ସେଇଆ, ଏତେଦିନ ଏତେ ରାତି ଯାଇ ଆହୁରି ଅଛି । କିଏ କେତେବେଳେ ଆସୁଛି କି ଯାଉଛି, କଣ କେତେବେଳେ ବାଜୁଛି, ସେତିକି ନୁହେଁ । ସେତିକିରେ ସରିବ ନାହିଁ । କି ସେ କଥାକୁ କେହି ମନେ ରଖିବେ ନାହିଁ । ଏଇ ବାଟେ ବାଟେ କେତେବେଳେ କେଉଁ ଜନ୍ତୁ ଚାଲିଯାଇଥିଲା, କି କେଉଁ ଲଟା ଫୁଲ ଫୁଟିଥିଲା, କିଏ ଆଜି ତା କହିବ ? ଯେତେ ଆଶାକରି ଯେତେ ତରତର ହୋଇ ପାଣି ଧାରଟାଏ ଧାଇଁଯାଉ, ଶେଷରେ ତା ପରା ବି ରଖିବ ନାହିଁ । କୁଆଡ଼େ ସେ ହଜିଯିବ ସେମିତି ସବୁ । କେମିତି ଏ ମଣିଷ ଜୀବନ !''

ଧ୍ରୁବ ସିଂକୁ କ୍ଲାନ୍ତ ଲାଗୁଥାଏ । ମନ ହେଉଥାଏ, ବସି ପଡନ୍ତି ଠାଏ । ବଣ ଅରଣ୍ୟର ଗହଳି

ଯୋଗୁଁ ଖରା ଜଣା ପଡୁନଥାଏ । ଧନୁ ପଣ୍ଡିତ ସେମିତି ତୁନିତାନି ଚାଲିଛି । ଧ୍ରୁବ ସିଂ ତା ମୁହଁକୁ କଟମଟ କରି ଚାହିଁଲା, ଆଉ ଭାବିଲା, ''ଏପରି କଣ ସମ୍ଭବ ନୁହେଁ ଯେ ହଠାତ୍ ଏଠି ଠାକୁରାଣୀ ୟା ଉପରେ ଉଭାହେବେ ଆଉ ୟା ତୁଣ୍ଡରେ ପୁଣି କଣ ନୂଆ ଉପଦେଶ କି ସମ୍ବାଦ ଶୁଣାଇ ଦେବେ ?''

ଠାକୁରାଣୀ କଥା ମନେ ପଡୁ ପଡୁ ଧ୍ରୁବ ସିଂ ମନେ ପକାଇଲା ବାଘଖିଆ କଥା । ଠାକୁରାଣୀ ଧନୁ ପଣ୍ଡିତ ଉପରେ ଅବତରି ଅଭୟ ବାଣୀ ଶୁଣାଇ ଦେଇ ସାରିଛନ୍ତି, ସେ ନିଜେ ଶୁଣିଛି, ସେତେବେଳକୁ ଆଉ ତାର ଭୟ ନାହିଁ । ସେ ଧରି ନେଇଛି, ଏଥର ବାଘ ମରିବହିଁ । ଯେଉଁ ହତଭାଗା ହତଭାଗିନୀମାନେ ବାଘ ମୁହଁରେ ଯାଇ ସାରିଛନ୍ତି ସେ ତାଙ୍କରି କଥା ଭାବୁଥାଏ । ''ସେମାନେ ମରିବା ଆଗରୁ ହେଲେ ଠାକୁରାଣୀ ଦୟା କରିଥାନ୍ତେ ।'' ସେ ଭାବିଲା ଓ ଦୀର୍ଘଶ୍ୱାସ ପକାଇଲା । ତାକୁ ଲାଗୁଥାଏ ସେମାନେ ସତେକି ଗୋଟି ଗୋଟି ହୋଇ ତା ଆଗରେ ଆସି ସିଧାହୋଇ ଗୁହାରି କରୁଛନ୍ତି- ''ମୁଁ ଆଦୌ ମରିବାକୁ ଚାହିଁ ନଥିଲି ମୁଣ୍ଡିଆଳେ, ଓହୋ ! ଆହୁରି କେତେ ବର୍ଷ ବଞ୍ଚିଥାନ୍ତି । କି ଅନ୍ୟାୟ ! କି ଅତ୍ୟାଚାର ! କି ପାପ ! ବିନା ଦୋଷରେ ବି ! କେବେ କିଛି ଦୋଷ କଲିବୋଲି କେହି ହେଲେ ମତେ ଜଣାଇଥାଆନ୍ତା । ବିଚାରଣା କରାଇଥାନ୍ତା ! କିଛି ନାହିଁ । ହଠାତ୍ ଶୂନ୍ୟେ ଶୂନ୍ୟେ ତଣ୍ଟିରୁ ଧରି- । ଆମ ପିଠିରେ ପଡ଼ିଲା କିଏ ? ଠାକୁର ଠାକୁରାଣୀତ ବୁଝିଲେ ନାହିଁ, କେବେ ପୂଜା ଭୋଗ ଊଣା କଲୁଁ କି ? ଗାଁର ତୁ ମୁଣ୍ଡିଆଳ; ତୋ ଉପରେ ଆମର କେତେ ନିର୍ଭର, ତୁ ବା କଣ କଲୁ !''

କିଏ କୁଆଡ଼େ ଗଲେ ? ଧ୍ରୁବକୁ ଲାଗିଲା ଏକା ଅଛନ୍ତି ସେ ଓ ଧନୁ ପଣ୍ଡିତ । ଧନୁ ବି ଚାଲିଛି ନା ଚାଲିଛି, ତୁଣ୍ଡରେ ପଦେ କଥା ନାହିଁ । ଅଗ୍ନାଅଗ୍ନି ବନସ୍ତ ଭିତରେ ଅମଡ଼ା ମାଡ଼ି ଚାଲିଛନ୍ତି ମଣିଷ ଯୋଡ଼ିଏ । ଆଉ କାହା ସୋର ଶବ୍ଦ ବି ନାହିଁ । ତାର ମନ ହେଉଥାଏ ସେ ଆଉ ଚାଲନ୍ତା ନାହିଁ, ଅଟକି ରହନ୍ତା । ନହେଲେ ଫେରି ଯାଆନ୍ତା- ଯଦିଚ ଫେରିବା ବି ହଠାତ୍ ସମ୍ଭବ ହେବ ନାହିଁ, ବହୁତ ଆଡୁ ଖୋଜିବାକୁ ପଡ଼ିବ ବାଟ ପାଇବାକୁ । କିନ୍ତୁ ନିଶାରେ ମାତି ଚାଲିଲାପରି ଧପାଇଛି ଧନୁ ପଣ୍ଡିତ୍, ବେଳେବେଳେ ଲାଗୁଛି ସେ ଠାକୁରାଣୀଙ୍କ ପ୍ରତୀକ, ଛାତି ଚାଉଁ କରୁଛି, ଲାଗୁଛି -ତା ପଛେ ପଛେ ଯିବାକୁ ସେ ବାଧ୍ୟ । ପଡ଼ିଲା ଆହୁରି ଘଞ୍ଚ ଅରମା, ଶାଳ ଗଛ ମାନଙ୍କ ଉପରେ କଣ ଲଟା ଗୁଡ଼ାଏ ଗଦା ହୋଇଛି, ସାନସାନ ହୋଇ ଧଳା-ମାଟିଆ ବର୍ଣ୍ଣର ଫୁଲ ଫୁଟିଛି । ପେଣ୍ଠା ପେଣ୍ଠା ବାଘ ଦେହର ଗନ୍ଧପରି ଫୁର୍କୁଟିଆ ତା ଗନ୍ଧ । ହଠାତ୍ ତା ଭିତରୁ ଝକ୍‌କରି କଣ ଗୋଟାଏ ହଳଦିଆ ଆଲୁଅ ତେଇଁଲା ପରି ଧନୁ ପଣ୍ଡିତ ଦେଖିଲା । ବୁଲିପଡ଼ି ପଛକୁ ଚାହିଁଲା, ଧ୍ରୁବ ସିଂ ସେଠି ନାହିଁ । ଆରପାଖ ଲଟା ଅରମା ଭାରି ଜୋରରେ ହସି ଉଠିଲା, ତା ଭିତରୁ ଗୋଟାଏ ବିକୃତ ଶବ୍ଦ ଶୁଭିଲା, ତାପରେ ସବୁ ବନ୍ଦ ହେଲା । ଧନୁ ପଣ୍ଡିତ ଗଛ ଉପରେ ଚଢ଼ି ପାଟିକଲା, ''ଧାଇଁପଡ଼, ଧାଇଁପଡ଼, ଧ୍ରୁବ ମୁଣ୍ଡିଆଳକୁ ବାଘ ନେଇଗଲା ।''

ବାରମ୍ବାର ଡାକହାକ ପରେ ବାଜା ଶୁଭିଲା, ପାଟି ଶୁଭିଲା, ଲୋକେ ଧାଇଁ ଆସିବା ଜଣା ପଡ଼ିଲା । ଧନୁ ପଣ୍ଡିତ ଚାରିଆଡ଼କୁ ସତର୍କ ହୋଇ ଚାହିଁଲା, ତାପରେ ଓହ୍ଲାଇ ପଡ଼ିଲା, ସେ ମନେ ମନେ ଯୁକ୍ତି କରିନେଲା- ବାଘ ଆଉ ଯେଉଁଠି ଥାଉ ଅନ୍ତତଃ ଏଠି ନଥିବ । ଧ୍ରୁବ ମୁଣ୍ଡିଆଳକୁ ଘୋଷାରି ଟେକି ବଣ ଭିତରେ କୁଆଡ଼େ ଚାଲିଗଲାଣି ।

ଧନୁ ପଣ୍ଡିତକୁ ଦେଖି ଆସିବା ଲୋକେ କାଠ ପରି ଠିଆ ହେଲେ । ଆଉ ଯେ ଯେଉଁଠି

ଥାନ୍ତି, ସେମାନେ ପ୍ରାୟ କୋଡ଼ିଏ ପଚିଶି ଜଣ ଲୋକ, ସଙ୍ଗରେ ବାଇଦ ଅଛି, ଧନୁଶର, ଖଣ୍ଡା, ବର୍ଛା ଟାଙ୍ଗିଆ ସମସ୍ତଙ୍କ ପାଖେ ଅଛି । ହଠାତ୍ କିଏ ନିଘାକଲା ଲଟା ଗୁଲମ୍ ଉପରେ ରକ୍ତ ପଡ଼ିଚି, ଟୋପାଟୋପା ନୁହେଁ, ବଡ଼ ଅରାଏଲେଖାଁ, ପୁଣି ଧାର ପଡ଼ିଲା ପରି । ଗୋଟିଏ ବୁଦା ଉପରେ ଧ୍ରୁବ ସିଂ ମୁଣ୍ଡିଆଳଙ୍କର ନାଲି ପଗଡ଼ିଟି ଥୁଆ ହୋଇଛି ।

ଧ୍ରୁବ ସିଂ ଏ ସଂସାର ଛାଡ଼ି ଚାଲିଯିବାର ଚାକ୍ଷୁସ ପ୍ରମାଣ ଦେଖିଲା ମାତ୍ରେ ସେମାନଙ୍କ ଛାତିରେ ଛାନିଆଁ ପଶିଗଲା, କୋକୁଆ ଭୟ ବ୍ୟାପିଲା- ସେମାନେ ଧ୍ରୁବ ସିଂର ମଢ଼ ଖୋଜି ଯା'ନ୍ତେ, କଣ, ବାଘ ମାରନ୍ତେ କଣ, ଓଲଟି ନିଜ ନିଜ ମୁହଁରୁ କଳା ପାଣି ବୋହି ପଡ଼ିଲା ।

ଭୟ । ଅତି ଆଦିମ ଅତି ସୁଲଭ ସହଜ ସ୍ୱାଭାବିକ ବାସ୍ତବତା । କାହାଠିଁ ସେ ଅବତରିଲେ ନିଜେ ସେ ହୁଏ ସ୍ରଷ୍ଟା, କେତେ ସ୍ୱପ୍ନ କେତେ କଳ୍ପନା କେତେ ବିଚାର ପୁଣି କେତେ ଆଚାର ସୃଷ୍ଟି କରି ପଳାଏ । ଏକାଠି ଏତେ ଲୋକ, ଜଣକ ଆଗରେ ପିଠିରେ ଦି କରରେ ଆଉ ଜଣେ ହେଲେ ଠିଆ, କିନ୍ତୁ ଭୟର କିମିଆଁ ନଦି ପ୍ରତ୍ୟେକ ସତେ ଅବା ଅଲଗା ଅଲଗା, ନିଜଠିଁ ଭୟର ତୋରିକୁ ଅନୁଭବ କଲା ପରେ ଆଉ କୌଣସି ବସ୍ତୁକୁ, ପ୍ରାଣୀକୁ, ଭାବକୁ ଅନୁଭବ କରିବାକୁ ଦାୟିତ୍ୱ ବି ନାହିଁ । ଝୁଲୁଥାଉ ଧନୁ, ଟାଙ୍ଗିଆ, କାତୀ, ବୁହା ହୋଇଥାଉ ଖଣ୍ଡା, ବର୍ଛା, ଠେଙ୍ଗା, ଏଣିକି ସେଗୁଡ଼ାକ ନିରର୍ଥକ, ଅଦରକାରି ବୋଝ -ଖାଲି ଏତିକି ଯେ ବୋହିବାକୁ ପଡ଼ିବ ଭାଗ୍ୟ ।

ଧ୍ରୁବ ମୁଣ୍ଡିଆଳ ପାଇଁ ସେମାନେ ଶୋକ କରିବାକୁ ବି ଭୁଲି ଯାଇଥିଲେ ।

ବଣରୁ ପଦାକୁ ବାହାରି ଯିବାକୁ ଲୋଡ଼ୁଛନ୍ତି, କିନ୍ତୁ ଆସିଲାବେଳେ ସେକଥା ବିଚାରି ନଥିଲେ । ସବୁଠି ଗଛ, ଯାହା ବା ପୂର୍ବେ ଯେଉଁଠି ଚିହ୍ନା-ଚିହ୍ନ ଥିଲା ବରଷା ଚତୁର୍ମାସ୍ୟା ବିତିଗଲା ପରେ ସବୁ ନିଶ୍ଚିହ୍ନ ହୋଇଛି, ଅରମା ମାଡ଼ିଛି । ସେମାନେ ଅନ୍ଧ ପରି ମାଡ଼ି ଯାଉ ଯାଉ ହଠାତ୍ ଠାଏ ଉଲଟ ଫୁର୍କୁଟିଆ ବାଘ ଗନ୍ଧ ହେଲା, ତାପରେ ବଣ ଉହାଡ଼କୁ ବାଘ ରଡ଼ି ଶୁଭିଲା, ତୁହାଇ ତୁହାଇ, ଦୂରରେ ନୁହେଁ, ପାଖରେ କେଉଁଠି, ଆଉ ଏକାଠି ହୋଇଥିବା ଦଳଟି ଚିନଛତର ହୋଇ ପ୍ରାଣ ବିକଳରେ କିଏ କୁଆଡ଼େ ପଳାଇଲେ ।

ସେଦିନର ଦୁର୍ଭାଗ୍ୟ ସେତିକିରେ କଟିଗଲା ନାହିଁ । ଧନୁ ପଣ୍ଡିତ ଧାଉଁ ଧାଉଁ ଝୁଣ୍ଟି ଖଣ୍ଡିଆ ହେଲା, ଏକୁଟିଆ ଧୀରେ ଧୀରେ ଛୋଟେଇ ଛୋଟେଇ ଚାଲିଥାଏ, ଏତିକିବେଳେ କୁଆଡୁ ତୀର ବେଗରେ ଧାଇଁ ଆସିଲା ଅଣ୍ଡିରା ବାଡ଼ହାଟା, ହାବୋଡ଼ିଗଲା, ଧନୁପଣ୍ଡିତର ଡାହାଣ ଜଙ୍ଘ ଚିରି ହୋଇଗଲା, ହାଡ଼ ଭାଙ୍ଗିଗଲା, ସେ ଓଲଟି ପଡ଼ି ଛଟପଟ ହୋଇ ଚିତ୍କାର କଲା । ତଥାପି ତାର କପାଳ ଥିଲା, ବାଡ଼ହା ତାକୁ କାମୁଡ଼ିଲା ନାହିଁ, ଆଉ ଭୁଷିଲା ନାହିଁ, ଦଳିଲା ନାହିଁ, ତା ବାଟରେ ସେ ଚାଲିଗଲା, କୁଆଡ଼େ ଲୁଚିଗଲା ।

ବ୍ରାହ୍ମଣୀ ଦେଈ ଠାକୁରାଣୀଙ୍କ ଆସ୍ଥାନ ପାଖକୁ ଲୋକେ ଧନୁ ପଣ୍ଡିତକୁ ବୋହି ଆଣିଲେ, ଲହୁ ଲୁହାଣ ଦେହ, ଅବଶ ହୋଇ ବେକ ଭାଙ୍ଗି ପଡ଼ିଥାଏ । ''ମା, ତୋର ଇଚ୍ଛା ।'' ''ମା, ତୋର ଦୟା ।'' ସେମାନେ କହିଲେ, ଖଟିଆରେ ପକାଇ ତାକୁ ଉଠାଇ ଘେନି ଗାଁକୁ ଚାଲିଲେ, ଚେର ମୂଳିକା ଦେଇ ଆଦିବାସୀଙ୍କ ଗାଁ ବଇଦ ଲାଗିବେ, ତେଣିକି ତା ଭାଗ୍ୟ ।

''କିଏ ଜାଣି ପାରିବ ଠାକୁର ଦେବତାଙ୍କ ମନ, ଠାକୁର ଦେବତାଙ୍କ କୋପର କାରଣ ?

ଗାଁଲୋକେ କୁହାକୋହି ହେଉଥାନ୍ତି, ''ନିଶ୍ଚୟ ଗାଁ ମୁଣ୍ଡିଆଳ ଓ ଧନୁ ପଣ୍ଡିତ କିଛି ଅନ୍ୟାୟ କଲେ ।''

ଏତେ ଲୋକ, ଲେଡେଂ ଉପତ୍ୟକାର ସବୁ ଲୋକ- ତୋଫାନ ଉଠିଲା ପରି ମାତି ଉଠିଥିଲେ ବାଘ ମରିବେ ଦେଶକୁ ବସ୍ତିକୁ ବଣକୁ ନିଶଙ୍କ କରିବେ ବୋଲି, ଏତେ ଟାଣ କରି କଥା କହିଥିଲେ, ସବୁ ପଲ୍ଲୀରେ ପୁଣି ବଡ଼ ଗାଁରେ ତୁହାଇ ତୁହାଇ ସଭା କରିଥିଲେ, ସେକଥା ଆଉ ସେମାନେ ମନେ ପକାଇବାକୁ ସୁଦ୍ଧା ଲୋଡ଼ୁ ନାହାନ୍ତି । ତାଙ୍କୁ ଯେ ମତେଇଥିଲେ, ସାହସ, ଅଭୟ ଦେଇଥିଲେ ଧନୁ ପଣ୍ଡିତ୍, ଧୂର୍ବ ମୁଣ୍ଡିଆଳ, ଜଣେ ମୃତ, ଜଣେ ସୁକୁ ସୁକୁ, ତଥାପି ଲେଡେଂ ଗାଁର ଲୋକଙ୍କ ବିଚାରରେ ସେମାନେ ଦୋଷୀ, ''ନିଶ୍ଚୟ ସେମାନେ ଅନୀତି କରିଥିଲେ, ନହେଲେ କଣ ଦେବତା କୋପ କରିଥାନ୍ତା ?''

''ସେମାନେ କେଡ଼େ ପାଗଳ, କେଡ଼େ ହୁଣ୍ଡା ଦେଖ, ଗାଁଯାକ ଲୋକଙ୍କୁ ମତେଇ ମଣିଷ ଖିଆ ବାଘ ମୁହଁକୁ ଅଗନାଗ୍ନି ବନସ୍ତ ଭିତରକୁ ନେଇଗଲେ, ବାଘ ଶିକାର କଣ ସେମିତି ହୁଏ ? ବନ୍ଧୁକ ଥିଲା ତାଙ୍କ ହାତରେ ? ଦାନ୍ତ, ନଖ ସିନା ବାଘଠିଁ ଆପେ, ଆପେ, ବପୁ ଆଉ କୌଶଳ ଆମଠିଁ କଣ ? ବାଘ ଗୋଡ଼େଇ ଆସିଲେ ପଳେଇବାକୁ ସେମାନେ ଉପାୟ ପାଞ୍ଚିଥିଲେ ? ଆମ କପାଳ ଜୋରରେ ଆମେ ସିନା ବର୍ତ୍ତିଲୁଁ, ବାଘ ମୁହଁରେ ପଡ଼ିଥିଲେ ସେ ରକ୍ଷା କରିଥାନ୍ତେ ?''

ଜଣେ ନୁହେଁ ଶହେ ଜଣ, ହଜାର ଜଣ ସମସ୍ତେ, ଏକାଠି ହେଲେ ତୁନି ତୁନି ହୋଇ ସେହି ଆଲୋଚନା, ସେମାନେ ବଞ୍ଚିଛନ୍ତି, ଏତିକି ସତେ ଯେପରିକି ତାଙ୍କ କୃତିତ୍ୱ ଓ ଗୌରବ । ଧେଡ଼ୁ ପଡ଼ୁ ଗୋରୁ ଗାଈଙ୍କର, ହାଡ଼ ଗଣି ହେଉ, ସେମାନେ ଢ଼ିଲିଲେ ନାହିଁ । ନିଜେ ରହନ୍ତୁ ପଛେ ଉପାସ, ଯେଡ଼େ ଅସୁବିଧା ହେଉ, ଗାଁ ଛାଡ଼ି ସେମାନେ ଆଉ କୁଆଡ଼େ ଗଲେ ନାହିଁ । ବାଘୁଣୀ ବି ବିଜୟ ଉଲ୍ଲାସରେ ତୁହାଇ ତୁହାଇ ରଡ଼ିଲା, ସେ ଯାହା ଆଗେ ବଣ ଭିତରେ ରହିଥିଲା ଏଣିକି ଗାଁମାନଙ୍କ ପାଲି ପାଲି ବୁଲିଲା । ଯେତେବେଳେ ପିଣ୍ଡାରେ ଥାଇ ଦିନବେଳେ ଲୋକେ ଦେଖନ୍ତି, ଗାଁ ବସ୍ତି ସେ କରେ ଖୋଲା କ୍ଷେତ ଉପରେ ବାଘୁଣୀ ତା ପୁଅ ଦୁହିଁଙ୍କୁ ଘେନି ବୁଲୁଛି । ବାଘୁଣୀର ରଡ଼ିରେ ଗଛରୁ ଉଇ ଝରି ପଡ଼େ, ଶୁଖିଲା ପତ୍ର ଝରି ପଡ଼େ । ପ୍ରକୃତରେ ବାଘୁଣୀ ରଡ଼ି ଛାଡ଼ୁଥାଏ ଖାଦ୍ୟ ମିଳୁ ନାହିଁ ବୋଲି, ଗୋରୁ ଗାଈ ଗୁହାଳରେ ବନ୍ଧା ହେଲେ, ମଣିଷ ରହିଲେ ଗାଁ ଭିତରେ, ବଣର ଜନ୍ତୁ କିଏ କେଉଁଠି ଲୁଚିଲେ, ସେମାନେ ବି ଧାଇଁ ପଳାଇବା ଜନ୍ତୁ, କେହି ମଧ ଗୋଜା ଗୋଜା ଶିଙ୍ଘ ଥିବା ଜନ୍ତୁ ବାଗରେ ଧରିବାକୁ ପଡ଼େ, ମନ ଇଛା ନୁହେଁ, ବାଘୁଣୀର ବୋଧହୁଏ ଅଭିଯୋଗ- ''ସାନ ସାନ ପିଲା ଦିଟାଙ୍କୁ ଘେନି କୁଆଡ଼େ ମୁଁ ଖାଦ୍ୟ ପାଇଁ ଧାଇଁଥିବି ?'' ତାର ବି ଦୃଢ଼ ଦାବି- ''ମୁଁ ବାଘ, ମତେ ଖାଦ୍ୟ ମିଳୁ ।''

ଲେଡେଂ ଲୋକଙ୍କ ଶାନ୍ତ ସୁବୋଧ କୁହାର ବୋଲର କବାଟକିଳା ନିରାପତ୍ତାକୁ ଦୋହଲାଇ ହଠାତ୍ ଖବର ଆସିଲା, ରାତିରେ ଶୋଇଥିଲାବେଳେ ଘର ଭିତରୁ ବାଘ ଆସି ମଣିଷ ଧରି ନେଇ ଚାଲି ଯାଉଛି । ସେମାନଙ୍କର ଇଟା କାନ୍ଥ ନୁହେଁ କି ପଥର କାନ୍ଥ ନୁହେଁ, ଝାଟିମାଟି କାନ୍ଥ, ବାଘ ଆସେ, କାମୁଡ଼ି କାମୁଡ଼ି ଆମ୍ପୁଡ଼ି ଆମ୍ପୁଡ଼ି ସିନ୍ଧି ବାଟେ, ବଡ଼ କଣା କରେ, ଭିତରେ ପଶି କାମୁଡ଼ି ନେଇ ପଳାଏ । ଆଶ୍ଚର୍ଯ୍ୟ ବା ସାହସ କି ଦୁଃସାହସ ତା କୃଟବୁଦ୍ଧି । ଗୁହାଳ ଭାଙ୍ଗିବାକୁ ସେ ମନ କରେ ନାହିଁ, ତା କାରଣ ବୋଧହୁଏ ଏତିକି ଯେ ଗୁହାଳ କାନ୍ଥରେ ମୋଟ ମୋଟ ଶାଳ ଖୁଣ୍ଟ ପୋତା

ହୋଇଥାଏ, ଅଥବା ମଣିଷ ମାଂସଇଁ ତାର ପସନ୍ଦ ।

ଆପଣା ଘରବି ନିରାପଦ ନୁହେଁ ! ତେବେ ଉପାୟ ?

ଲେଡେଂର ଲୋକେ ରାଗିଲେ, ଅଭିମାନ କଲେ, ଶୋକ କଲେ, ନିରାଶ ହେଲେ, କିନ୍ତୁ ସହିବା ଛଡ଼ା ଅନ୍ୟ କିଛି ଉପାୟ ତାଙ୍କୁ ଦିଶୁନଥାଏ । ଅଥଚ ସାଧାରଣ ଅଣଆଦିବାସୀକୁ ସେ ଅବସ୍ଥା ଯେତିକି ବାଧିଥାନ୍ତା ସେମାନଙ୍କୁ ତାଠୁଁ ବେଶୀ ବାଧୁଥାଏ- ସାଧାରଣ ଅଣଆଦିବାସୀ ଏ ଘଟନାକୁ ଦେଖିଥାନ୍ତା ଆପଣା ନିରାପତ୍ତା ପ୍ରତି ବିପଦକୁ । ଲେଡେଂର ଆଦିମ ଅଣଆଦିବାସୀ ଲୋକ ତା ତ ଅନୁଭବ କଲେ, ପୁଣି ଅନୁଭବ କଲେ ଅପମାନ । ବାଘ ହେଉ କି କୁକୁର ହେଉ, ଜନ୍ତୁଟିଏ ସେମାନଙ୍କ ଆଖିରେ ଖାଲି ଜନ୍ତୁ ନୁହେଁ, ସେମାନେ ତାକୁ ମଣିଷପରି ଭାବନ୍ତି, ତା କାମକୁ ନ୍ୟାୟ ଅନ୍ୟାୟ କଷ୍ଟରେ ତଉଲନ୍ତି । ତେଣୁ ଯେ ଯାହା ହେଲା, ତାଙ୍କ ଆଖିରେ ଯେ ବୁଦ୍ଧିହୀନ ବିବେକ ଚେତନାହୀନ ଜନ୍ତୁର ପାଶବିକତା ନୁହେଁ, ଯେ କୁଚକ୍ରୀ ନୃଶଂସ ଦୃଷ୍ଟ ପାପୀ କରୁଥିବା ଅତ୍ୟାଚାର, ତାଠିଁ ନଖ ଅଛି ଦାନ୍ତ ଅଛି ବଳ ଅଛି ଶକ୍ତି ଅଛି, ବଳର ତେଜରେ ସଜାଇ ହୋଇ ସେ ଠିଆ ହୋଇଛି ଦେଖି ପକାଇଲେ ମଣିଷ ଛାନିଆଁ, ତା ଗର୍ଜନ ଶୁଣିଲେ କେହି କେହି ବେହୋସ, ତେଣୁ ତା ଅନ୍ୟାୟ ଅଦୋଉତି ସହିବାକୁ ହେଉଛି, ହେଉଥିବ ।

ମେଳି ହୋଇ ପଦାକୁ ବାହାରିବାକୁ ବି ତାଙ୍କର ସାହସ ହେଉ ନଥିଲା, ତା ବିଷୟରେ ବଡ଼ ପାଟିରେ କିଛି କହିବାକୁ ବି ଡର ମାଡୁଥାଏ, କାଳେ ସେ ଶୁଣି ପକାଇବ ! ବାଘଟା ପଶୁଟାଏ, -ସେଇଟା କଣ ମଣିଷଙ୍କ ବୋଲି ବୁଝି ପାରିବ ? କିନ୍ତୁ ସେମାନେ ସେପରି ଭାବୁନଥିଲେ । ସେ ତାକୁ ଭାବୁଥିଲେ ଗୋଟାଏ ମଣିଷ ପିଶାଚ ଭଳି, କି ମଣିଷଠୁଁ ଆହୁରି ସିଆଣିଆ । ତାଙ୍କର ତ ବିଶ୍ୱାସ ତାଠିଁ ଦେବତାପଣ ବି ଅଛି- ଦେବତାଙ୍କର ଦୟା କରିବାଗୁଣ ନୁହେଁ, ଅସାଧ ସାଧନ କରିବା ଗୁଣ, ତେଣୁ କାହାକୁ ଦେବତା ପର୍ଯ୍ୟାୟରେ ବି ରଖା ହୁଏ, ମଝିରେ ତା ମୂର୍ତ୍ତି ଗଢ଼ି ସେଠି ପୂଜା ଦିଆଯାଏ ।

କିନ୍ତୁ କାନକୁ କାନ ଫୁସ୍ ଫାସ୍ ହୋଇ ପଡ଼ିଥିଲା ତା ପୈଶାଚିକ ଅନ୍ୟାୟ ଅପକୀର୍ତ୍ତିର ନିନ୍ଦା ଆଲୋଚନା । ଏଁ ! ହତ୍ୟା ତ' ହତ୍ୟା, ପର ଘରେ ଅନ୍ୟାୟ-ପ୍ରବେଶ, ବଳାତ୍କାର ପ୍ରବେଶ, ସେଠୁ ନିର୍ଦ୍ଦୋଷ ମଣିଷକୁ ହଠାତ୍ ଉଠେଇ ନେଇ କୁ ! ଛି ଛି ଛି ଛି ! ବାଘ୍ ଦେବତା ! କି ଅନ୍ୟାୟ ।

''ତୁମେ ଆମେ ଭାଇ ଭାଇ'', ସେମାନେ ଯୁକ୍ତି କରୁଥିଲେ, ''ଚେହେରା ସିନା ଭିନେ, -କିନ୍ତୁ ତୁମେ ବଡ଼, ତୁମଠିଁ କେତେ ବପୁ, କେତେ ଗୁଣ, ସେଥିପାଇଁ ଆମେ ତୁମକୁ ପୂଜା କରୁଁ । ତୁମେ ସିନା ବଣ ଜଗିବ, ଆମ ଶତ୍ରୁଙ୍କୁ ପୂରେଇ ଦେବ ନାହିଁ, ଆମକୁ ପାଳିବ, ତୁମ ଖାଦ୍ୟ ପାଇଁ ବଣଯାକର କେତେ ଜନ୍ତୁ । ଓଲଟି ତୁମେ ଏଡ଼େ ଦୁର୍ନିଆ ହେଲ !

ମଣିଷ ଯେଡ଼େ କାକୁର୍ତ୍ତି (ଗରିବ) ହେଉ, ବାଟ ଚାଲିବାକୁ, କାମ କରିବାକୁ- ସମସ୍ତିଙ୍କର ସବୁକାଳେ ଅଧିକାର, ପଦାରେ କାମ ନକଲେ ପେଟ୍‌କୁ ଖାଦି ନ ଆସେ । ତମେ ଆମଠୁ ସେ ଅଧିକାର କାଢ଼ି ନେଲ, ତୁମ ଡରରେ ବାଟ ପଡ଼ିଗଲା ।

ଆମେ କଥା କହିବାକୁ ଡର ଲାଗୁଛି, ତୁମେ ଧାଇଁ ଆସି ଶଂଖି (ତଣ୍ଟି)ରୁ ଧରିଦେବ ପରା । ଦାଣ୍ଡକୁ ବାହାରିଲେ ବି ତୁମ ହାବୁଡ଼େ ପଡ଼ିବା ଡ଼ର, ତୁମ ଦାଉରେ ସେଠି ବି ରକ୍ଷା ନାହିଁ । ଆଉ ଗୋଟିଏ ଜାଗା ଥିଲା- ଘର କଣ ।

ଏ ସଂସାରରେ ଯେତେ ପ୍ରାଣୀ, ସମସ୍ତେ ଆପଣାର ବୋଲି କେଉଁଠି ବାସ ଖଣ୍ଡେ ବାନ୍ଧନ୍ତି, କିଏ ଭୂଇଁରେ ଗାତଟିଏ କରେ, କିଏ ଗଛ ଡାଳରେ ବସାଟିଏ ବାନ୍ଧେ, କିଏ କୁଡ଼ିଆ ଖଣ୍ଡିଏ ତୋଳେ । ଘରର ବାଟ ଚୁଣ୍ଟିଲେ ଯେଝା ଘରେ ଯେ, ପଦାଲୋକ ଆଖି ପକାଇବାକୁ ବି କେହି ନାହିଁ । ନିଜ ଘର ଭିତରେ ମଣିଷ ନିଜେ ରଜା, ସେଠି ତା ଭାରିଜା, ତା ପିଲା, ତା କୁଟୁମ୍ବ, ମନ ଇଚ୍ଛା ଯାହା କରୁ, କେହି ଡରାଇବାକୁ ନାହିଁ । ତା ଘରେ ତା ଘରଦେବତା ଜଗିଥିବ, ତା ପିତୃପୁରୁଷ ଜଗିଥିବେ, ସେ ଶାନ୍ତିରେ ଶୋଇବ । ତୁମେ କୁଆଡୁ ନାଇଁ କୁଆଡୁ ଦୁନିଆଁ(ଅନୀତିପରାୟଣ) ଦାଁତର୍ (କପଟୀ, ଠକ) ପଟ୍‌କାର୍ (ଅସତ୍) ବାଘ୍ ଦେବତା ଆଇଲ ଯେ ଆପଣା ଘରେ ନିଡରୁଆ ହୋଇ ଶାନ୍ତିରେ ଶୋଇବା ଅଧିକାର ବି ତୁମେ ଆମର ଛଡେଇ ନେଲ । ଘରର ଆଉ ଗୁମର୍ ନାହିଁ, ଅଭୟ ନାହିଁ, ବିଶ୍ୱାସ ନାହିଁ, ଆଶ୍ରା ନାହିଁ । ରାତି ରାତି କାହା ଘର ଭିତରୁ କେତେବେଳେ କାହାକୁ ଓଟାରି ନେବ ଯେ ଆଗରୁ ଜାଣି ବି ହେବ ନାହିଁ ! ଛି ଛି ଛି କି ଅଧର୍ମ ।''

ନିଜ ଭିତରେ ବାଘକୁ ଯେତେ ଗାଳି ଦିଅନ୍ତୁ, ଛାନିଆଁ ତୁଟେ ନାହିଁ । ଲୋକେ ରାତି ରାତି ଘର ଭିତରେ କାଠ ଜାଳି ନିଆଁ ପୁଉଁଅନ୍ତି, ଉଜାଗର ହୋଇ ବସିଥାନ୍ତି, ଝାଡ଼ା ପରିସ୍ରା ମାଡ଼ିଲେ ବି ପଦାକୁ ବାହାରନ୍ତି ନାହିଁ, ସବୁ ସେଇ ଘର ଭିତରେ, ପଛେ ଦିନ ହେଲେ ସଫାସଫି ହେଉଥାଉ । ଟିକିଏ ଯେଉଁଠି ଖୁଡ଼୍‌କିନା ଶବ୍ଦ ହେଲେ ଘର ଭିତରୁ ଗୋଠକଯାକ ମଣିଷ ବଡ଼ ପାଟିରେ ହାଉଳି ଛାଡ଼ନ୍ତି, ଆଶା ସେ ଶବ୍ଦ ଶୁଣି ବାଘ ପଳାଇବ- ତାଙ୍କ ଆର୍ତ୍ତ ଚିତ୍କାର ଶୁଣି ପଡ଼ିଶାଘର ଲୋକେ ବି ସୋର ଶବ୍ଦ କରନ୍ତି ନାହିଁ ।

ଏତେ ସତର୍କତା କରି ସୁଦ୍ଧା ଘଟଣା ଅଟକେ ନାହିଁ, କେତେବେଳେ ଲେଡେଂ ଗାଁର କେଉଁ ପଲ୍ଲୀ 'ଗୁଡ଼ା'ରେ ରାତିରେ ପୁଣି କାହାଘରୁ ବାଘୁଣୀ ମଣିଷ ନେଇଯାଏ । ସ୍ଥାନେ ସ୍ଥାନେ ଦିନବେଳେ ଦିଶେ, ଗାଁ ଦାଣ୍ଡରେ ତା ପାହୁଲ ପଡ଼ିଛି ।

ଶୀତ ଆହୁରି ବଢ଼ିଲା, ତା ସଙ୍ଗେ ସଙ୍ଗେ ବାଘ ଉପଦ୍ରବ ବି । କ୍ରମେ ଏପରି ହେଲା ଯେ ରାତି ହୋଇ ଥାଉ କି ଦିନ ହୋଇଥାଉ, ମଣିଷ ଘରେ ଶୋଇଥାନ୍ତୁ କି ଦିନଓଳି ଗାଁ ତଳ ଝରଣାରୁ ପିଇବା ପାଣି ବୋହି ଘରକୁ ଫେରୁଥାନ୍ତୁ, ମଣିଷ ଜଣେ ଥାଉ କି ଦଳେ ଥାଆନ୍ତୁ, ହଠାତ୍ କୁଆଡୁ ବାଘୁଣୀଟା ବାହାରି ପଡ଼ି ଝାମ୍ପ ମାରି ଗୋଟାକୁ ଉଠାଇ ନେଇ ଚାଲିଯିବ, ''ନେଲା ! ନେଲା !'' ରଡ଼ିରେ ଗଗନ ଫାଟୁଥାଉ, ହାରି ଗୁହାରି ନାହିଁ । ମୃତ୍ୟୁ ପରି ସେ ବାଘ ବି, ଯାହାକୁ ମନ କଲା ତାକୁ କେବେ, ତା ଆଗରେ ନିଜର ଇଚ୍ଛା ଉପରେ, ମତ ଉପରେ, ଜୀବନ ଉପରେ ଅଧିକାର କାହାରି ବୋଲି ନାହିଁ । କ୍ରମେ ଲେଡେଂ ଯାକ ଘରେ ଘରେ ସମସ୍ତିଙ୍କଠି ଏହି ଧାରଣା ସତେ ଯେପରିକି ଆଚାରରେ ଲୁଣ ଚରିଲା ଭଳି ଭେଦିଗଲା । ସେମାନେ ଭାଗ୍ୟକୁ ମୁଣ୍ଡ ନୁଆଇଁ ଦେଇ ପଦାକୁ ବାହାରିଲେ, ଧୀରେ ଧୀରେ ବୁଲ୍‌ଚାଲ୍ ହେଲେ, କନ୍ଦା ଖୋଳି ବଣକୁ ବି ଗଲେ, ଫସଲ ଦେଖିବାକୁ ଜଗିବାକୁ କ୍ଷେତକୁ ଚାଲିଲେ । ସେମାନେ ଜାଣନ୍ତି, ହଠାତ୍ କେତେବେଳେ କେଉଁ ବୁଦା ଉହାଡ଼ରୁ ବାଘୁଣୀ କୁଦା ମାରିବ କହି ହେବ ନାହିଁ, ଆସିଲାବେଳେ ଯାହା ସଙ୍ଗେ ଦେଖା ନ ହୋଇ ପାରେ, କିନ୍ତୁ ତଥାପି ଅନ୍ୟ ଉପାୟ ବି ନାହିଁ ।

ଧୂର୍ବ ସିଂକୁ ବାଘ ଖାଇଲା ପରେ ଲେଡେଂର ମୁଣ୍ଡିଆଳ ହୋଇଥାଏ ଯୁବକ ଯୋଗୀ ସିଂ,

ଧନୁ ପଣ୍ଡିତ ବାତ୍ୟାହା ଆକ୍ରମଣରେ ଅକାମୀ ହୋଇ ଘରେ ପଡ଼ି ରହିଥାଏ ତେଣୁ ଠାକୁରାଣୀ ପୂଜକ ହୋଇଥାଏ ଯୁବକ ସୁନୁ ପଣ୍ଡିତ । ନୂଆ ଗାଁ ମୁଣ୍ଡିଆଳ ଓ ନୂଆ ପୂଜକ ପୁରୁଣା ବିଧି ମାନି ଗାଁର ପୂଜାଉଝା କରାଇଲେ, ସମାଜ ଚଳାଉଥାନ୍ତି, ଯୁବକ ହେଲେ ସୁଦ୍ଧା ବିଚାରରେ ସେମାନେ ସେହି ପୁରୁଣା ଓ ବୁଢ଼ା, ଲୋକଙ୍କୁ ଚଳାଇବାକୁ ତାଙ୍କ ଆଖି ଆଗରେ ସେହି ପୁରୁଣା ବିଶ୍ୱାସର ବାଟ ଯେପରି ଯୁଗେ ଯୁଗେ ତାଙ୍କ ପୂର୍ବପୁରୁଷ ମାନେ ଦେଖିଥିଲେ ।

ବାଘଖିଆ ବିଷୟରେ ସେମାନେ ଲୋକଙ୍କୁ ବୁଝେଇଲେ, ''ସବୁ ତ ମହାପୁରୁ କରିବା କଥା, ତାର ମନ, ମଣିଷର କଣ ଚାରା ଅଛି ? ମହାପୁରୁ କରେ 'ଯୋଗ' । 'ଯୋଗ' ଆସିଲେ ମଣିଷ ମରେ, ଘରେ ଥିଲେ ବି ମରେ, ବଣରେ ଥିଲେ ବି ମରେ, କେହି ରକ୍ଷା କରି ପାରିବେ ନାହିଁ । ଆଉ ମରିବାଟା ବା କଣ କଥା ? ପୁରୁଣା ଦେହଟା ଯିବ, ନୂଆ ଦେହ ଧରି ଜନ୍ମ ହେବ, କେହି କଣ ପ୍ରକୃତରେ ମରେ ? ନା ! ବାଘର ଯୋଗ ଥିଲେ ଆମର ଏ ଦେହଟାକୁ ଖାଇ ଦେବ, ସେଇଠୁ ଆମର ଯୋଗ ପଡ଼ିବ ଯେ ଆଉ ଗୋଟିଏ ନୂଆ ଦେହ ଧରି ଜନ୍ମ ନେବା ।''

ଖାଲି ଆଖି ବୁଜି ସହି ଯିବାକୁ ହିଁ ଉପଦେଶ, -ଆସୁ ଯେତେ ବିଧା ଗୋଇଠା, ନିନ୍ଦା ଅପମାନ, ଅତ୍ୟାଚାର, ଲୁଣ୍ଠନ, ଶେଷରେ ମୃତ୍ୟୁ, ଯୁଗ ଯୁଗ ଯାକେ ହାରି ହାରି କଷ୍ଟ ଭୋଗି ଭୋଗି ବଣକୁ ପଳାଇ ଆସି ସେଠି ବି ବାର ଅବସ୍ଥା ଭୋଗି ଏମିତି ହୋଇ ଯାଇଥାଏ ଲେଡେଂ ଲୋକଙ୍କ ମନ- ସତେ ଯେପରି ମୁଠିଏ ଖାଇ କୌଣସି ମତେ ଜୀବନ ବଞ୍ଚି ପାରିଲେ ହିଁ ତାଙ୍କ ପକ୍ଷରେ ଖୁବ୍ ବଡ଼ କୃତିତ୍ୱ । ସାହେବ ଆସିଥିଲେ, ଆଗ ଆଗ ତାଙ୍କୁ ତଡ଼ିବାକୁ ସେମାନେ ବି ଲଢ଼ିଥିଲେ, ମରିଥିଲେ, ହାରିଥିଲେ, ଆଦରିଥିଲେ । ପଛେ ପୁଣି କିଏ କେତେବେଳେ ତାଙ୍କୁ ମତେଇ ଥିଲେ, ସେମାନେ ମାତିଥିଲେ, ଆହୁରି ଲୋକକ୍ଷୟ ସହିଥଲେ, ଆହୁରି ନିର୍ଯ୍ୟାତନା, ଅତୀତର ସେ ରୋମଟାଙ୍କୁରା କାହାଣୀ ଭବିଷ୍ୟତକୁ ରହି ଯାଇଛି ଡରେଇବାକୁ, ସେମାନେ ଲାଜ କରନ୍ତି ନାହିଁ, କହନ୍ତି, ''ଆମେ ଡରୁଆ ଲୋକ, କାହାକୁଲେ ବାଦ କରୁନାହିଁ, ଖଟି ଖାଇଲେ ଆମେ ଖୁସି, ଆମକୁ ଯେ ହରବର କରୁଛି ମହାପୁରୁ ତା କଥା ବୁଝିବେ ।''

ପଦାରେ କେତେ ଲୋକ ସେମାନଙ୍କୁ ପ୍ରଶଂସା କରନ୍ତି, ''ସେମାନେ ସରଳ, ନିଷ୍ପାପ, ସତ୍ୟ ଯୁଗର ଲୋକ'', ଇତ୍ୟାଦି । ଆଉ କିଏ କହନ୍ତି, ''ସେମାନେ ମଣିଷ ହୋଇ ନାହାନ୍ତି । ବହୁତ ତଳେ ଅଛନ୍ତି, ଉଚିତ, ଅନୁଚିତ, ଅଧିକାର, ସତ୍‌ସାହସ -ଏ ସବୁ ବିଷୟରେ ସେମାନଙ୍କ ଧାରଣା ଆସୁ ଆସୁ ସେ ଧାରଣା ଅନୁସାରେ ସେମାନେ କାମ କରୁ କରୁ, ଆହୁରି ବହୁତ ଡେରି ହେବ, ଆଗ ମଣିଷ ହୁଅନ୍ତୁ ।''

କାହା ନିନ୍ଦା ସ୍ତୁତି ଶୁଣି ଛଳ କରିବା ଲୋକ ଅନ୍ତତଃ ଲେଡେଂର ଲୋକ ନୁହନ୍ତି । ଲୋକ ନିଜ ଧନ୍ଦା ଛାଡ଼ି ପର ଧନ୍ଦା କଥା ଆଦୌ କାହିଁକି ମୁଣ୍ଡରେ ପୂରାଇବ ଯେ ପର କାମକୁ ନିନ୍ଦା କରିବ ବା ପ୍ରଶଂସା କରିବ ସାଧାରଣ ଲେଡେଂ ବାସୀ ତା ବୁଝି ବି ପାରନ୍ତା ନାହିଁ କହିଲେ, ତା ଦୁନିଆଁଟିଏ ଏ ଲେଡେଂ ଉପତ୍ୟକା, ତା ପାଖ ବଣ ପାହାଡ଼, ସେହି ଯେଉଁଠି ସେ ବୁଲେ, ବଢ଼େ, ବଞ୍ଚେ, ଆଖି ବୁଜେ । ଆଉ କେଉଁଠିକା ଲୋକେ ଗାଡ଼ି ଚଢ଼ି ଚନ୍ଦ୍ରକୁ ଗଲେ ଆଇଲେ, ଘରେ ବସି ଶୂନ୍ୟେ ଶୂନ୍ୟେ ଶୁନ୍-ଶାନ୍ ହୁକୁମ୍ ଦେଇ ମଙ୍ଗଳ ଗ୍ରହକୁ ଗାଡ଼ି ପଠେଇଲେ, ସେଠି ହୁକୁମ ବଳରେ କଳ-ହାତ ମାଟି

ଖୋଳି ଆଣିଲା, କେମିତି କେଉଁଠି ଲୋକେ ଏଡ଼େ ପାରିବାର ମାରକ ବାଣ ଗଢ଼ି ରଖିଛନ୍ତି ଯେ ଯେଉଁ ରାଇଜକୁ ଧ୍ୱଂସ କରିବାକୁ ମନ ହେବ ତାକୁ ନିମିଷକେ ଧ୍ୱଂସ କରିବେ, ଏମିତି କେତେ କଥା ଲେଙ୍ଗେ ଉପତ୍ୟକାକୁ କେତେବେଳେ କୁଆଡ଼ୁ ଉଡ଼ି ଉଡ଼ି ଆସିଥିଲା, ଯେମିତି ଧୂଳି ଉଡ଼େ, ବଣର ପତ୍ରରେ ଲାଖେ ପୁଣି କୁଆଡ଼େ ଉଭେଇ ଯାଏ । ସେମିତି ସେ ସବୁ କଥା ବି ସେମାନଙ୍କ ବାହାରେ ବାହାରେ ଯାଇଥିଲା, ଭିତରକୁ ଭେଦି ପାରି ନଥିଲା, ଲେଙ୍ଗେ ବାସୀ କେବେ ସେସବୁ କଥା ପକାଇଲେ କହନ୍ତି, ''ଆଉ ଯେଉଁ ବଣରେ ହାତୀମାନଙ୍କର ବି ପକ୍ଷି ଅଛି, ସେମାନେ ଉଡନ୍ତି, ଏମିତି କିଏ କହିଲେ ଆମେ କ'ଣ ବିଶ୍ୱାସ କରିବା ? ନିଶ୍ଚୟ ସେ ଦେଶରେ ଆଉ କିଛି ଚେର ମୂଳ ମିଳେ, ମଦରେ ପକାଇଲେ ସେ ମଦ ବେଶୀ ଟାଣ ହୁଏ ।''

ବିଜ୍ଞାନର କୁହୁକ କାହାଣୀ ଶୁଣି ତାଙ୍କର କିଛି ଉପକାର ହେଉ ନଥିଲା, ମଣିଷ ସେଠି ବାଘର ଖାଦ୍ୟ ହୁଏ, ମଣିଷ ଜନ୍ମ ପାଇ ଆପଣା ଘରେ ଆପଣା ଗାଁରେ ନିଶବ୍ଦ ନିରୁଦ୍‌ବେଗ ହୋଇ ବୁଲିବାକୁ ତାର ଅଧିକାର ନାହିଁ, ସବୁବେଳେ ଭୟ, ଅଣ୍ଟା ସଳଖେଇ ପାରେ ନାହିଁ, ସିଧା କାହା ମୁହଁକୁ ଅନାଇଁ ପାରେ ନାହିଁ ।

ତଥାପି ଲେଙ୍ଗେ ଖାଲର ସେହି ଡରରେ-ଜଣ୍ଟା ପାଣି ଛାତି ଧଡ଼ପଡ଼ ଡରୁଆ ମଣିଷ ତାଙ୍କ ଐତିହ୍ୟ ଯୋଗୁଁ ଗର୍ବ କରିଥାନ୍ତି । ଗର୍ବର କାରଣ ବୋଲି ବାରମ୍ବାର ଉପଲକ୍ଷ୍ୟ ଦିଅନ୍ତି ଗୋଟିଏ କଥାକୁ ।

''ଦେଖ, କେତେ କେତେ ଗାଁର କେତେ କେତେ ଲୋକଙ୍କର ଚେର ବି ବୁଡ଼ିଗଲାଣି, ଶୁଣିଛୁଁ, ସେଠି ଗାଁ ଥିଲା, ମଣିଷ ଥିଲେ, କେଉଁଠି ରାଜା ଥିଲେ, ପୁରୁଷ ପୁରୁଷ ଯୁଗ ଯୁଗ ଥିଲେ, ଏବେ ଶାଳବଣ, ବେତବଣ, ହାତୀଆ ଘାସ, କେଉଁଟି ଇଟା କୁଢ଼, କେଉଁଠି ଖପରା ।

କିନ୍ତୁ ଆମେ ଲେଙ୍ଗେଗିଆ । ଆମେ ତ ଅଛୁ ଏଗାଁରେ ସବୁଦିନେ, ଏଇ ଖାଇଖୋଲ ଗାଁ ଗୁଡ଼ା ବାୟସା- ସବୁ ମିଶି ଏ ଆମ ଲେଙ୍ଗେ, ଏ ସଂସାରରେ ଆମ ଲେଙ୍ଗେ ପରି ରାଜ୍ୟ ସ୍ଥାନ ନାହିଁ, ଆମ ଲେଙ୍ଗେ ଲୋକଙ୍କ ପରି ଲୋକ ନାହାନ୍ତି । ଆମ ରକ୍ତ ପୁରୁଣା, ଆମ ରକ୍ତ ପବିତ୍ର, ଆମ ସମାଜ ସବୁଠୁ ଭଲ, ଆମ ଧର୍ମ ସବୁଠୁ ବଢ଼ିଆ, ସେଥିପାଇଁ ତ, ଅନ୍ୟାନ୍ୟ ପୁରୁଣା ଗାଁ ପରି ଆମ ଗାଁ ନିଶ୍ଚିହ୍ନ ହୋଇ ନାହିଁ ।''

କାନ୍ଦ ବୋବାଳି ଶୁଭେ ଆଜି ଯା ଘରୁ, ଦିଦିନ ଗଲେ ଆଉ କାହା ଘରୁ, ମଝିରେ ମଝିରେ ମହାବଳ ରଡ଼ିରେ ଗାଁ କମ୍ପେ, ବାଘଖିଆ ଆଉ ବନ୍ଦ ହୁଏ ନାହିଁ ।

ତାପରେ ମାଘ ମାସ ଉଆଁସ ରାତିରେ ହଠାତ୍ ଲେଙ୍ଗେ ପାଖ ବଣ ଭିତରେ କଣ ହୁରୁସ୍ଥୁଲ ପଡ଼ିଗଲା, ରାତି ଅଧରେ କେତେବେଳେ ଯାଏ ତୁହାଇ ତୁହାଇ ବାଘର ବିକଟ ବୋବାଳି ଶୁଭିଲା । ସେ ବୋବାଳିରେ କଣ ବିଶେଷତ୍ୱ ଥିଲା, କେମିତି ଗୁମ୍ଫା ଭିତରୁ ଘଡ଼ଘଡ଼ି ଶବ୍ଦ ବାହାରିଲା ପରି ଆଗ ଆଗ ଶୁଭୁଥାଏ, ଶୁଭୁଥାଏ ପ୍ରଚଣ୍ଡ ରାଗରେ ଗରଗର, କିନ୍ତୁ ପୁଣି କଣ ହେଲା ? ବାଘ ବୋବାଳିର ସ୍ୱର ବଦଳିଗଲା, କ୍ଳାନ୍ତ ଓ କାତର ହୋଇ ଆସିଲା, ରହି ରହିକା ଶୁଭେ, ଦୁର୍ବଳ, କାତର ।

''ଆଜି ବାଘୁଣୀ କାନ୍ଦୁଚି,'' ଧନୁ ପଣ୍ଡିତ ତା ପୁଅ ସୁନୁକୁ ଡାକ ମାରି କହୁଥାଏ, ଘା ଭଲ ହେଲାଣି, କିନ୍ତୁ ଦୁର୍ବଳତା କଟି ନାହିଁ, ଦରଜ ଛାଡ଼ି ନାହିଁ, ସେ ବୁଲାଚଲା କରି ପାରି ନାହିଁ,

''ଶୁଣୁଚୁରେ ପୁଅ, ମୁଣ୍ଡିଆଙ୍କୁ ଯେ ଖାଇଲା, ଏତେ ଲୋକଙ୍କୁ ଧରି ଧରି ଖାଇଲା, ସମସ୍ତିଙ୍କି ଛେଳି କରି ରଖିଥିଲା, ପୁଣି ତାର ବି କଣ ଦୁଃଖ ପଡ଼ିଲାଣି ପରା, ନଇଲେ ବାଘ ତୁଣ୍ଡରୁ ଏମିତି ସ୍ୱର ବାହାରେ ନାହିଁ ।''

''ବାଘୁଣୀ ମଲେ ତୁଇ କାଁଦ୍‌ତୁସ୍ (କାନ୍ଦନ୍ତୁ) ବାପା, ନୁହେଁ ।''

''ସତେ ତ । ତାର କି ଦୋଷ ? ସେ ଯାହା କରୁଛି ଠାକୁରାଣୀ ତାକୁ ବରଗିବାରୁ ସିନା କରୁଛି, ନହିଲେ କରନ୍ତା ?''

''ଆଉ ଏବେ ଯେ ?''

''ଠାକୁରାଣୀ ତାକୁ କନ୍ଦୋଉଛି ।''

ବଣ ତୁନି ପଡ଼ିଲା । ଆଉ ବାଘ ରଡ଼ି ଶୁଭିଲା ନାହିଁ । ସକାଳ ପାହିଲା, ରାତି କଥା ଲୋକେ କୁହାକୋହି ହେଲେ, କିନ୍ତୁ କେହି ସେ ବିଷୟରେ ଆଉ କିଛି କଲେ ନାହିଁ । ସେମିତି ଡରି ଡରି ତାଙ୍କ ଜୀବନ ବିତୁଥାଏ । ଆକାଶରେ ଠାଏ ବଣ ଉପରେ ଶାଗୁଣା ଗୁଡ଼ାଏ ଚକ୍ରି ମାରୁଥାନ୍ତି । ଆରଦିନ ଆହୁରି ଶାଗୁଣା ଉଡ଼ିଲେ, ବହଳ ହୋଇ ଉଡୁଥାନ୍ତି, ତଳ ଆଡ଼କୁ ମୋହୁଁଥାନ୍ତି, ପୁଣି ଉଡୁଥାନ୍ତି । ବଣ ଆଡୁ କଣ ସଢ଼ା ଦୁର୍ଗନ୍ଧ ପବନରେ ଆସୁଥାଏ । ଅନୁମାନ କରିବାକୁ ଲୋକଙ୍କୁ ଡେରି ଲାଗିଲା ନାହିଁ- ପାହାଡ଼ ତଳେ ବଡ଼ ଅଜଗର ମରିଥିବ, ବାଘ କେଉଁଠି କେଉଁ ଜନ୍ତୁକୁ ଅଧାଖିଆ କରି ପୋପାଡ଼ିଥିବ- ସମ୍ଭାବନା ବହୁତ ।

ଶାଗୁଣା ବି ଆଉ ଉଡ଼ିଲେ ନାହିଁ, ଦୁର୍ଗନ୍ଧ ବି ଆଉ ଆସିଲା ନାହିଁ, ବାଘ ରଡ଼ି ଆଉ ଶୁଭିଲା ନାହିଁ କି ବାଘ ଆଉ କାହାକୁ ଖାଇବାର କି କେଉଁଠି ଦେଖା ପଡ଼ିବାର ଜଣାଗଲା ନାହିଁ । ମାଘ ଗଲା, ଫଗୁଣ ବି ଗଲା, ତଥାପି ବାଘର ଦେଖା ନାହିଁ, କିନ୍ତୁ ଲୋକଙ୍କ ଡର ଆଗପରି ରହିଥାଏ, ସେମାନେ କୁହାକୋହି ହୁଅନ୍ତି, ''ଆଜି ନହେଲେ କାଲି । ବାଘର ତ ରାଜ୍ୟ । କିଏ ମନା କରିବ ତାକୁ ?''

ଚଇତରେ ବଣ ଆପେ ପାତଳ ହେଲା, ବିଧି ପ୍ରକାରେ ଲେଡେଂର ଲୋକେ ବି ବାଜା ବଜାଇ ଏକାଠି ହୋଇ ବଣରେ ଶିକାର କରିବାକୁ ଗଲେ, ଯଦିଚ ନିଜ ପ୍ରାଣକୁ ଡର, କାଳେ ବାଘ ଖାଇବ । କିନ୍ତୁ ବାଘ ଆସିଲା ନାହିଁ, ତୀର ମାଡ଼ରେ କେଉଁଠି କୁଟ୍ରାଟିଏ କେଉଁଠି ହରିଣଟିଏ ମଲେ, ମହା ଉତ୍ସାହରେ ନାଚି ନାଚି ଲୋକେ ଗାଁକୁ ଫେରିଲେ । ଅଳ୍ପ ସାହସ ଓ ଆଶା ବଢ଼ିଲା, ବଣରେ ନୂଆ ଜାଗାରେ ଚାଷ ଆରମ୍ଭ କରିବା ଉଦ୍ଦେଶ୍ୟରେ ଠାଏ ଠାଏ ବଣ ହାଣି ଲୋକେ ନିଆଁ ଲଗାଇ ଦେଲେ । ତଥାପି ବାଘର ଦେଖାନାହିଁ । ଖରାଦିନ ଆସିଲା; ବଣ ଖାଲି ଫାଙ୍କା, ଥୁଣ୍ଡା, ଘାସ ବି ଶୁଖିଥାଏ, ଅନାଇଁଦେଲେ ବଣ ଭିତରେ ଗଛ ଗଣ୍ଡି ସନ୍ଧିଏ ସନ୍ଧିଏ କେତେ ଦୂରକୁ ଦୃଷ୍ଟି ଚାଲିଯାଏ । ଲୋକେ ବଣରେ ବୁଲିଲେ, ନାନା ପଦାର୍ଥ ଗୋଟାଇଲେ, ବଣ ଭିତରେ ନୂଆ ପଦ୍ଧତିରେ କାମ କଲେ । ବର୍ଷାଦିନ ଆସିଲା, କେଉଁଦିନୁ କାହାକୁ ବାଘ ଖାଇନାହିଁ, ବାଘ ବୋବାଳି ଶୁଭିନାହିଁ କି ବାଘ କେହି ଦେଖିନାହିଁ, ତେଣୁ ଲୋକେ ଗତବର୍ଷ ଭଳି ଛାନିଆଁ ହେଲେ ନାହିଁ, ଚାଷ କାମ କଲେ ।

ତଥାପି ମନ ଭିତରେ ଟିକିଏ ଉଦ୍‌ବେଗ ଥାଏ- ଯେ ଯେମିତି ଅନହୁତି କାହାର ମରଣ ଆସି ପହଞ୍ଚି ଯାଏ ସେମିତି କେତେବେଳେ କାଳେ ହଠାତ୍ ଆସି ପହଞ୍ଚିଯିବ ମହାବଳ, ତାକୁ ନାହିଁ

କରି ହେବ ନାହିଁ ।

"ଯୁଗେ ଯୁଗେ ସ୍ଥାନେ ସ୍ଥାନେ ବାଘ ବାହାରିଛି, ଧରିଛି, ସଂସାରରେ ଯେତେଦିନ ଯାଏ ମଣିଷ ବୋଲି ପ୍ରାଣୀଟିଏ ବଞ୍ଚିଛି, ବାଘ ବୋଲି ପଶୁଟିଏ ବଞ୍ଚିଛି, ଯେଉଁଠି ହେଉ ମଣିଷକୁ ବାଘ ଖାଉଥିବ," ଆଷାଢ଼ ମାସରେ ଠାକୁରାଣୀ ପୂଜା ବେଳେ ଗାଁ ମୁଣ୍ଡିଆଳ ଯୁବକ ଯୋଗୀ ସିଂ ଲେଡେଂ ଗାଁର ଲୋକଙ୍କୁ ବୁଝାଉଥାଏ, ସେମାନେ ତା ବୁଦ୍ଧିକୁ ପ୍ରଶଂସା କରୁଥାନ୍ତି, ସେ କହୁଥାଏ, "ତେବେ, ଆମେ ଯଦି ଠାକୁରାଣୀକି ତା ମନଲାଖି ପୂଜା ବଳି ଦେଉଥିବା, ଆମ ଗାଁର କାହାକୁ ବାଘ ଖାଇବ ନାହିଁ, ଆଉ ଯାହାକୁ ଖାଉ ।"

ସେମାନେ ଜାଣି ପାରିଲେ ନାହିଁ, କେହି ଜାଣି ପାରିଲେ ନାହିଁ, ବଣ ଭିତରେ କେଉଁ ଐତିହାସିକ ଯୁଗର କେଉଁ ଭଙ୍ଗା ରଜା-ନଅରର ଅଧାପୋତା ଗହୀର କୂଅଟାଏ ଥିଲା, ତା ମୁହଁରେ ଲଟାର ଜାଲ, ବାଘୁଣୀର ମୁଣ୍ଡ ଓ ହାଡ଼ ତାରି ଭିତରେ ପଡ଼ିଥିଲା, ଛାଲ ବି ସଢ଼ି ଯାଇଥିଲା । ଘଟଣାଟି ଅତି ଆକସ୍ମିକ । ବାଘୁଣୀ ଓ ତା ଛୁଆ ଦିହେଁ ଥିଲେ କୂଅପାଖେ । ବାଘୁଣୀ ଗୋଟାଏ ଗୋଟିକିଆ ମୋଟା ସୋଟା ଅଣ୍ଡିରା ବାର୍ହାକୁ ଦେଖି ଲୋଭେଇଲା, ଆଗ ରଡ଼ିଟାଏ ଛାଡ଼ିଲା । ଆରପଟୁ ତୀର ମାରିଲା ପରି ଦଉଡ଼ି ଆସିଲା ବାର୍ହାଟି, ବାଘୁଣୀର ପେଟରେ ଭୁଷିଲା । କୂଅରେ ବାଘୁଣୀ ପଡ଼ିଲା, ବାର୍ହା ବି । ବାଘୁଣୀର ପେଟ ଚିରି ହୋଇ ଅନ୍ତବୁଜୁଳା ବାହାରିଥିଲା, ବାର୍ହାର ଗଲା ମୁଣ୍ଡ, ପୁଳା ପୁଳା ହୋଇ ନଖରେ ଦାନ୍ତରେ ଓଲରା ହେଲା ।

ଛୁଆ ଦି'ଟା ଲୁଚି ଲୁଚି ଅନ୍ୟ ବଣକୁ ପଳାଇଲେ, ଗୋଟାଏ ବଞ୍ଚିଥିଲା, କିନ୍ତୁ ସେ ଆଉ ଲେଡେଂ ବଣକୁ କେବେ ଆସି ନାହିଁ । ଏଡ଼େ ଭୟଙ୍କର ଦୁର୍ଦ୍ଦାନ୍ତ ମଣିଷଖିଆ ବାଘର ତିରୋଧାନ ପଦାରେ କିଛି ଚହଳ ବି ପକାଇଲା ନାହିଁ । ମଲା ପୂର୍ବରୁ ବଣ ବାର୍ହା ମୁଣ୍ଡ ଉପରେ ଦେହ ଉପରେ ସେ ତା ଶେଷ ଧ୍ୱଂସକାରୀ ଶକ୍ତିର କଣ ପରାକାଷ୍ଠା ଦେଖାଇଗଲା, ଲୋକେ ତା ବି ଜାଣିଲେ ନାହିଁ ।

ଯେମିତି କେଉଁ ସାଆଁତିଆ ଅମଳରେ କେଉଁ ନଅର ଭିତରର କେଉଁ ଗୋପନ ହତ୍ୟା କାହାଣୀ ଉଭଟ କଳ୍ପନାଭଳି- କେଉଁ ରଜା ନଅରରେ କି ମୋଗଲ ରଂଗମହଲରେ, ଅନ୍ଧାରୀ ପାତାଳି ନଖୁରି, ବିଷ, ଛୁରୀ, ଆଉ ବାହାରେ ନାନା ରଙ୍ଗର ଖେଳ, ହସ, ସଂଭ୍ରମ, ମହମହ ସୁବାସ, ଅତି ବେଶି ହେଲେ ଗୋଟାଏ ଶସ୍ତା କୈଫିୟତ୍, ଲୋକଙ୍କ ମନକୁ ବୁଝାଇବାକୁ ।

ମଣିଷଙ୍କ ଇତିହାସରେ ବାଘୁଣୀ ବିଷୟରେ କେଉଁଠି ପଦେ ରହିଲା ନାହିଁ । ଦଳୁଆ ପୋଖରୀରେ ରାତିରେ କେତେବେଳେ ଧଣ୍ଡଟିଏ ଜବ ଜବ ହୋଇଥିଲା, ମାଛ ଧରୁଥିଲା, ସେମିତି ।

# ଅନହୁତି

ମୁହଁ ଉପରେ କୁଆଁର ପୁନେଇଁ ।

ନଟବର ସହରକୁ ଆସିଥିଲେ ଲୁଗା କିଣି ।

ତାଙ୍କ ଆଡ଼ର ଜଣେ ଚିହ୍ନା ମୋହରୀର ଘରେ କିଣି ଆଣିଥିବା ଲୁଗା ଓ ବଜାର ସଉଦାତକ ଥୋଇ ଦେଇ ପଦାକୁ ବାହାରିଲା ବେଳକୁ ଛାଇ ନେଉଟି ଆସୁଛି । ସହରରେ ଚାରିଆଡ଼େ ବ୍ୟସ୍ତତା । ହଠାତ୍ ଅଳସପଣରୁ ଉଦାସ ଲାଗିଲା, ମନେପଡ଼ିଲା ପିଲାଦିନର କାହାଣୀ-ଇସ୍କୁଲ ଗଲା ପିଲାଟିଏ ଯାହାକୁ ଖେଳିବାକୁ ଡ଼ାକୁଛି ତାକୁ ତର ନାହିଁ, ପିମ୍ପୁଡ଼ିକୁ ବି ବେଳନାହିଁ, ମହୁମାଛିକୁ ବି ବେଳ ନାହିଁ । ଶେଷରେ ପିଲାଟିକୁ ଇସ୍କୁଲ ଯିବାକୁହିଁ ପଡ଼ିଲା । ଏମାନେ କଣ ସେହି କାହାଣୀ ପଢୁଥିବେ ?

ନଟବର ଚାହିଁଲେ ରାସ୍ତାକଡ଼ର ଗୋଟିଏ ସହରିଆ ଚାହାଳି ଆଡ଼କୁ । ଭିନ୍ନ ଭିନ୍ନ ଶ୍ରେଣୀର ପିଲା ଏକାଠି ଦଳ ହୋଇ ପାଠ ଗର୍ଜୁଛନ୍ତି । ଗର୍ଜନହିଁ ଶୁଭୁଛି, ପାଠ ଶୁଭୁନାହିଁ । ରାସ୍ତା ଆରପଟେ କାମ କରୁଛି ଗୋଟାଏ କରତକଳ, ଇଞ୍ଜିନ୍ ଲଗା । ତାର ବିକଟ ଶବ୍ଦ । ସେହି କଳ ସାମ୍ନାରେ ଆଁ କରି ଅନାଇଁ ପାଞ୍ଚମିନିଟ୍, ପୁଣି ମନ ଛାଡ଼ିଗଲା, ପୁଣି ରାସ୍ତା ।

ସାନପୁଅ କୁନାଟି କଣ କରୁଥିବ ଅଇଛା ? ଆହା, ବଡ଼ ଦୁର୍ବଳ ବିଚରାଟି, ଗାଁ ବଇଦ କହିଛି ପେଟରେ କୃମି ଅଛି । ଦେହ ଜଳଜଳ, ପେଟ ଫୁଲାଫୁଲା, ହାତଗୋଡ଼ ଡ଼ାଙ୍ଗ ସରୁ ସରୁ; ମୁଣ୍ଡଟି ବଡ଼ । ହେଲେ କ'ଣ ହେଲା, ପାଠ ପିଇଯାଉଛି, ଏଇ ଦଶବର୍ଷ ଦିନୁ ଓଡ଼ାଙ୍କ ସାରିଲାଣି । ସପୁରୀ କନ୍ଦା ଛେଚି ଛେଚି ପେଇପେଇ ରୋଗ ବୋଲ ମାନୁନାହିଁ, ଯେମିତିକି ସେମିତି । ଲୋକେ କହୁଛନ୍ତି ଏଇ ବାପର ଏଇ ପୁଅ ! ବଡ଼ପୁଅ ବୁନା- ବିଲବାଡ଼ି ସବୁ ବୁଝେ । ଏଇ ମଗୁଶୀରରେ ତା'ର ଶୁଭକାର୍ଯ୍ୟ କରିଦେବାକୁ ଇଚ୍ଛା । ସେଥିପାଇଁ ତ ଆଜି ରାତିକ ସହରରେ ମାଣ୍ଡେଇ ଯିବାକୁ ପଡୁଛି । ଆଜି ତାଙ୍କ ଘରେ ଆସିବେ କହିଛନ୍ତି, ମୋହରୀର ଥାଇ ଦବାନବା କଥାଟା ପଡ଼ିଯିବ ।

ବିଭାଘର ମଗୁଶୀର ଡ଼େଇଁବ ନାହିଁ, ବୁନାବୋଉ ଦେହ ଆଉ ଭଲ ହେଲା ନାହିଁ । ଆଃ- ବିଚରା ବୁନାବୋଉ, ଦୂରରେ ଥାଇ ଭାବିଲେ ବିକଳ ଲାଗେ । ଚମ୍ପାଫୁଲ ପରି ଗୋରା । ଗୋଟାଏ ଚାଉଳରେ ଗଢ଼ା, ମୁଣ୍ଡ ବାଳ ଫିଟେଇ ଦେଲେ ବଳାଗଣ୍ଠିକି ପାଏ । କୁଆଡ଼େ ଗଲା ସେ ରୂପ, ସେ ବଳ, ସେହି ମଣିଷଟା ତ ସେ, ଅଇଛା ଧରି ପକେଇଲେ ବେଲେଣାପେଡ଼ିରେ ରୁଟି ବେଲିଲାପରି ବେଲି ହୋଇଯାଏ । ପାଞ୍ଚବର୍ଷ ସାନ ତ, କେତେ ହେବ, ଅତି ବେଶିରେ ଚାଳିଶି ବର୍ଷ । ସେଥିରେ ଖାଲି ହାଡ଼ଚମ, ବାଳ ଉପୁଡ଼ି ଯାଉଛି, ମୁଣ୍ଡ ବୁଲାଏ, ପାଦତଳ ପୋଡ଼େ, ଦେହ ଥରେ । ବଇଦ କହେ ବାତପିତ୍ତ । ଆଶଙ୍କା ହୁଏ, ତା ସଙ୍ଗକୁ କଫଟା ଯଦି ମିଶିଯିବ, ତେବେ କିଏ ରଖିବ ? ଶାସ୍ତ୍ର

କହିଛି, ''ବାତ କଫ ପିତ୍ତ ଏକାଠି ହୋଇବେ ତଣ୍ଟି ଶୁଭୁଥିବ ଘଡ଼ ଘଡ଼, ଘଡ଼ ଘଡ଼, ଆରେ ଶୁଖା ଖଡ଼ଖଡ଼ ।'' ମିଛ ମାୟା ସବୁ । ମିଛ ମାୟାରେ ପଡ଼ି ହେଉ ଲଡ଼ବଡ଼, ଲଡ଼ବଡ଼, ଆରେ ଶୁଖା ଖଡ଼ ଖଡ଼ ।

ସବୁ ଖାଲି ଜୁଆର ଆଉ ଭଟ୍ଟା । ତଳହଟିରେ ଆପଣା ଗାଁ ତଳ ଅଠରବାଙ୍କ ନଈ ମନେ ପଡ଼ିଯାଏ । ଜୁଆର ଆସେ, ଜୁଆର ଯାଏ, ରୂପ, ଯୌବନ, ଧନ, ସନ୍ତାନ ।

ଗାଁ ଧରୁଛି ମନ । ଏତିକି ବେଳିଆ । ନଈକୂଳେ ବରଗଛ ମୂଳେ ଟୁଙ୍ଗି ବାନ୍ଧିଛି ବାବାଜୀଟା । ଚିଲମ ଧରେଇ ଦିଅନ୍ତା । ମନଜାଣି କହନ୍ତା କଥା ପଦେ- ''ଦେଖ ବାପା, ନଈରେ ଜୁଆର ଆଇଚି । ଏମିତିଆ ମଣିଷର ଘରକରଣା- ।'' ସୁଖ ଏଠି ନାହିଁ । ଇଏ ସହର । ନିଜ ବାଟେ ନିଜେ ସମସ୍ତେ । ଖାଲି ଚାଲି ଯାଉଛନ୍ତି, ଚାଲି ଯାଉଛନ୍ତି । ପଦେ କଥା ନାହିଁ, ପଦେ ସହାନୁଭୂତି ନାହିଁ ।

ଦୀର୍ଘଶ୍ୱାସ ପକେଇ ନଟବର ଚାଲି ଲାଗିଲେ । ଉଦ୍ଦେଶ୍ୟ ନାହିଁ । ଖାଲି ବୁଲୁଛନ୍ତି । ଯେ କୌଣସିମତେ ଆଜିକ କଟେଇ ଦେଲେ କାଲିକି ମଟର ଧରି ଗାଁ ।

ନାଲି ଟୁକୁଟୁକୁ ଓଠ, ଗାଲରେ ଦରୋଟି ଫଳର ଚିକ୍‌କଣ ଆଉ ଧଳାଳୁ, ରଙ୍ଗରଙ୍ଗିଆ ଶାଢ଼ୀ, ଖୋଲା ରିକ୍‌ସାରେ ଯୋଡ଼ି ଯୋଡ଼ି ହୋଇ ବସି ସହରର ମାଇପେ ବୁଲି ଚାଲିଛନ୍ତି ।

ଖାଲି ମନେପଡ଼େ ବିଚରା ବୁନାବୋଉ ! ବାରମ୍ବାର ପ୍ରସୂତି, ବାରମ୍ବାର ମେଲେରିଆ, କଣ କି ଅବସ୍ଥା ହେଲାଣି ସେ ! ମନଟା ବେଶି ଖରାପ ହେଲା । ବୁନାବୋଉ ଖାଲି ଦେଇ ଜାଣିଛି, ଦେଇ ଦେଇ କାଙ୍ଗାଳ, ହାତପାତି କେବେ ମାଗି ନାହିଁ ।

ବୁନାବୋଉ ତାର ବଳ ବହପ ସୌନ୍ଦର୍ଯ୍ୟ ବାଣ୍ଟି ଦେଇଛି । ମାଟି ଘରର କାନ୍ଥ ଚଟାଣ ଚିକ୍‌କଣ ପାଲିସ୍ । କଂସାବାସନ କାଚପରି ଜିକ୍‌ଜିକ୍ କରେ । ଦୁଆର କୋଣରେ କାଗେଜି ଗଛ ଭାଲୁକୁଣୀ ପରି ବଢ଼ି ଉଠି ଫଳ ଅଜାଡ଼ି ଦିଏ । ସେମିତି ବିଲବାଡ଼ି, ତୋଟା, ପୋଖରୀ, ସମଗ୍ର ଘରକରଣା । ଶିକାରେ ଓହଳି ଓହଳି ଭଡ଼ା ଭଡ଼ା ଆମ୍ବୁଲ ହାଣ୍ଡି, ବଡ଼ି ହାଣ୍ଡି । ସଫାସୁତୁରା ଗୁହାଳର ତଳି, ମାଛି ଖସି ପଡୁଛନ୍ତି ଗୋରୁଗାଈ କେତୋଟିଙ୍କ ଦେହରୁ । ପିଲାଝିଲାଙ୍କ ମୂତରେ ସଡ଼ି ସଡ଼ି, ରାତି ଅନିଦ୍ରା ରହି; ମଶା ହୁରୁଡ଼େଇ ହୁରୁଡ଼େଇ ତାଙ୍କର ଯତ୍ନ । ଏତେ ବର୍ଷରେ ଦିନୁଦିନ ଏତେଠି ଛିଞ୍ଚାଡ଼ି ଦେଇଛି ବୁନାବୋଉ ତାରି ଯୌବନ, ତାର ରକ୍ତର ତେଜ, ଦେହର ବର୍ଣ୍ଣ । ନିଜ ପାଇଁ କିଛି ରଖିନାହିଁ । ଯେତେ ମନାକଲେ ବଡ଼ି ଅନ୍ଧାରୁ ରାତି ଅଧଯାକେ ଖାଲି କାମ କାମ... ... ।

ଏଇ ନଟବର । ପରିପୁଷ୍ଟ ଦେହ । ସରଳ ମନ । ଯେଉଁଆଡ଼େ ଗଲେ ବି ଆପଣା ଘରସଂସାରରେ ଆବଦ୍ଧ ।

ବୁଲୁ ବୁଲୁ ବଡ ସହରର ବଡ ପଡିଆ । ଓଃ,କେତେ ଲୋକ । ସହରର ଅଧେ ଲୋକ ସତେ କି ଏଠି ଠୁଳ ହୋଇଛନ୍ତି ! ଏତେ ମୁଣ୍ଡ-ଥାଳି ମାରିଦେଲେ ଥାଳି ଚାଲିଯିବ । ଜନତାର ସମଷ୍ଟିଗତ ପ୍ରଭାବ ନଟବରଙ୍କ ସ୍ୱତନ୍ତ୍ର ବ୍ୟକ୍ତିତ୍ୱକୁ ଡୁବେଇ ଦେବାକୁ ଲାଗିଲା । ଉଡିଗଲା ବୁନାବୋଉ, ହଜିଗଲା ଘର । ସାମନାରେ ଜନତା, ମନ ଭିତରେ ତହିଁ ସଙ୍ଗେ ସମତାଳ । ଗୋଠମୁହାଁ ଗୋଟିକିଆ ମେଣ୍ଢାପରି ସେତିକି ବାଟ ଦି'ଖୋପା କରିଦେଇ ନଟବର ଦଉଡି ଚାଲିଗଲେ ।

ପଡିଆରେ ସେତେବେଳେ ଫୁଟବଲ ମ୍ୟାଚ ଲାଗିଥିଲା । ଦି'ଦଳ । ପାଖେ ବାରିପଦା

ପାଖେ ଜୟପୁର । କେଉଁଠି ବାରିପଦା କେଉଁଠି ଜୟପୁର ? କେହି ଗୋଲ୍ ଖାଇନାହାନ୍ତି, କଣ ସେ ଗୋଲ୍ ? ଖାଲି ଶୁଣାଶୁଣିରେ ଜ୍ଞାନ । ପାଖେ ନାଲି କାମିଜ୍ ପାଖେ ସାବ୍ଜା । ଚାଲିଛି ଖେଳ ଏମୁଣ୍ଡୁ ସେମୁଣ୍ଡ ଉଠୁପଡ ଗୋଡିଆ ଗୋଡି ।

ପ୍ରଥମେ ଚାହିଁଦେଇ ମନଟା ଫିକା ପଡିଗଲା । ସଂସାରୀ ବୁଦ୍ଧିରେ କଳି ଦେଖିଲେ ନଟବର-କିବା କାମ ଯେ ଏଥିପାଇଁ ଏତେ ଭିଡ ? ଝାଳନାଳ ହୋଇ ଧାଇଁଛନ୍ତି ବାଇଶିଜଣ ଭେଣ୍ଡା, କି ବା କାମ ? ଖାଲି ଗୋଟାଏ ଚମଡାର ପବନଫୁଲା ପେଣ୍ଡୁ ଉପରେ ମଣିଷପଣ ପରଖ କରିବାକୁ ? ଏଇଥିପାଇଁ ଟଙ୍କା କଉଡି ଦେଇ ବାପ ମା'ପିଲାଙ୍କୁ ପାଠ ପଢ଼ାନ୍ତି-ପେଣ୍ଡୁ ଉପରେ ଗୋଇଠାମରା ଶିଖେଇବାକୁ !

ବାଇଶଟା ଭେଣ୍ଡା-ଏକାଠି ହେଲେ ଗୋଟାଏ ଘରତୋଳାର ମାଟି ଚକଟିପାରନ୍ତେ, ତାଡି ପାରନ୍ତେ, ମାଡି ପାରନ୍ତେ, ଭାଙ୍ଗି ପାରନ୍ତେ, ଗଢ଼ି ପାରନ୍ତେ । ଧର ଯଦି ଜଣ ଜଣକେ ଗୋଟାଏ ଲେଖାଁ ହଳ ଧରେଇ ଦେଇ କହନ୍ତ ଏ ପଡ଼ିଆଟା ତଷିବାକୁ, ପାରନ୍ତେ ନାହିଁ ? ବାରମାଣ ସମତଳ ଜମି, ଖାଲି ଘାସ ବଢ଼ିଛି, ଏଇ ବାଇଶିଜଣ ଭେଣ୍ଡା ଏଠି ଫସଲ ଉପୁଜାନ୍ତେ ଗଦା ଗଦା । ତା ନକରି ଖାଲି ଏ ତାମସା ! ସହରିଆ ଲୋକଙ୍କର ଅଜବ ଖିଆଲ । ପେଟକୁ ପଖାଳ କଂସାଏ ନଖାଇ ଚାରି ପଇସା ଦେଇ ସିଗାରେଟ କିଣି ଧୂଆଁ ଶୋଷିଦେବେ । ସେମିତି ଏ । କାହିଁ ବାରିପଦା, କାହିଁ ଜୟପୁର !

ହାଫ୍ ଟାଇମ୍ ପାଖ । ପ୍ରଚଣ୍ଡ ଘୋ ଘୋ ଭିତରେ ବାରିପଦା ଜୟପୁରକୁ ଗୋଟିଏ ଗୋଲ୍ ଦେଇଛି । ଜୟପୁର ପ୍ରାଣପଣେ ଚେଷ୍ଟା କରୁଛି ଗୋଲ୍‌ଟି ଶୁଝେଇବ । ହେଇ ଆଗେଇ ଚାଲିଛି ଜୟପୁର, ଥାକୁକୁ ଥାକ ଥାକୁକୁ ଥାକ । ବଲ୍‌ଟା ବାରିପଦାର ଗୋଲଖୁଣ୍ଟି ପାଖ ହେଲାଣି । ଲାଗିଛି ଲଢ଼ାଲଢ଼ି ଧରାପରା, ଲାଗିଛି ଚକ୍ରବ୍ୟୂହ । ଜୟପୁରର ସେହି ବାଳଫୁରୁଫୁରୁ ଚେପ୍‌ଟା ନାକ ହାଡୁଆ ମୁହଁ କଳା ମିଚି ମିଚି ଡେଙ୍ଗା ଲୋକଟି, ବାହାଦୁର୍ ସେ- ପବନ ବେଗରେ ଧାଏଁ ପଥର ପରି ମଣିଷଟା । ହେଇ ବଲ୍ ଛଡ଼େଇ ନେଲା । ତାଳିଆଡୁ ପାଟି- ''ଆରେ କନ୍ଧିଆ ମାରି ନେଲାରେ !'' କନ୍ଧ କି ସେ ? ଯା'ହେଉ ଦେବ ଏଥର । ଦେ, ଦେ, ଲଗା କିକ୍ । ଦେ ଗୋଲ୍ ଦେ ଦେ- ।

ଖେଳର ନିଶାରେ ମତ୍ତ ନଟବର । ଚୋରେଇ ଛପି ନୂଆ ଚେତନା ମନକୁ ଅଧିକାର କରି ବସିଛି । ପ୍ରକୃତରେ ନୂଆ କି ? ନା, ଅତି ପୁରୁଣା ଆଦିମ ପ୍ରବୃତ୍ତି । ମାରିପିଟି ଛଡ଼େଇ ନେବାର । ଧରି ରଖିବାର । ଶତ୍ରୁକୁ ଜିତିବାର । ଯାହା ବାଧା ବିପଦ ଆସୁ, ଆପଣା ଅଭୀଷ୍ଟ ଲାଗି ପିଠି ପଥର କରି ଅଣ୍ଟା ଭିଡ଼ି ଲାଗି ପଡ଼ିବାର । ସେମିତି ଲାଗେ ଚାଷୀ । ଲାଗି ରହିଛି ଦୁନିଆବୋଉ । ଗାଁ ମକଦ୍ଦମା, ସାହି ମେଳି । ଜମି ଉଜୁଡ଼େଇ ଘର ଉଚ୍ଛନ୍ନ କରି ଗୋଟାଏ ବିଧା, ଦିଟା ଚଟକଣାର ପ୍ରତିଶୋଧ ନେବାକୁ ତିନି ତିନି ବର୍ଷ ଧରି ମାଲିମକଦ୍ଦମା- ସେହି ତ ସେ- ଦଳରେ ରହି ଆତ୍ମପ୍ରକାଶର ଚେଷ୍ଟା । ଦେ ଗୋଲ୍- ଦେ ଦେ । ମନ ଅଜାଣତରେ ଜୟପୁର ପଟ ସହିତ ନଟବର ନିଜକୁ ମିଶେଇ ସାରିଲେଣି, କେବଳ ଜୟପୁର ପଟ ନୁହେଁ, ସେହି କାଳିଆ ଡେଙ୍ଗା ଖେଳୁଆଡ଼ ସତେ ଯେପରି ନିଜେ ସେ, ତା ସୁଖଦୁଃଖ ତାଙ୍କର ସୁଖଦୁଃଖ । ସେ ଅଚିହ୍ନା ହେଉ ପଛେ, ନଟବରଙ୍କ ନିଜ ମନର ଗୋଟାଏ ଦିଗ ମୂର୍ତ୍ତିମନ୍ତ, ମନ ସାଫଲ୍ୟ ଖୋଜେ ତାହାରି ସାଫଲ୍ୟରେ । ତେଣୁ ଉଚ୍ଚାଟ ହୋଇ ଚିତ୍କାର- ''ଲଗା ଲଗା ଦେ ଗୋଲ୍- ଦେ- ଦେ ।''

ନଟବର ଉହୁଙ୍କି ଗଲେଣି- କହୁଣିଆଁ ମାରି ଠେଲିପେଲି ଲାଇନ ଟପି ଆଗକୁ ।

କିନ୍ତୁ ଏତେ ପାଟି ସତ୍ତ୍ୱେ ଗୋଲ୍ ହେଲାନାହିଁ, ଫସ୍‌କି ଗଲା । ଦୂରରୁ ଜଣେ ଭିଡ଼ରୁ ଲାଇନ୍ ବାହାରକୁ ଠେଲି ଆସୁଛି । ନିଜେ ପଛେଇ ଗଲେ, ମନ ଦୁଃଖ । ଜୟପୁର ପାରିଲା ନାହିଁ ।

କେତେ଼ହୁଣିକା ହାଫ୍ ଟାଇମ୍ କଟିଗଲା । ସୋଡ଼ା ପିଇସାରି କୁଲା କୁଲା ଲେମ୍ବୁ ଖାଇ ଝାଳମାରି ପୁଣି ଯୋଦ୍ଧାମାନେ ସଜ ହେଲେ । ଏଥର ପଟ ଅଦଳ ବଦଳ । ନଟବର ଜୟପୁରର ସାଫଲ୍ୟପାଇଁ ମଙ୍ଗଳ କାମନାକରି ଠାକୁରଙ୍କୁ ଡ଼ାକି ଏକନିଷ୍ଠ ହୋଇ ଖେଳ ଦେଖିବାକୁ ଲାଗିଲେ । ଏଥର ଜୟପୁର ଆଗକୁ ଟପି ଚାଲିଛି । ହେଇ, ନେଇ ଚାଲିଲେ ବଲ୍ । ଗୋଲ୍ !!

ନଟବର ଛତାକୁ ଉପରକୁ ଛାଟି ପୁଣି ଧରି କୁଦାମାରି ଆନନ୍ଦ ପ୍ରକାଶ କଲେ । ଏଠି ସେଠି ଆହୁରି ସେପରି ନାଚୁଛନ୍ତି କେହି କେହି । ଦର୍ଶକମଣ୍ଡଳୀରେ ଭାରି ଚାଞ୍ଚଲ୍ୟ, ଭାରି ଯୁକ୍ତିତର୍କ, ପାଟି । ଥୋକେ ଜୟପୁର ପଟ ଥୋକେ ବାରିପଦା ପଟ । ଏ ପାଖ 'ଅପ୍ ଅପ୍' କହି ଉତ୍ସାହ ଦେଲା ସରିକି ଆରପାଖ 'ଡ଼ାଉନ୍ ଡ଼ାଉନ୍' କହି ସାନ କରିବାର ଚେଷ୍ଟା ।

ତେଣୁ ଖେଳ ଲାଗିଛି ଘମାଘୋଟ । ଉଭୟ ପକ୍ଷ ଜାଗତିଆର । ଥରେ ଏ ପଟ ମାଡ଼ିଗଲେ, ଥରେ ଆରପଟ ମାଡ଼ି ଆସୁଛନ୍ତି ।

ଜୟପୁରର ସେହି କଳାଲୋକଟି ବଲ୍ ନେଇ ଛୁଟିଛି । 'ଅପ୍ ଅପ୍'- ନଟବର ଚାତକ ପରି ଚାହିଁ ଚିତ୍କାର କରୁଥାନ୍ତି, 'ଅପ୍ ଅପ୍ ଜୟପୁର'- କିଏ ଜଣେ ପାଟି କରୁଛି- 'ଡ଼ାଉନ୍ ଡ଼ାଉନ୍‌ରେ ଘୋଡ଼ା ଅପ୍ ବାରିପଦା' ଚଳେଇଛନ୍ତି ଦିହେଁ ଦୁଇ ପ୍ରକାର । ଆଉ ଜଣକ ଚିତ୍କାର କରୁଛି- ''ଗଲା ଗଲାରେ ଘୋଡ଼ା, ଧର ଧର ।'' କଥାଟା କାଟିଲା, ନଟବର ବୁଲିପଡ଼ିଲେ ।

''କାହାକୁ ଘୋଡ଼ା କହୁଚ ?''

''ସେଇ ଯୋଉଁ ବଡ଼ ବଡ଼ ବାଳ । ଆରେ ଧରରେ, ଘୋଡ଼ା ଗଲାରେ-''

''ମୁହଁ ସମ୍ଭାଳି କଥା କୁହ ।''

''କାହିଁକି ? ତମେ କଣ ଘୋଡ଼ାର ବଡ଼ଭାଇ ହାତୀ ବୋଲି ନା କଣ ?''

''ଆରେ ତୁ ତ ଓଟ ।''

''ଆଉ ତୁ ତ ଗଧ, କେତେ଼ କେତେ଼ କାନ ହେଇଛି ।'' ସେହି ମନ ଅଜାଣତରେ ଆପଣା ବାଁ ହାତଟା ଜୋର୍‌ରେ ବସିଥିଲା ସେ ଲୋକଟାର ଗାଲରେ । ସରୁଆ ହାଡୁଆ ଲୋକଟା, ପୁଳିଏ ଦାଢ଼ି, ଟାକୁଆ ଗାଲ, ଚଷମା । ମୁଣ୍ଡରେ ପଠାଣ ଟୋପି । ଅନହୁତି ଗୋଟାଏ ବାୟାଁ ବସିଲା ତାହାରି ଗାଲରେ, ପାଟିବାଟେ ରକ୍ତ ବାହାରିଲା, ଚଷମାଟା ଛିଟିକି କରି ପଡୁ ପଡୁ ଅଳ୍ପକେ ବଞ୍ଚିଗଲା । ଲୋକଟା ସେହି ରକ୍ତବୁହା ପାଟିରେ ଚିତ୍କାର କଲା, ''ପ୍ଲିଜ୍ ଭାଇ, ମାର୍‌ଡ଼ାଲାରେ ।'' ଚାହୁଁ ଚାହୁଁରେ ରେକାର କରି ଦଳେ ଲୋକ ଉଠି ଆସି ପହଞ୍ଚିଗଲେ । ଚାରିଆଡ଼େ ଖାଲି ''ମାରୋ ମାରୋ'' ରବ । ଦେଖାଦେଖି ତାଙ୍କର ଏକ ବିରୋଧିଦଳ ଉଠି ଠିଆହେଲେ । ଆଖି ପିଛୁଡ଼ାକେ ଲାଗିଗଲା ଫୌଜଦାରୀ । ବିଧା, ଠେଙ୍ଗା, ଟେକାବୃଷ୍ଟି, ଠେଲାପେଲା । ହୋ, ହା ଚିତ୍କାର, ନାନାଜାତି । କିଏ ବାଡ଼େଇ ଲାଗିଚି, କାହାକୁ ବାଡ଼ୋଉଛି ଭାବିବାକୁ ତର ନାହିଁ । କିଏ ହାଁ ହାଁ ରହ ରହ କହୁ କହୁ ତା ପିଠିରେ ବସୁଛି ଗୁମ୍‌ଗାମ୍ । ଭିଡ଼ ଭିତରେ ଭେଁ ଭାଁ ହୋଇ ଛୁଆ କାନ୍ଦୁଛନ୍ତି । କିଏ ପଳେଉଛି ।

ହଠାତ୍ ଠେଙ୍ଗାବାଡ଼ି ସହ ପୁଲିସ୍ ଫଉଜର ପ୍ରବେଶ । ''ହଟୋ-ହଟୋ, ଭାଗୋ-ଭାଗୋ ।''

ଭିଡ଼ ପାତଳ ହେଉଛି । ମୁଣ୍ଡରେ ମାଡ଼ବାଜି ମୁଣ୍ଡ ଫାଟି ରକ୍ତ ବୋହୁଛି କି ନାହିଁ ଦେଖିଲା ନଟବର । ପୁଲିସ୍ ଲାଠି ଧୀରେ ଧୀରେ ପଡ଼ିଥିଲା, ଟିକିଏ ନାଁକୁ ଫାଟିଗଲା । ଯା' ହେଉ, ଯୁଦ୍ଧ ଭାଙ୍ଗିଗଲା । ପଡ଼ିଆ କରରେ ଢ଼ିପ ଉପରେ ସଡ଼କ ବଙ୍କେଇଛି । ବାରିପଦା ଗୋଲ୍ ଦେଲା । ଗହଳି ହେଇ ଶୁଭୁଛି ଗର୍ଜନ- ''ଗୋଲ୍... ଅପ୍ ବାରିପଦା...''

କାହିଁ, ମନରେ ଉଷ୍ଣା ଆସୁ ନାହିଁ ତ ।

ନଟବର ଥଣ୍ଡା ମୁଣ୍ଡରେ ବସାକୁ ଲେଉଟୁଛନ୍ତି ।

କେବଳ ବଲ୍‌ର ଫାଙ୍କେ ମୁଣ୍ଡରେ ଲାଗିଯାଇଛି । ମଫସଲର ସବୁଦିନିଆଁ ଆଶାବାଦୀସୂତ୍ର ଆଉଣ୍ଡି ନଟବର ଭାବି ଭାବି ଯାଉଛନ୍ତି- କେଡ଼େ ରିଷ୍ଟ ଆଜି କଟିଗଲା ଏହିବାଟେ । ବୁନାବୋଉ ଶୁଣିଲେ କଣ କହିବ !

# ଶିକାର

ପାହାଡ଼ ତଳ ଅନ୍ଧାରି ଖାଲରୁ ଗୋଟିକ ପଛେ ଗୋଟିଏ ହୋଇ ଉଠି ଠିଆହେଉଛନ୍ତି ସେମାନେ । ମୁଣ୍ଡରେ ନୁଖୁରାବାଳ, ଅଣ୍ଟାରେ କୌପୁନି, ଦଳ ଦଳ ହୋଇ କେତେ ଲୋକ, ପଛଆଡ଼େ ପାହାଡ଼ ପାଖରେ ଝାପ୍‌ସା ଝାପ୍‌ସା ହୋଇ ଦିଶିଯାଉଛି ତାଙ୍କ ଗାଁ, ହେଇ ତ ଦୂରରୁ ଦିଶୁଛି ଗାଁର ବୋହୂ ଝିଅ ଆସୁଛନ୍ତି ପାଣିକୁ । ଆଉ ଗୋରୁ ଗୋଠ ଛେଳି ଗୋଠ ଫେରୁଛନ୍ତି, ମଇଁଷି ପିଠିରେ ଲମ୍ବ ହୋଇ ଶୋଇ ତଳକୁ ଗୋଡ଼ ହାତ ଝୁଲେଇ ଦେଇ ବୁହାହୋଇ ଚାଲିଛନ୍ତି ଗାଁର ଗାଈ ଜଗୁଆଳ ପିଲା ।

ରାସ୍ତା ଦି'ପାଖେ ସୂର୍ଯ୍ୟାସ୍ତର ନାଲିଚା ଆଲୁଅରେ ତେଜି ଉଠୁଛି ଏଇ ଯେଉଁ ଧୂଆଁ ପତ୍ର କ୍ଷେତ, ସୋରିଷ କ୍ଷେତ ଆଉ ଏହି ଯେତେ ଜଡ଼ା କାଙ୍ଗୁ କାନ୍ଦୁଲ ଫସଲ, ଏଇ ଯେତେ ପରିବା ବଗିଚା ଯାହା ଚାରିକରେ ଉଞ୍ଚ ଉଞ୍ଚ ଝାଟି ଉପରେ ବହଳ ହୋଇ ଶିମ୍ବ ଲଟେଇଛି, ଲାଉ ଲଟେଇଛି, ଗଡ଼ା ହୋଇଛି କୁଞ୍ଚ, ସବୁ ତ ତାଙ୍କରି ହାତର କରଣି । ଗୋଟିକିଆ ଗଛର ଡିଙ୍କେନିଆ ତାହି ଉପରେ ଚଢ଼େଇ ବସା ପରି ଏହି ଯେଉଁ ଟିକି ଟିକି କୁଡ଼ିଆ, ଚଢ଼ିଯିବାକୁ ତଳୁ ଉପରକୁ ଗୋଟାଏ ଲେଖାଁ ହାତ ଖଣ୍ଡିଆ ବାଉଁଶ, ତାଙ୍କରି କ୍ଷେତଜଗା କୁଡ଼ିଆ ତ ସେ, ରାତିଯାକ ମଞ୍ଚା ଉପରେ ଥାଇ ଶିଂଘା ଫୁଙ୍କା, ବଇଁଶୀ ଫୁଙ୍କା, ଆଉ ବରଗଛ ତଳେ ଠାଆଠାଆକେ ଏହି ଯେଉଁ ନିଭିଲା ଚୁଲି, ଏଇ ଯେଉଁ ପାଉଁଶ, ଚୁଲି କଳାରୋଳା ପଥର, ସେଠି ରାତିରେ ସେହିମାନେ ହିଁ ତ ରୋଷେଇ କରି ଖାଇଥିଲେ, ନିଶ୍ଚୟ ଏଇ ଗଲା ରାତିରେ । ଆଉ ଏ ଜମିର ମନଉଲୁସା ପାଚି ନିଶ୍ଚୟ ସେମାନେ ଉପୁଜେଇ ଥିଲେ । ସେମାନେ କାଟି ନେଇଥିଲେ । ପୁଣି ନେବେ ଏଥର ।

ନିଶ୍ଚୟ ନୁହନ୍ତି ଏମାନେ ଏ ଜମିରେ ଖମାରି; ପରପାଖେ ମୁଣ୍ଡବିକା, ମାସକୁ ଆୟ ଛ'ଟଙ୍କା ଦିଅଣା, ନିଶ୍ଚୟ ନୁହନ୍ତି ଏମାନେ ସଞ୍ଜାଚାଷୀ, ପାଚୁ ନପାଚୁ ସୁନାରୀଗଡ଼ ଲମ୍ବୋଦର ନେବ ଏ ଜମିରୁ ଏକ 'ଗଡ଼ିଶା' ସେ ଜମିରୁ ତିରିଶ ପୁଟି ବର୍ଷଯାକ ତଷି ଫସଲ ପାଇଲା ବେଳକୁ ଚୁକ୍ତି-ପତ୍ର କାଗଜ ଧରି ସେ ବସିଥିବ । ''ଦେ ମାପିଦେ ମୋ ଭାଗ, ଲେଖା ପ୍ରକାରେ ଏକ ଗଡ଼ିଶା ପୁଣି ମିଶା, ଯାହା କରଜ ନେଇଥିଲୁଁ ତହିଁରେ ଟଙ୍କାକେ ଦି' ମାଣ ହିସାବରେ ସୁଧ -''ମନେ ନାଇଁ ଖାଇବାକୁ ନେଇଥିଲୁ, ତୋର ଖୋରାକ, ବଳଦର ଖାଦ, ବିହନ, ଲାଗୁତି, କଟାବୁହାମଲା, ଟଙ୍କାକେ ଦି'ମାଣ ହିସାବରେ ସୁଧ, ଦେ ଲେଖାକର ସବୁହେଲା କେତେ ? ଗଡ଼ିଶାଏ ପନ୍ଦର ପୁଟିତ ? ପଚେଇଲୁ କେତେ ? ମଲା, ମଲା, ମୋଟେ ଗଡ଼ିଶାଏ ? ସବୁ ନେଇ ବି ତୋ ଉପରେ ରହିଲା ପନ୍ଦର ପୁଟି, ଆରବର୍ଷକୁ ଶୁଝିବୁ । ସେମିତି ଅନୋଉଚୁ କ'ଣ ? ପାଳ ଝାଡ଼ି ଘରକୁ ନେ, ମାଗଣା ଛାଡ଼ି ଦେଲି । ଭଲ କରି ଝାଡ଼ିଲେ ପାଳରୁ ପାଇଯିବୁ ପାଞ୍ଚପୁଟି ଧାନ । ମୁଁ କ'ଣ କରିବି କହ ? ଚୁକ୍ତି ଲେଖା

ପ୍ରକାରେ ମୋ ଭାଗଟା ମରିବ କାହିଁକି ?''

ନିଶ୍ଚୟ ନୁହନ୍ତି ସଞ୍ଜାଚାଷୀ, ଭାଗଚାଷୀ, ଖମାଚି, ନହେଲେ ପାହାଡ଼ତଡ଼ା ପୋଡୁଚାଷୀ, କଂକର ପଥର ଉପରେ ତିନି ବର୍ଷକୁ ଖୋରାକର ବରାଦ, ତେଣିକି ନାହିଁ, ଆଉ ଯାବତ ଭୟ ବାଘକୁ, ବଣ ଗାରଡ଼କୁ, କଟିରିକୁ, ଜେଲ ଜୋରିମାନାକୁ, ତଥାପି ସବୁ ଭୟକୁ ଦେହ କାଠ କରି ପଥର ଉପରେ ପାହାର ଉଭାରୁ ପାହାର ଗଛ ଉପରେ ଟାଙ୍ଗିଆ ଚୋଟ ନିଆଁହୁଳା, ଆଉ ଦି' ଗୋଡ଼ରେ ଢ଼ାଲୁଆ ପର୍ବତକୁ ଚାପି ଧରି ଛୁଆ ଅଣ୍ଡା ବଚ୍ଚା ସମେତ ପର୍ବତ ସଙ୍ଗେ କସରତ, ଖରାଏ ଖରାଏ, ବରଷାଏ ବରଷାଏ-

ନୁହନ୍ତି ନିଶ୍ଚୟ ତା' ଏମାନେ, ଏ ଜମି ତାଙ୍କରି ପିତୃପୁରୁଷଙ୍କର, ଆଜି ପୁଣି ତାଙ୍କର; ଏ ସୋରିଷ, ଏ କାନ୍ଦୁଲ, ଏ ଧୂଆଁପତ୍ର ତାଙ୍କର, ଆଉ ଏ ଯେତେ ସୁଆଁ, ମାଣ୍ଡିଆ, ଧାନ ପାହାଡ଼ କରରେ ତୋଟାତଳ ଛାଇରେ ଝାଟି ବୁଜା ହୋଇ ତାଙ୍କରି ଘରକରଣାର ଘଙ୍କୀ ଏ ନିଦା ଗାଁ, ବାହୁଙ୍ଗା ବିଛେଇ ଡେଙ୍ଗା ହୋଇ ଠିଆ ହୋଇଛି ଶଳପ ଗଛ ଯେଉଁଠି । ତାହାରି ତଳେ ଥିବ ମୁହାଁମୁହିଁ ହୋଇ ଦି ସାଉଡ଼ି ଘର, ଏମୁଣ୍ଡୁ ସେମୁଣ୍ଡ ଏକ ସେଣି, ଏ ପାଖୁ ସେ ପାଖ ଏକ ନୀତି, ସମସ୍ତେ ସମାନ, ଗାଁ ଗୋଟା କ ସମସ୍ତିଙ୍କର, ସମସ୍ତେ ଗାଁର, ମଝିଦାଣ୍ଡ କୁଦ ଉପରେ 'ଝାକିରି' ଦେବତା ମା ଧରିତ୍ରୀ, ସମସ୍ତେ ତାରି ପୁଅ ଝିଅ, ଉପରେ ଧର୍ମ, ତଳେ ବସୁମତୀ, ସଂସାରରେ ସତ ହିଁ ଅସଲ, ଆଉ କିଛି ନାହିଁ -ଆଉ ସବୁ ମଣିଷ ଭାଇ ଭାଇ-

କେଉଁ ଛପିଲା ଲୁଚିଲା ଖାଲରୁ ଫାଟରୁ ଧାର ଧାର ହୋଇ ଗଡ଼ିଆସି ଖାଲ ସେପାଖ ମାଟିକୁଦ ଉପରେ ଠିଆହୋଇ ଦେଖୁଛନ୍ତି ପରା ସେମାନେ, ହେଇ ସେହି ଶାଳ ବଣ ତଳେ, ମହୁଲ ବଣ ତଳେ, ବାରି ହେଉ ନାହିଁ ମଣିଷ କି ଗଛ । ଅନେଇ ଦେଖୁଥିବେ ପଦା ଦୁନିଆରୁ କଳଗାଡ଼ି ଚଢ଼ି ଆସିଛନ୍ତି କିଏ ଧୋବଧାଉଳିଆ ମଣିଷ, କେଡ଼େ କୁତୂହଳରେ ନିରେଖି ଦେଖୁଥିବେ, ଆଉ ଭାବୁଥିବେ -କିଏ ସେ ଏମାନେ ? ଶତ୍ରୁ କି ମିତ୍ର ? କ'ଣ ୟାଙ୍କର ନୀତି ?

ଗାଡ଼ି ଅଟକିଛି । ଆଠ ଦଶ ବର୍ଷର ଛୁଆଦୋଟି ଅଳି ଧରିଛନ୍ତି ବଧୁଲି ଫୁଲ ନେବେ । ସେହି ନାଲି ସୂର୍ଯ୍ୟାସ୍ତରେ ନାଲି ନିଆଁ ପରି ଲତାଏ ଲତାଏ ଖୁନ୍ଦି ହୋଇଛି ନାଲି ବଧୁଲି ଫୁଲ, କାନ୍ଦିକି କାନ୍ଦି ଭଙ୍ଗା ଚାଲିଛି । ଭାବୁଥିବେ ସେମାନେ, ଏମାନେ ବି ସେହି ପିଲା, କନ୍ଧ ଘର ପିଲା ପରି ଫୁଲକୁ ସଉକ, ଏମାନେ ବି ସେହି ମଣିଷ, ସେହି ବାପ, ଯେଡ଼େ କାମଥାଉ ପିଲାଙ୍କ ଅଳି ମେଣ୍ଟାଇବାକୁ ହାତ ବନ୍ଦ କରିବେ । ବେକ ଉହୁଁକେଇ ଗୋଛା ହୋଇ ଅନେଇଥିବେ ସେମାନେ, ବିଶ୍ୱାସ ହେବକି, ଏମାନେ ବି ସେହି ମଣିଷ । କିଳିକିଳା ରଡ଼ି ଛାଡ଼ି ଆନନ୍ଦରେ କୁହାଟ ମାରି ଡେଇଁ ଡେଇଁ ଆସି ନିମନ୍ତ୍ରଣ କରିବେ, ଅଳି କରିବେ, ଜଟ ହଲେଇ ହାତ ହଲେଇ ଅବୋଧ ଭାଷାର ଝରଣା ବୁହାଇ ଦେଇ ନେହୁରି ହେବେ -''ଆସ ଆଜି ଆମ ଗାଁରେ ରହ, ତୁମେ ବି ମଣିଷ ଆମେ ବି ମଣିଷ । ଆସ ନ ହେଲେ ତୁମ ଆୟା (ମା) ମାନେ ଦୁଃଖ କରିବେ, ଝିଅମାନେ କାନ୍ଦିବେ, ସଙ୍ଗାତୁଣୀମାନେ ରୁଷିବେ । ଆସ, ଆମେ ଆଜି ଭୋଜି କରିବା, ନାଟ କରିବା, ସଳପ ମଦ ଅଛି ପିଇବାକୁ ଦେବୁ, ବୁଢ଼ୀ ଗୋରୁ ମାରି ଖାଇବାକୁ ଦେବୁ । ଆଉ କୁକୁଡ଼ା, କୁକୁଡ଼ା ଡିମ୍ବ, କଦଳୀ, ଯାହା ଅଛି ସବୁ ଦେବୁ । ନିଆଁ ଆନ୍ତା ଜାଳି ଜଗି ରହିଥିବୁଁ ରାତିଯାକ, ସକାଳ ହେଲେ ଆର ଗାଁ'ଯାକେ ପାଛୋଟି ଯିବୁ । ଏ ତୁମର ଘର,

ଏମାନେ ତୁମର ପିଲାଛୁଆ, ଏ ତୁମରି ଗାଁ, କାରଣ ତୁମେ ବି- ମଣିଷ ।''

ଧାଇଁ ଆସିବେ ପରା ଏଥର ।

ଯାଃ, ସୂର୍ଯ୍ୟ ବୁଡ଼ି ଗଲାଣି କେତେବେଳୁ, ପଛରେ ରହିଥିବା ପଶ୍ଚିମ ପଟର ଚୁଲି ଝିଙ୍କା ପରି ଦି' ପାଖର ଗୋଜିଆ ପାହାଡ଼ ମଝିରେ ଯେଉଁ ନାଲି ଧାସ ସେ ଧୀରେ ନିଭି ଆସିଲାଣି, ଚାରି ପାଖରୁ ଛାଇ ମାଡ଼ି ଆସୁଛି, ଗାଁ ଗଣ୍ଡା ନାହିଁ, ମଣିଷ ନାହାନ୍ତି, ଗୋରୁ ଗୋଠ ନାହାନ୍ତି, ଖାଲି ତୁଚ୍ଛା ଜଙ୍ଗଲ, ପୂର୍ବଘାଟ ପର୍ବତମାଳା, ପୋଡୁହଣା ଲଣ୍ଡା ପାହାଡ଼ ବି ଅନ୍ଧାର ଘୋଡ଼ି ହୋଇ ଦିଶୁଛି ଅଗନାଗ୍ନି ବନସ୍ତ ପରି, କେଉଁ ଅତୀତରେ କାହା ମୁଣ୍ଡ ବିନ୍ଧା କୋଚଟ ଫିତା ପରି ପୂର୍ବ ଆଡ଼କୁ ଖଣ୍ଡେ ଦୂର ଲମ୍ୱି ରହିଛି ରାସ୍ତା, ତା'ପରେ ଅନ୍ଧାରରେ ହଜିଛି, ଆଉ ପାହାଡ଼-ତଳ ଝୋଲା ଆଡ଼କୁ ହାତ ଦେଖାଇ ବୁଢ଼ା ଲକ୍ଷ୍ମୀନାରାୟଣ କାହାଣୀ କହି ଲାଗିଛି-

''ଏଇଠି ଆଜ୍ଞା, ୟାରି ନାଁ ଝୁପାବାଇ ନାଳ, ସେପାଖକୁ ଖଣ୍ଡେ ବାଟରେ ପାହାଡ଼ ସନ୍ଧିରେ ଝୁପାବାଇ ଗାଁ ଅଛି । ଅତି ପାତାଳ ଫୁଟା ସେ ନାଳ, ପଥରକୁ କାଟି କାଟି ତରତର ହୋଇ ଧାଇଁ ଧାଇଁ ଯାଇଁ ନାଗାବଳୀ ନଈରେ ମିଶିଛି, ଯେମିତିକି ବାଛୁରୀ ଧାଇଁଛି ମା' ପାଖକୁ । ଏ ପାଖରୁ ଝୁପାବାଇ ଗାଁକୁ ଯିବାକୁ ହେଲେ ଗୋଟାଏ ବୁଲା ବାଟ ଅଛି, ପଛକୁ ଆସିବାକୁ ପଡ଼ିବ ତାକେ ବାଟ, ସେଠି ଆସ୍ତେ ଆସ୍ତେ ସେ ଗହୀର ପାତାଳକୁ ଓହ୍ଲେଇବାକୁ ପଡ଼ିବ । ସେଇଠୁ ନାଳେ ନାଳେ ଆଗକୁ ଥୋଡ଼ାଏ ବାଟ ଗଲେ ଉଠିବାକୁ ଅତଡ଼ା, ତା'ପରେ ଆରପାରି । ବନ୍ଧୁକୀ ଫଉଜ ଏଇ ପାଖରେ ତାଙ୍କୁ ହାବୁଡ଼ି ଗଲେ । ଦି' ଦିନ ଆଗରୁ ଚାରି ଛଅ ଜାଗାରେ ମାଡ଼ ଖାଇ ଖାଇ ଦଶଖଣ୍ଡ ଗାଁ ଲୋକ ଏପାଖେ ଆସି ରୁଣ୍ଡିଥିଲେ । କିଏ ନ ଥିଲା ସେଠି ? କାଲାପାଇ ଗାଁ ଲୋକ, ବାଲାପାଇ ଲୋକ, କନାପାଡ଼ି, ରେଙ୍ଗା ହାଣ୍ଡି, ଦାମନଗଣ୍ଡା, ଦଣ୍ଡାବାଡ଼, ଫଟାଟିଙ୍କିରି ସବୁ ଯେତେ ଟାଣୁଆ ଟାଣୁଆ ଲୋକ ଆଜ୍ଞା, ଏମିତି ସଞ୍ଜ ପଡ଼ି ଆସୁଥିଲା, ନାଳ ଏ ପାଖରେ ପଥର ଢ଼ିପ ତଳେ ଭାରି ବଡ଼ ଆମ୍ବ ତୋଟା ଅଛି, ସେଇଠି ସେମାନେ ରାତିର ଖାଦ ଖାଇବେ ବୋଲି ବସି ପଡ଼ିଥିଲେ, କିଏ ଲାଉ ତୁମ୍ବାରୁ ପତ୍ର ଦନାରେ ଅଜାଡ଼ି ଅଜାଡ଼ି ଜାଉ ପିଉଥିଲା, କିଏ ପିଇବ ବୋଲି ସଜ ହେଉଥିଲା, କିଏ ପିଇସାରି ଧୂଆଁପତ୍ର ବଳୁଥିଲା ପିକା ଲଗେଇବ ବୋଲି, ସେତେବେଳକୁ ଘର ଛାଡ଼ି କାହିଁ ମାସେ ପନ୍ଦର ଦିନ ହେଲାଣି । ବୁଲି ବୁଲି ଗୋଡ଼ରୁ ପାଣି ମଲାଣି । କିଛି ତ କୁଆଡୁ ହେଲାନାହିଁ, ଫଉଜ ଆସି ଗଲେଣି, ନାଳ ପାରି ତାଙ୍କ ଗାଁସବୁ ଘେରୁଥିଲେ, ଆଉ ଏଣୁ ଗୁପ୍ତରେ ଖବର ପହଞ୍ଚିଗଲା । ଫଉଜ ଚଢ଼ିଗଲେ ଏପାଖ ଢ଼ିପ ଉପରେ ତା'ପରେ ଚାଲିଲା ଗୁଳି ଫାଏର, ଢୁ ଢା ଢୁ ଢା-''

''ଏଁ ! ଗୁଳିଫାୟାର୍ !'' ଶ୍ରୀଚରଣ ଚମକି ପଡ଼ିଲା । ଏହି ଶାନ୍ତ ବନାନୀ କୋଳରେ ଆଦିମ ଚାଷୀ ଜୀବନର ସ୍ୱପ୍ନ ସହିତ ସେ ଗୁଳି ଫାୟାରକୁ ଯୋଡ଼ି ପାରିଲା ନାହିଁ । ହେଇତ, ସେମାନେ ଆସି ସତକୁ ସତ ଜୀଅନ୍ତା ଲୋକ ପରି, ତା'ର ଚେତନା ଭିତରେ ଠିଆ ହୋଇ ତାକୁ ନିମନ୍ତ୍ରଣ କରୁଥିଲେ, ଏ ଧ୍ୟାନ ପାଇଁ ପରିଶ୍ରମ ପଡ଼ି ନାହିଁ, ଦରକାର ପଡ଼ିନାହିଁ ଆସନରେ ବସି ନାକପୁଡ଼ା ଚିପି ନିଃଶ୍ୱାସ ଅକ୍ତିଆର କରି ପ୍ରାଣାୟାମ କରିବା, ଦରକାର ପଡ଼ିନାହିଁ ପର ହାତଲେଖା ଉପନ୍ୟାସ ପଢ଼ି ଏମାନଙ୍କୁ କଳ୍ପନାରେ ଦେଖିବା କିମ୍ବା ସହରକୁ ଯାଇ ଲୋକ ଗହଳି ଅନ୍ଧାର ଘରେ ବନ୍ଦୀ ହୋଇ ଧଳା ପର୍ଦ୍ଦା ଉପରେ ସିନେମା ଛବିରେ ମଣିଷ ଜୀବନ ଦେଖି ଉଙ୍କିମାରି ଜୀବନକୁ ଉପଭୋଗ କରିବା ।

ଅତି ସହଜରେ ମନରେ ଉଇଁଥିଲା ଏ ଚିତ୍ର, ଯେପରିକି ଏହି ପରିବେଷ୍ଟନୀ ଉପରେ ପବନର ଅଦେଖା ଆବରଣ ପରି ସେ ମୂଳରୁ ରହିଛି, ଆପେ ଆପେ ଅନୁଭବ କରିହୁଏ, ବସ୍ତୁର ସ୍ଥୂଳ ରୂପକୁ ଘେରି ରହିଛି ଭାବରୂପ, ରେଡ଼ିଓ ଯନ୍ତ୍ରରେ ଦୂରରେ ସଙ୍ଗୀତ ଧରିଲା ପରି ମଣିଷର ଭାବନା ଯନ୍ତ୍ରରେ ବସ୍ତୁର ଭାବରୂପ ସ୍ଥଳର ଭାବରୂପ ଆପେ ଧରା ଦେଇ ମନରେ ଆଙ୍କିଛି ଚିତ୍ର, ବଣ ପର୍ବତ, ପାହାଡ଼ି ଚାଷୀ, କ୍ଷେତ ଖଳା କରି କୁଡ଼ିଆ ଗାଈ ଗୋରୁ ଏସବୁ ମିଶି ଏ ସ୍ଥଳରେ ସମଷ୍ଟି ଆଉ ତାର ଭାବରୂପ ଏ ଚାଷୀ ମୂଲିଆ ସାଧାରଣ ମଣିଷଙ୍କ ସରଳ ଜୀବନ, ଏକା ଡୋରିରେ ଛନ୍ଦାଛନ୍ଦି ଦୁନିଆସାରା ।

ରକ୍ତପାତ ନୁହେଁ, ଗୁଳିଫାୟାର ନୁହେଁ ।

ଲକ୍ଷ୍ମୀନାରାୟଣ ଉତ୍ସାହରେ କହି ଲାଗିଲା, ଯେପରିକି ପ୍ରତ୍ୟକ୍ଷଦର୍ଶୀ ଐତିହାସିକ ଘଟନା ବର୍ଣ୍ଣନା କରୁଛି, ଯେପରିକି ସେହି ବର୍ବରତାର ବଳ ତା ନିଜଠି ଟହଟିଛି ଆଉ ବୁଢ଼ା ହାଡ଼ ଚେଇଁ ଉଠିଛି ଏକ ରକ୍ତଲୋଲୁପ ଅରଣା ପ୍ରେରଣାରେ, ନିଜେ ନିଜର କୃତିତ୍ୱ ବଖାଣିଲା ପରି ଆପଣା ଭିତରର 'ମୁଁ ପଣ' ମଣିଷର ବୁଢ଼ା ଦେହକୁ ବଢ଼ି ପାଣିରେ ବୁଡ଼େଇ ଦେଇ ବୋହିଯାଉଛି ଲୋକଦେଖାଣିଆ ସୁଅ ପରି କହି ଲାଗିଛି-

''ଢୁଢ଼ା ଢୁଢ଼ା ଗୁଳି ଫାଏର ଚାଲିଲା, ଢାଇ ଢ଼ାଇ ଢାଇ ଢାଇ- ଚଢ଼େଇମରା ନଳି ନୁହେଁ ତ, ଏକଦମ୍ ବିଲାତି ରାଇଫଲ୍, ତାର ଗୋଟାଏ ଗୋଟାଏ ମାଡ଼ରେ ହାତୀ ଟଳି ପଡ଼େ, ପଥର ଫାଟିଯାଏ, ସେଇଥିରେ ଫଉଜ ଚଳେଇ ଦେଲେ ଢାଇ ଢାଇ ଢାଇ, ତା' ଉପରେ ତା ଉପରେ, ଆଖି ପିଛୁଡ଼ାକେ ଟଳି ପଡ଼ିଲେ ଗଦା ଗଦା । ସେଇଠୁ କ'ଣ ହେଲା ନା ଯେତେ ମନ୍ଦା ମନ୍ଦା ଥିଲେ ସବୁ ପ୍ରାଣ ବିକଳରେ ଧାଇଁଲେ, ହେଲେ କ'ଣ ହେବ ? ଜୀବନ ବଞ୍ଚେଇବାକୁ ଦଉଡ଼ି ପଳେଇଲେ ଠିକ୍ ମରଣ ମୁହଁକୁ, ପଛଆଡ଼େ ଏଇ ଝୁପାବାଇ ନାଳ ଯେମିତିକି ପାଟି ଆଁ, କରି ଅପେକ୍ଷା କରିଥିଲା ପାଇଲେ ଗିଳିଦେବ, ଅଣନିଶ୍ୱାସରେ ଦଉଡ଼ି ପଡ଼ିଲେ ଗୋଟିକା ଗୋଟି ତାରି ଭିତରେ, ଗୋଟି ଗୋଟି କ'ଣ ? ମନ୍ଦା ମନ୍ଦା, ଗୋଠ ଗୋଠ, ପଡ଼ିଲେ ଆଉ ଚୂନା ହେଲେ, ଖାଲି ତ ସେଇ ଆଡ଼କୁ ଯେମିତିକି ବାର୍‌ହା ପଲ ଗାତରେ ଗଡ଼ି ପଡ଼ନ୍ତି ସେମିତି । ଆଗରେ ଗାତ ଖୋଳା ହୋଇଥିବ ପଛରୁ ବାର୍‌ହା ପଲକୁ ହୁରୁଡ଼େଇ ଦବ, ଧାଇଁ ଧାଇଁକା ଗୋଟାଏ ସେ ଗାତରେ ପଡ଼ୁ ପଡ଼ୁ ପଛରୁ ଫେର୍ ଆଉ ଗୋଟାଏ, ଫେର୍ ଆଉ ଗୋଟାଏ ବାଟ ବଙ୍କେଇ ଅନ୍ୟ ବାଟେ ଚାଲିଯିବାକୁ ତାଙ୍କର ବୁଦ୍ଧି ପାଏ ନାହିଁ । ସେମିତି କୋଡ଼ି କୋଡ଼ି ପଚାଶ ପଚାଶ ଶହ ଶହ କନ୍ଧ ସେହି ନାଳ ଭିତରକୁ ଡ଼େଇଁ ପଡ଼ିଲେ ଗଦା ଗଦା । ଅସଲ ଗୁଳି ମାଡ଼ରେ ଯଦି ମରିଥିବେ କୋଡ଼ିଏ ପଚିଶ ତା'ର ଦଶଗୁଣ ମଲେ ସେ ଗାଡ଼ ଭିତରେ, ସେଇଠୁ-''

ଲକ୍ଷ୍ମୀନାରାୟଣ ମୁହଁ ପୋଛିଲା, ତା'ପରେ କହି ଲାଗିଲା, ''ସେଇଠୁ ଫଉଜ ରୁଣ୍ଡେଇ ପକେଇଲେ ଗୁଳିଖାଇ ମରିଥିବା ଆଉ ଛଟପଟ ହେଉଥିବା ଲୋକଗୁଡ଼ାକୁ, ଆଉ ଘୋଷାରି ଘୋଷାରି ଗଡ଼େଇ ଦେଲେ ଝୁପାବାଇ ନାଳ ଭିତରକୁ, ଯାଃ, ସମସ୍ତେ ଗଦା ହୋଇଥାନ୍ତୁ ଏକାଠି, ଉପରେ ତୋଟା ତଳେ ଆଉ ଚିହ୍ନ ବର୍ଣ୍ଣ ନାହିଁ । ସେଇଥର ଯେ ଅସଲ ଗାଁ ଗୁଡ଼ାକର ଅଣ୍ଟା ଭାଙ୍ଗିଗଲା । ଓଃ କମି ଅବାଧ ହୋଇଥିଲେ ସେମାନେ ? ଏକା ଜିଦ୍ ଧରିଥିଲେ ଆମେ ବଡ଼ ବଡ଼ ରାଜାଙ୍କୁ ଖଜଣା ଦବୁ ନାହିଁ, ସାନ ରାଜା ଆମ ରାଜା ଆମେ ତାକୁ ଖଜଣା ଦବୁ, ଯାଅ ତମର ଯାହା କରିବାର

ଅଛି କର, ଆମେ ସାନ ରାଜାଙ୍କୁ ଖଜଣା ଦେବୁ । ଯେମିତି ସରକାର ବଳ ଚଳେଇଲେ ପାଇକ ପଠେଇଲେ ମୁଖିଆ ମୁଖିଆ ଲୋକଙ୍କୁ ବାନ୍ଧି ପକେଇଲେ ସେମିତି ଗାଁ' ଗାଁ' କେ ଚାଲିଥିଲା ମେଳି, ମାଇକିନିଆମାନେ ବି ମାତି ଉଠିଥିଲେ, ସୋପ୍ରେଣ୍ଟ ସାଇବ ଉପରେ ତତଲା ପେଜ ଢ଼ାଳି ଦେଇଥିଲେ, ତାଙ୍କର ଯେଉଁ ତେଜ, ଯେଉଁ କଥା, ସେତେବେଳକା କଥା ମହାବିଷମ, କୌଣସି ଗାଁକୁ ନିରାପଦରେ ପଶିବାକୁ କାହାରି ସାହସ ପାଉ ନ ଥିଲା, ବାଘକୁ ସିନା ଡର, ସେ ମଣିଷକୁ ସମସ୍ତେ ଡରୁଥିଲେ ବାଘଠୁଁ ବେଶୀ । ଆଉ ଏମିତି ଠା ଠାକେ ଗୁଳି ଫାଏର ପରେ ସତେକି ଦେବତା ଓହ୍ଲେଇଗଲା, କାଳିସୀ ଛାଡ଼ିଗଲା, ସବୁ ତେଜ କୁଆଡ଼େ ପାଣି ପାଟିଗଲା, ଫେର୍ ସେ ଲୋକ ବଡ଼ ରଜାକୁ ଖଜଣା ଦେଲେ, ପାଇକ ଦେଖିଲେ ଗୋଡ଼ତଳେ ପଇଲେ, ତୁଣ୍ଡ ମୁଣ୍ଡ ନ ଫିଟେଇ ଯୋଉ କାମ ବରଗିଲେ ସେ କାମ କଲେ, ପୃଥ୍ୱୀ ଶୀତଳ ହେଲା । କିନ୍ତୁ ସେତିକି କରିବା ଆଗରୁ ଏ ସଡ଼କ କର ଝୋଲା ଭିତରେ ମଢ଼ ପଡ଼ିଗଲା ଗଦା ଗଦା, ଏଠି ବେଶୀ ହୋଇଗଲା, ଆଉ ପାଞ୍ଚ ସାତ ଜାଗାରେ ଉଣା ଋଣା । ସେ କାଳର ଦିନ- ଆଃ-ଛାଡ଼ ।''

ପିଲା ଦିହେଁ ତୁନି ହୋଇ ଶୁଣୁଥିଲେ, ଏ ଯେପରିକି ଇତିହାସ ବହିରୁ ଏକ ସୁନ୍ଦର କାହାଣୀ । ପିଲାଳିଆ ଅନୁଭୂତିରେ ହାଣକାଟ, ଯୁଦ୍ଧ, ଗୁଳି ଢୁ ଢା ଏଗୁଡ଼ାକ ପଶେ ନାହିଁ, ଖାଲି କାହାଣୀ, ଶୁଣିବାକୁ ମଜା, ଦେଖିବାକୁ ମନ, ଗପିବାକୁ ଭାବିବାକୁ ଖୁବ୍ ଉସାହ ।

କୁନା ପଚାରିଲା, ''ଏ କ'ଣ ଯୁଦ୍ଧ ? ଆମ ବହିରେ ଅଛି ମହମ୍ମଦ ଘୋରି ଭାରତ ଆକ୍ରମଣ କଲାବେଳେ ଏମିତି କେତେ ଲୋକ ମରିଥିଲେ ।'' ତାର ବୟସ ନଅ, ଷଷ୍ଠଶ୍ରେଣୀରେ ପଢ଼େ, ମଣିଷ ମରିବା ଦେଖି ନାହିଁ, ପଚାରିଲା ''ସତେ, କହ, ସେ କ'ଣ ଯୁଦ୍ଧ ?''

ଲକ୍ଷ୍ମୀନାରାୟଣ କହିଲା ''ନାହିଁ ତାକୁ କହନ୍ତି ଫିତୁରି ।''

ମିନି କହିଲା ''ହଃ ଫିତୁରି ନା କତୁରି ? ଯୁଦ୍ଧ ତ' । ଏମିତି କେତେ ଯୁଦ୍ଧ କଥା ବହିରେ ଲେଖା ଅଛି ।'' ତାର ବୟସ ଦଶ, ସପ୍ତମ ଶ୍ରେଣୀରେ ପଢ଼େ । କହିଲା, ''ଯେ କି ଯୁଦ୍ଧ, ଆହୁରି କେତେ ବଡ଼ ବଡ଼ ଯୁଦ୍ଧ କଥା ଆମେ ପଢ଼ିଚୁ-ମହାଭାରତ ଯୁଦ୍ଧ, ପାନିପଥ ଯୁଦ୍ଧ, ପଲାସୀ ଯୁଦ୍ଧ, ପୃଥିବୀ ମହାଯୁଦ୍ଧ-''

କୁନା କହିଲା, ''ସେ ତ ଯୁଦ୍ଧ, ସେଥିରେ ବେଶୀ ଲୋକ ମରିଥିଲେ, ଯେ ତ ଖାଲି ଫିତୁରି ।'' ଲକ୍ଷ୍ମୀନାରାୟଣ ଇତିହାସ ପଢ଼ିନାହିଁ, ପିଲାଙ୍କ ଅବଜ୍ଞାରେ ତେଜିଉଠି ସେ କହିଲା, ''ଏଥିରେ ବେଶୀ ଲୋକ ମରିଥିଲେ । କେତେ ମଲେ କିଏ ଲେଖା କରିଚି, ଓଃ ସେ ଯେଉଁ ମାଡ଼ କ'ଣ କହିବି ସେ କଥା, ଆମେ ଥାଉଁ ଫଉଜ ସାଙ୍ଗେ ସାଙ୍ଗେ ବାଟ ବତେଇ ଦେବାକୁ, ନହେଲେ ଏ ବଣ ପାହାଡ଼ ଭିତରକୁ ବାଟ ପାଆନ୍ତେ ସେମାନେ କେମିତି ? ସେମାନେ ଗୋଡ଼େଇ ଗୋଡ଼େଇ ମାରୁଥାନ୍ତି, ଘରେ ଥିଲେ ଗାଁ ଘେରୋଉ କଲେ, ପାହାଡ଼ରେ ଚଢ଼ିଲେ ପାହାଡ଼ ଘେରୋଇ କଲେ, ପଳେଇବେ କୋଉବାଟେ ?''

କୁନା କହିଲା ''ସେମାନେ ଯେ ମଲେ ସେଇଠୁଁ କ'ଣ ହେଲେ''

ଲକ୍ଷ୍ମୀନାରାୟଣ କହିଲା, ''ହେବେ ଆଉ କ'ଣ ? ଭୂତ ହୋଇଥିବେ ।''

ମିନି କହିଲା, ''ଭୂତ !'' ସେ ତା ବାପା ପାଖକୁ ଘଷି ହୋଇ ବସିଲା ।

କୁନା କହିଲା, ''ମିଛ କଥା, ବାପା ତ କହିଛନ୍ତି ଭୂତ ନାହିଁ, ମୁଁ ସେ କଥା ପଚାରୁନାହିଁ । ସେ ଯେଉଁମାନେ ମଲେ, ନାଳରେ ପଡ଼ି ରହିଲେ, ତାଙ୍କ ମୁର୍ଦ୍ଦାର କ'ଣ ହେଲା ?''

ଲକ୍ଷ୍ମୀନାରାୟଣ କହିଲା, ''କ'ଣ ଆଉ ହବ ? ନାଳ ଭିତରଯାକ କାଉ,ଶାଗୁଣା, ବିଲୁଆ ସମସ୍ତେ ଆସି ଗଦା ହେଲେ, ଯେତେ ଆସିଲେ ଏତେ ମଢ଼କୁ କେମିତି ସଫା କରିବେ ? ସବୁ ପଚିଗଲା, ଗନ୍ଧ ଯେ ଏ ବାଟେ କେହି ଚାଲିଯିବାକୁ ଉପାୟ ନାହିଁ, ତିନି କୋଶ ଯାକେ ଖାଲି ସଢ଼ା ଗନ୍ଧ, ସବୁ ସଢ଼ି ପଚି ମାଟି ହୋଇଗଲା । ହାଡ଼ଗୁଡ଼ାକ ଏଠି ସେଠି ପଡ଼ି ରହିଥାଏ । କେତେବର୍ଷ ଯାକେ ସେ ବି ମାଟି ପଥର ହୋଇଯିବ । ଆଉ ତା କଥା କିଏ ପଚାରେ ? କନ୍ଧ ମେଳି ତ ଭାଙ୍ଗିଗଲା''

କୁନି କହିଲା, ''ଯେଉଁମାନେ ମଲେ ତାଙ୍କ ଘରେ କାନ୍ଦିଲେ ନାଇଁ ?''

ଲକ୍ଷ୍ମୀନାରାୟଣ କହିଲା ''କାନ୍ଦିବେ ନାଇଁ ? ଗାଁ' ଗାଁ' ମାଇକିନିଆମାନେ ରୁଣ୍ଡ ହୋଇ ବାହୁନି ବାହୁନି, ଆସନ୍ତି ଝୁପାବାଇ ନାଳ ପାଖକୁ । ବସି ବସି କାନ୍ଦନ୍ତି, ଭୂଇଁରେ ଗଡ଼ନ୍ତି, ଆପଣା ବାଳକୁ ଓଟାରି ଓଟାରି ଛିଣ୍ଡାନ୍ତି, ନଖରେ ଆଞ୍ଚୁଡ଼ି ଆଞ୍ଚୁଡ଼ି ମୁହଁ ଗାଲ ଚିରି ଚିରି ନହୁନୁହାଣ ହ'ନ୍ତି, ସଞ୍ଜହେଲେ ପୁଣି ଚାଲି ଯାଆନ୍ତି । ଶୁଣାହେଲା କୋଉ କୋଉ ମାଇକିନିଆ କାନ୍ଦ କାନ୍ଦି ବାୟାଣୀପରି ହୋଇ ନାଳକୁ ଡେଇଁପଡ଼ି ଆତ୍ମହତ୍ୟା କଲେ, କାନ୍ଦନ୍ତୁ କି ମରନ୍ତୁ, ଆଉ କ'ଣ ଗଲା ଲୋକ ଫେରି ଆସିବ ? ଯେ ମଲା, ସେ ମଲା । ତାଷ ବେଉସା ବର୍ଷେକାଳ ବନ୍ଦ ରହିଲା, ପୁଣି ଚାଲିଲା । ସେତିକିବେଳେ କେତେ ବାହାର ଲୋକେ ପଶି ଆସି ଶସ୍ତାରେ ସବୁ ଜମି କିଣିନେଲେ, ଲୋକେ ତ ଡରିଗଲେ, ଯେ ଯାହା ମନ କଲା ତା ପାଇଗଲା । ଆସିଲେ ଜମି କିଣା ସାହୁକାର, ଋଣ ଦେବା ସାହୁକାର, ଜମି ସବୁ ସେମାନେ ନେଲେ, ଲୋକଙ୍କୁ ମୂଲଦେଇ ଖଟେଇଲେ, ରଜାକୁ ଖଜଣା ବାନ୍ଧିଲେ, ସବୁ ସୁବିଧା ହୋଇଗଲା । ଆମେ ଯୋଉ ଗାଁକୁ ଗଲେ ନିଶ୍ଚୟ ଚାରି ପାଞ୍ଚଜଣ ଭଦ୍ରଲୋକ ଥିବେ, ଶୁଣ୍ଢି କି ବ୍ରାହ୍ମଣ କି କୁମୁଟି ଭଲ ଅସାର ବୁଝିବେ, ଚର୍ଚ୍ଚା କରିବେ, ପିଣ୍ଡାରେ ବସା ଦେବେ, ଆଉ ଏ କନ୍ଧ ତ ତାଙ୍କ ତଳିଆ ଲୋକ; କିଏ ଋଣ ଧାରିଚି, କିଏ ଖମ୍ବାରି, କିଏ ଗୋତି । ଭଦ୍ରଲୋକ ଆସି ଗୋରୁ ଚରେଇଲା ପରି ମଣିଷ ଚରେଇଲେ, ଚାହୁଁ ଚାହୁଁ ବଡ଼ଲୋକ ହେଲେ, ଏଇ ପାଖରେ ତ କେଡ଼େ କୋଠା କରିଚି ଚକୁଳି ପାଢ଼ୀ-''

ଚକୁଳି ନାଁଟା ଶୁଣି ଦୁଇ ପିଲା କିରିକିରି ହୋଇ ହସିଲେ, କହିଲେ ''ଚକୁଳି ଫେର୍ ମଣିଷର ନାଁ ହୁଏ ?''

''ଏଣେ ସେମତି ହୁଏ'' ଲକ୍ଷ୍ମୀନାରାୟଣ କହିଲା, ''ଚକୁଳି ପାଢ଼ୀ ଭାରି ବଡ଼ଲୋକ, ଭାରି ମଉଜି ଲୋକ, ବିଭା ହେଲାକୁ ଛାଡ଼ି ତାର ପଚାଶଟା ଭାରିଯା, ଅମାରର ଲେଖା ନାଇଁ, ସେ ପୁଣି ମେମ୍ବର ହେଇଚି, ଲୋକଙ୍କ ଭିତରେ ବାଘ, ଏମିତି କୌଶଳ ଜାଣେ ଯାହାକୁ ଇଚ୍ଛା ତାକୁ ସାଧ କରିଦେବ । ତାର ଗଣ୍ଡା ଗଣ୍ଡା ମକଦ୍ଦମା -''

ଲକ୍ଷ୍ମୀନାରାୟଣ ଏ ଦେଶର ବୁଢ଼ା ଚପରାସି । ମେଳି ଭାଙ୍ଗିବା ପାଇଁ ଗୁଳି ଫାୟାର୍‌କୁ ସେ ସମ୍ଭ୍ରମ କରେ । ଚକୁଳି ପାଢ଼ୀ ସମ୍ମାନ କରେ, ତାର ଆଦର୍ଶ ବାଘ ପରି ମଣିଷ । ତେଣୁ ସେ ଠିଆ ଠିଆ ନିଶ ରଖିଛି, ବିନା ପଗଡ଼ିରେ ଖାଲି ମୁଣ୍ଡ ଦେଖାଏ ନାହିଁ । ତା ପୋଷାକର ଯତ୍ନ ନିଏ, ହୁଦାର ପିତଳ ଫାଳକୁ ତେନ୍ତୁଳି ପାରରେ ରଗଡ଼ି ଜିକି ଜିକି କରେ । ତା ଛଡ଼ା ସେ ପ୍ରସିଦ୍ଧ ଶିକାରୀ ।

ବାଘମାରୁ, ହରିଣମାରୁ, ମୟୂରମାରୁ, ହରଡ଼ଚଢ଼େଇ ମାରୁ । ସେ ଶିକାର କରି ମାଂସ ବିକେ, ଖାଏ ବି । ଶ୍ରୀଚରଣ ତାର ନୂଆ ଉପରସ୍ଥ କର୍ମଚାରୀ, ଦି' ମାସ ହୋଇନାହିଁ ବଦଳି ହୋଇ ଆସିଛି । ଲକ୍ଷ୍ମୀନାରାୟଣ ଖୋଜୁଛି ତାକୁ ଆପଣା ଅଭିଜ୍ଞତା, ସାଧାରଣଜ୍ଞାନ, କର୍ମକୁଶଳତା ଓ ବିଚକ୍ଷଣତା ଦେଖାଇ ବଶ କରିନେବ । ଦିହେଁ ଯାଇଥିଲେ ରାୟଗଡ଼ରୁ କଲ୍ୟାଣସିଂପୁର । ଶ୍ରୀଚରଣର ଛୁଆ ଦିହେଁ ଯାଇଥିଲେ ନୂଆ ରାଜ୍ୟ ଦେଖି, ତା'ପରେ ଫେରୁଥିଲେ ।

ଗୁଳି ଫୁଟା ବର୍ଣ୍ଣନା ମାଡ଼ରେ ଶ୍ରୀଚରଣର ସ୍ୱପ୍ନ ଭିଣିଭିଣା ହୋଇ ଛିଣ୍ଡିଯାଇଥିଲା, ତା'ପରେ ସେ ଦେଖିଥିଲା ବିଭୀଷିକା, ତା'ପରେ ସେ ଆଉ ଲକ୍ଷ୍ମୀନାରାୟଣ କଥାକୁ କାନ ଦେଇନାହିଁ, କିନ୍ତୁ ସେହି ବର୍ଣ୍ଣନା ସହିତ ସମାନ୍ତରାଳ ରେଖା ଟାଣିଲା ପରି ତାର ମନେ ମନେ ଚିନ୍ତା, ଦୁଃଖ, ଶୋକ, ରାଗର ତୋଫାନ ଚାଲିଥିଲା । ତାର ଘର ନୁହେଁ ଏ ଦେଶରେ, ସେ ପୁରୀ ଜିଲ୍ଲା ମଫସଲର ଲୋକ । ରେଳରେ ଆସିଲେ ଖୋର୍ଦ୍ଧା, ବ୍ରହ୍ମପୁର, ବିଜୟନଗର, ପାର୍ବତୀପୁର, ତାପରେ ରାୟଗଡ଼ା, କଟକରୁ ୩୩୩ ମାଇଲ୍, ସ୍ଥଳର ଦୂରତାଠୁ ଆହୁରି ଅଧିକ ଦୃଶ୍ୟର ପାର୍ଥକ୍ୟ । ପ୍ରକାଣ୍ଡ ପ୍ରକାଣ୍ଡ ଲଣ୍ଡା ପର୍ବତ, ପୁଣି ଜଙ୍ଗଲ, ଖାଲ ଢ଼ିପ, ସବୁଠୁ ବେଶୀ ଅଲଗା ଏ କନ୍ଧ ଲୋକେ, ତାଙ୍କର ବୋଲି, ବେଶ୍ ରୀତିନୀତି । କିନ୍ତୁ ସେ ଅନୁଭବ କରିଥିଲା, ଏମାନେ ବି ସେହି ମଣିଷ । ଯାହା ହେଉ ତାଙ୍କ ବୋଲି, କି ଭେକ, କି ଦେଶ ।

ଏମାନେ ବି ସେହି ମଣିଷ, ଯେ ଭଲ ପାଏ, ରାଗେ, ଖୁସିରେ ହସେ, ଦୁଃଖରେ ଦୀର୍ଘଶ୍ୱାସ ପକାଏ, କାହା ସଙ୍ଗେ ନ ଲାଗି ଆପଣା ଧନ୍ଦାରେ ଲାଗିରହି ବିନା ଗଣ୍ଡଗୋଳରେ ଜୀବନ ବଞ୍ଚିବାକୁ ଚାହେଁ । ଗୋରୁ ପରି ମଣିଷ, ଖୋଜେ କିଛି ସୁସ୍ଥି, କିଛି ଶାନ୍ତି, ଆଉ ଗୋଠର ସଙ୍ଗସୁଖ । ଗଛ ପରି ମଣିଷ, ପତ୍ର ଝାଡ଼ି ଝାଡ଼ି ଦିନ ବିତାଏ, ଖରା ବରଷା ସହେ । ତୁଣ୍ଡରେ ବଡ଼ ବଡ଼ କଥା କହିଲେ ବି ପ୍ରକୃତରେ ସେ ହାଣକଟାକୁ ଭୟକରେ, ମରିବାକୁ ଡରେ, ମାରିବାକୁ ଘୃଣା କରେ, ଚମକେ, ମୋକ୍ଷ ଓ ନିର୍ବାଣର ଯଶ ଗାଇ ଗାଇ ସେ ସଂସାର ଜଞ୍ଜାଳକୁ ହିଁ ଭଲପାଏ ।

ତଥାପି ତା ଉପରେ ପଡ଼େ ହତିଆରର ମୂନ ଆଉ ଦାନ୍ତ ।

ଲୋଭ ଓ ସ୍ୱାର୍ଥର ଅରଣା ବାହିନୀ ଖଣ୍ଡା ଉଞ୍ଚେଇ ଗୁଳି ଫୁଟେଇ ଘୋଡ଼ା ଛୁଟେଇ ଧାଇଁ ଆସିଛନ୍ତି କେତେ ନଇ ନାଳ ସମୁଦ୍ର ପାହାଡ଼ ପାରି ହୋଇ ଜଗତଯାକର ଏହି ସାଧାରଣ ମଣିଷକୁ ଶିକାର କରିବାକୁ, କେତେଥର ! କେତେଥର !

ପଛେ ପଛେ ଆସିଛି ସେହି ବର୍ବର ଅଭିଯାନର ଫଳଭୋଗୀ ଔପନିବେଶିକ ନୀତି, ବିଜେତା ହେବ ଭୂମିର ମାଲିକ, ବିଜିତ ସେ ଜମିରେ ମଜୁରିଆ । ବିଜିତ ଶସ୍ୟ ଉପୁଜେଇବ, ବିଜେତା ତାକୁ ବୋହି ନେବ । ଶସ୍ତାରେ ନହଲେ, ସୁଧ ମଜୁରାରେ, ଭାଗ ମଜୁରାରେ । ବିଜିତର ଶ୍ରମକୁ ଏକାଠି କରି ବିଜେତା ଗଢ଼ିବ ଫ୍ୟାକ୍ଟରୀ, ଇଣ୍ଡଷ୍ଟ୍ରି, ପ୍ରକାଣ୍ଡ ପ୍ରକାଣ୍ଡ କଳକାରଖାନା, କ୍ରମେ ବିଜିତ ଭୁଲିଯିବ । ସେ ବିଜିତ, ଭାବିବ ଏ ଭଗବାନଙ୍କ ନିୟମ, ଏ ପରିସ୍ଥିତିରେ ଈଶ୍ୱରସୃଷ୍ଟ ପରିବେଷ୍ଟନୀ ଭିତରେ ସେ ଜଣେ ଖଟିଖିଆ କାରିଗର, ତାର ଭାଗ ଏତିକି, ଆଉ ଅଧିକ ନୁହେଁ ।

ମଣିଷ ମଣିଷମାଂସ ଖାଏନାହିଁ, ଖାଏ ସେହି ମାଂସର ଅସ୍ତିତ୍ୱର ଉପକରଣ, ଭାତ, କ୍ଷେତ । କେତେଥର ଆସିଛନ୍ତି, ଏ ଅରଣା ବାହିନୀ ! ଅନାର୍ଯ୍ୟ ପରେ ଦ୍ରାବିଡ଼, ଦ୍ରାବିଡ଼ ପରେ ଆର୍ଯ୍ୟ

କଳାଲୋକଙ୍କ ପଛେ ଧଳାଲୋକ, ଆଉ ଏକା କଥା- ଦକ୍ଷିଣ ଆଫ୍ରିକା କି ମାଳୟ, କି ସିଂଗାପୁର, କି କଲ୍ୟାଣସିଂ ପୁର ।

ଆଉ ସେହି ହତିଆର ମାଡ଼ର ବିଜୟ ପଛେ ପଛେ କିମିଆଁ ପାଣି ଛିଞ୍ଚି ବିଜିତର ମନକୁ ଆୟତ୍ତ କରିବା ପାଇଁ ଆସିଛନ୍ତି ଧଳା ଭେକ ପିନ୍ଧି ଧର୍ମଯାଜକ ପୁରୋହିତ ଦଳ, ବେଦ ଗାଇଛନ୍ତି । ଶାନ୍ତ ସଂଯତ ଭାଷାରେ ବୁଝାଇଦେଇଛନ୍ତି- ଜୀବନ କ୍ଷଣଭଙ୍ଗୁର, ପରକାଳ ସ୍ୱର୍ଗ ଓ ଭଗବାନଙ୍କଠି ବିଶ୍ୱାସ କରି ଶାନ୍ତିରେ ରହ, ଯାହା ହେଲା ହେଲା, ସେ ଯାହା ମାଡ଼ିବସିଲା ମାଡ଼ିବସିଲା, ତୁମେ ଆଉ ଖୁରି କର ନାହିଁ, ଭଜନ କର ।

ସଞ୍ଜ ସରି ରାତି ଆସିଛି । ଗାଡ଼ି ଚାଲିଛି ରାୟଗଡ଼ା ଅଭିମୁଖରେ । ସେମାନେ ଆଉ ନାହାନ୍ତି, ନୁଖୁରା ବାଳ ଉଡ଼େଇ କୌପୁନୀ ପିନ୍ଧି ଢିପ ଖେପାଖେ ଦଳ ଦଳ ହୋଇ ଜମା ହୋଇଥିଲେ ଯେଉଁମାନେ ଶ୍ରୀଚରଣର ଚେତନା ଭିତରେ, ନିମନ୍ତ୍ରଣ କରୁଥିଲେ ପରା-''ଆସ, ଆମ ଗାଁରେ ରହିଯା, ଏ ତୁମ ଘର, ଏମାନେ ତୁମ ପିଲାଛୁଆ, ଏ ତୁମ ଗାଁ, କାରଣ ତୁମେ ବି ମଣିଷ ।'' ସେମାନେ କଚ୍ଚନା ଗଢ଼ା ମଣିଷ, ସେମାନେ ଆଉ ନାହାନ୍ତି ଗୁଳିମାଡ଼ରେ ଟଳିପଡ଼ିଛନ୍ତି । ଏ ମାଟିରେ ମିଶିଛି ତାଙ୍କ ହାଡ଼ ମାଂସ । ସେହି ଖଦିରା ହାଡ଼ ଉପରେ ନାଲି ରାସ୍ତା ଲମ୍ବି ରହିଛି ସାପ ପରି, ଆଉ କଳ ଗାଡ଼ି ଚାଲୁଛି, ଅଟକୁନାହିଁ, ମାଡ଼ି ଦଳି ଚାଲିଛି । ସେଥିରେ ବସି ରହିଛି ସେ ନିଜେ -ଶ୍ରୀଚରଣ ।

ଅନ୍ଧାରରେ ଖାଲି ସାମ୍ନା ରାସ୍ତାରୁ ଦିଶୁଛି କିଛି ଦୂର, ମଟର ଆଲୁଅ ପଡ଼ିଛି, ଆଗରେ ମଟର ଚାଳକ ଓ ଲକ୍ଷ୍ମୀନାରାୟଣ, ପଛରେ ଶ୍ରୀଚରଣ ଓ ତାର ପିଲା ଦିହେଁ । ଲକ୍ଷ୍ମୀନାରାୟଣ ବନ୍ଧୁକରେ ଗୁଳି ପୂରେଇ ଠିକଣା ହୋଇ ଅପେକ୍ଷା କରିଛି, ସେ କହି ଦେଇଛି ମଟର ଆଲୁଅରେ ଜନ୍ତୁର ଆଖି ଜୁଳୁଜୁଳୁ ଦିଶିବ, ଦୂରରୁ ବାରିହେବ, ତେଣୁ ପିଲା ଦିହେଁ ତୁନିହୋଇ ଅନେଇଁ ବସିଛନ୍ତି, ସମସ୍ତେ ମିଶିଯାଇଛନ୍ତି ଗୋଟାଏ ଅନ୍ଧାରି ଉତ୍ପ୍ରେକ୍ଷାରେ ।

ଆଗରେ ବାରମ୍ବାର ଦିଶୁଛି ଗୋଟାଏ ଲେଖା ସାନ ସାନ ନାଲି ଆଖି । ଯେପରିକି ରାସ୍ତାରେ କିଏ ନିଆଁ ଟିକିଏ ଥୋଇ ଦେଇ ଯାଇଛି । ସେ ଗୋଟିଏ ଚଢ଼େଇର ଆଖି, ମଟର ଆଲୁଅରେ ପୋତକ ବେଢ଼ନ୍ତି ବୋଲି, ଜରିକିଆ ହୋଇ ବସି ପୋତକ ଖାଏ, ପାଖକୁ ଆସିଲେ ଫଡ଼ଫଡ଼ ହୋଇ ଉଡ଼ିଯାଏ । ଦୂରରୁ ଦିଶିଲା ଏଥର ଯୋଡ଼ି ଆଖିର ସାବ୍‌ଜା ଆଲୁଅ, ଡ୍ରାଇଭର ଆସ୍ତେ କହିଲା, ''ବାଘ'' ଆଉ ବେଗ ବଢ଼େଇଲା । ଲକ୍ଷ୍ମୀନାରାୟଣ ବନ୍ଧୁକ ଟେକିଲା । ରାସ୍ତାର ବାଁରୁ ଡାହାଣକୁ ପ୍ରାଣ ବିକଳରେ ଧାଇଁଗଲା ଗୋଟିଏ ବିଲୁଆ । ସ୍ଥାନେ ସ୍ଥାନେ ଆହୁରି ଜୁକୁଜୁକୁ ଆଖି, ଆହୁରି ବିଲୁଆ । ଆଲୁଅରେ ଜଳକା ହୋଇ ରହିଗଲା ଠେକୁଆଟିଏ, ମଟର ପାଖକୁ ଆସନ୍ତେ ଜୀବନ ଲୋଭରେ ଆଗେ ଆଗେ ଧାଇଁ ଚାଲିଲା, ପାରୁ ନାହିଁ, ମଟର ତା ପାଖକୁ ମାଡ଼ି ଆସୁଛି । କି ଛଟପଟ ! ବଡ଼ ବଡ଼ କାନ ଦୋଟି ଟେକି ଦେଇଛି, ଟିକି ଲାଞ୍ଜଟି ଉପରକୁ ଟେକି ଦେଇଛି ତା ତଳ ପାଖର ଧଳା ଗାର । ପିଲା ଦିହେଁ ଉଲ୍ଲାସରେ ପାଟି କଲେ, ଏଥର ସେ ଗାଡ଼ି ତଳେ ମରିବ । କିନ୍ତୁ ଶ୍ରୀଚରଣ କହିଲା, ''ଡ୍ରାଇଭର, ଗାଡ଼ି ସ୍ଲୋ କର, ସେ ଯାଉ ।'' ଗଲା ସେ; ରାସ୍ତାର ଗୋଟାଏ କରରେ ବୁଦା ଭିତରେ ଶରଣ ନେଲା । ଲକ୍ଷ୍ମୀନାରାୟଣ କହିଲା, ''ଭାରି ନରମ ମାଂସ ଆଜ୍ଞା, ଭାରି ସୁଆଦ ।'' ଶ୍ରୀଚରଣ କହିଲା, ''ଥାଉ, ଆମେ ଖାଉ ନାହୁଁ ।'' ଅନ୍ଧାରରେ ହଠାତ୍ ବାହାରି

ପଡ଼ନ୍ତି ଠେକୁଆ । ଖଣ୍ଡେ ଦୂର ଦଉଡ଼ନ୍ତି, ପୁଣି ଲୁଚିଯାଆନ୍ତି । ବେଳେ ବେଳେ ମଟର ସାମ୍ନାରେ ହାବୁଡ଼ନ୍ତି ଗୋଟିଏ ଲେଖାଁ ବିଲୁଆ, ସେମାନେ ବି ଜୀବନ ବିକଳରେ ଦଉଡ଼ନ୍ତି, ମରଣ ହାତରୁ ଆତ୍ମରକ୍ଷା କରିବାକୁ ପ୍ରାଣୀ ଅସମ୍ଭବକୁ ବି ସମ୍ଭବ କରେ, ଘଣ୍ଟାକେ ୩୦ ମାଇଲ । ଜୁକୁଜୁକୁ ଆଖି ରାସ୍ତାଏ ରାସ୍ତାଏ, ଠେକୁଆର, ବିଲୁଆର । ଆଗରେ ଫେର୍ ଦି'ଟା ବଡ଼ ବଡ଼ ସାବ୍‌ଜା ଆଖି । ଭୂଇଁ ପତନରୁ ଦି'ହାତ ଉଞ୍ଚରେ ଦିଶୁଛି । ଏଥର ଲକ୍ଷ୍ମୀନାରାୟଣ କହିଲା, ''ବାଘ'' ଶ୍ରୀଚରଣ ଉତ୍ସୁକ ହୋଇ ଚାହିଁଲା । ମାଡ଼ି ଚାଲିଲା ଗାଡ଼ି ଉଲ୍‌କା ପରି, ଆଗରେ ମଟର ଆଲୁଅକୁ ଅନାଇଁ ଠିଆହୋଇଛି ଜନ୍ତୁ, ଦେହଯାକ ପଟା ପଟା । ଡ୍ରାଇଭର କହିଲା, ''ପଟାଳିଆ ବାଘ, ମହାବଳ ।'' ଲକ୍ଷ୍ମୀ ନାରାୟଣ ବନ୍ଧୁକ ଟେକିଲା । କିନ୍ତୁ ଜନ୍ତୁଟା ଥରେ ଏକରକୁ ଥରେ ସେକରକୁ ଡିଆଁ ମାରି ସିଧା ଦଉଡ଼ିଲା । ବାଘ ନୁହେଁ ଗୋଟିଏ ଗଧିଆ । ବାଘ ପରି ଦେହର ବର୍ଣ୍ଣ, କୁକୁର ପରି ମୁହଁ, ଦି'ଟା ଗୋଡ଼ ଛୋଟ, ଦି'ଟା ଗୋଡ଼ ଉଞ୍ଚ, ଡେଇଁ ଡେଇଁ ଗଲାବେଳେ ଏମିତି ବିକୃତ ଭଙ୍ଗୀରେ ଯାଏ ଦେଖିଲେ ହସମାଡ଼େ । ଗଧିଆ ହଟହଟା ହୋଇ ଧାଇଁଛି, ପିଲା ଦିହେଁ ହସୁଛନ୍ତି । ଶ୍ରୀଚରଣ କହିଲା ''ଥାଉ ଲକ୍ଷ୍ମୀନାରାୟଣ, ଯାଉ ସେଇଟା ।'' ଗଧିଆ ବି ଗଲା । ଆଗରେ ମେଞ୍ଚାଏ ଅନ୍ଧାର ମଟର ଆଗରେ ଏକର ସେକର ହେଉଛି । ପାଖକୁ ଗଲାବେଳକୁ ଗୋଟାଏ ବଡ଼ ଭାଲୁ । ମୁହଁକୁ ତଳକୁ ପୋତିଛି । ପଛଗୋଡ଼ ଦି'ଟାରେ ଭୂଇଁରେ କୁଦୁଛି, ବୁଲିଯାଉଛି ଏକର ସେକର । ପିଲାଏ ପାଟି କଲେ ''ମାର ମାର ।'' ବାପା କହିଲେ, ''ନା ।'' ଭାଲୁ ବି ରକ୍ଷା ପାଇଲା । ତା'ପରେ ଶୂନଶାନ ରାସ୍ତା ।

ପିଲାଏ ହତୋତ୍ସାହ ହେଲେ, ''ଯାଃ ବାପା, ମାରିଲ ନାହିଁ !''

କହିବେ ତ ପିଲାଏ, ଶ୍ରୀଚରଣ ଭାବିଲା, କେବଳ ବୟସରେ ପିଲା ନୁହନ୍ତି, ମନରେ ପିଲା, ଯେତେ ଯେତେ ଦାୟିତ୍ୱହୀନ ଅପରିଣାମଦର୍ଶୀ ସ୍ୱାର୍ଥବାଦୀ ଗୋଷ୍ଠୀ କି ମଣିଷ, ସମସ୍ତେ ଚିତ୍କାର କରିବେ ମାର ମାର, ମାର । ସମସ୍ତେ ଯେଉଁମାନେ ବାଇସ୍କୋପ୍ ଘରେ ବସି ପର୍ଦ୍ଦାରେ ଦେଖନ୍ତି ହାଣକାଟ, କଳ୍ପନାରେ ଦେଖନ୍ତି, ଉପନ୍ୟାସରେ ଦେଖନ୍ତି, ବିଭୀଷିକା ଅନୁଭବ ନକରି ଉପଭୋଗ କରନ୍ତି ବଳର ଉତ୍କର୍ଷ, ସେହି ମରଣ ଉଲ୍ଲାସରେ ତାଙ୍କର ଅହମିକା ଗଢ଼ି ଉଠିବା ଚରିତାର୍ଥ କରିବେ ହିଁ ସେମାନେ, ସେହିମାନଙ୍କୁ ଏକାଠି କରି ପଛଆଡ଼େ ଥାଇ ସ୍ୱାର୍ଥର କୂଟନୀତି ସଫଳ କରିବାକୁ ଚକ୍ର କରୁଥିବେ ଯେତେ ସ୍ଥିରବୁଦ୍ଧି ଚକ୍ରୀ, ସେମାନଙ୍କ ଉତ୍ସାହକୁ ଖୋରାକ ଯୋଗାଉଥିବେ । ପରେ ଯୁଦ୍ଧ ଭୂଇଁରେ ଗୁଳି ମୁହଁରେ ମାରି ଭୂତ ହେବାକୁ ଓହ୍ଲେଇ ପଡ଼ିବେ ଏହି ଅପରିପକ୍ୱ ବୟସ ଓ ଚିନ୍ତାର ଘଟଗୁଡ଼ିକ, ଆମେରିକାର ସ୍କୁଲଛାତ୍ର ବନ୍ଧୁକ ଧରି ଓହ୍ଲେଇ ପଡ଼ିବ ଏସିଆର ରଣଭୂମିରେ । ଶ୍ରୀଚରଣ ଭାବିଲା, ''ଅନ୍ଧାରରେ ଆଲୁଅ ଦେଖି ଧାଇଁ ଆସିଥିଲା ବଣର ବାସିନ୍ଦା ସାନ ଠେକୁଆ, ଆଲୁଅ ପଡୁ ପଡୁ ସେ ବି ଯାଇଥାନ୍ତା ଉଡ଼ି, ଯାଃ; ମରିନାହିଁ, ବଞ୍ଚିଛି । କିନ୍ତୁ କେତେଜଣ ଛାଡ଼ିବେ ? କେତେଦିନ ବଞ୍ଚିବ ? ତାପରେ ଏଇ ରାସ୍ତା ଥିବ, ଏଇ ମଟର ଚାଲିବ, ଠେକୁଆ ନଥିବ ମରିବାକୁ ।''

ଭାବନାକୁ ଅଟକେଇ ଦେଇ ଦୂରରେ ପୁଣି ପାଖକୁ ପାଖ ଦୁଇଟା ସାବ୍‌ଜା ଟର୍ଚ୍ଚଲାଇଟ୍ ବଡ଼ ବଡ଼ ଆଲୁଅ, ଦୁଇ ଆଲୁଅ ମଝିରେ ଫାଙ୍କ ଅଛି, ତକୁ ଅଢ଼େଇ ହାତ ଉଞ୍ଚରେ । ଆସ୍ତେ ଏକର ସେକର ହେଉଛି, ଧାଇଁ ପଳେଇ ନାହିଁ । ଧୀରେ ଚାଲିଗଲା ରାସ୍ତାର ଦାଁ ପାଖକୁ, ମୁଣ୍ଡ ନୁଆଇଁ ଅପେକ୍ଷା କଲା । ଗାଡ଼ି ଅତି ଚଞ୍ଚଳ ପହଞ୍ଚି ଗଲାଣି ତ ପାଖକୁ । ଡ୍ରାଇଭର ଆସ୍ତେ କହିଲା 'ବାଘ'

ଗାଡ଼ିକୁ ରାସ୍ତାର ଏପାଖୁ ସେପାଖ ବୁଲେଇ ଦେଇ ମଟର ଆଲୁଅ ପକେଇ ରଖିଲା ବାଁ ପାଖକୁ । ସମସ୍ତେ ଚୁପ୍‌ଚାପ୍ । ପ୍ରକୃତରେ, ଗୋଟାଏ ବଡ଼ ଚିତା ବାଘ । କାନ ପାରି ଦେଇଛି, ପାଟି ଅଳ୍ପ ମେଲା, ଆଖି ଦାଉ ଦାଉ ଜଳୁଛି, ବାଁ ପାଖରେ ଖାଲ ଭିତରେ ଗଛ ଏପାଖେ ଠିଆହୋଇ ରହି ଆଲୁଅକୁ ଚାହିଁଛି । ଫୁଲୁକା ମୁହଁ ଉପରେ ନିଶ ଯୋଡ଼ିକ ଏଢର ସେକର ହଲୁଛି, ଯେପରିକି ସେ ପବନରୁ ବିପଦକୁ ବାରିବାକୁ ଚେଷ୍ଟା କରୁଛି । ଅନ୍ଧାରରେ ବନ୍ଧୁକ ସଳଖି ନେଇଛି ଲକ୍ଷ୍ମୀନାରାୟଣ, ଡ୍ରାଇଭର ଗାଡ଼ି ଅଟକେଇ ବାଘ ମୁହଁକୁ ଟର୍ଚ୍ଚଲାଇଟ୍ ପକେଇଛି । ହେଇ ତିରିଶ ହାତ ଦୂରରେ ମୋଟେ । ତାପରେ ବନ୍ଧୁକର ଢାଇ, ବାଘଟା ତଳେ କଚାଡ଼ି ହୋଇ ପଡ଼ିଲା, ପୁଣି ଦେକଟେକି ଘୁଷୁରି ଘୁଷୁରି ହୋଇ ଘୁଞ୍ଚିଗଲା ପଥର ସେପାଖକୁ । ଲକ୍ଷ୍ମୀନାରାୟଣ ରାସ୍ତାକୁ ଓହ୍ଲେଇ ପଡ଼ିଲାଣି । ବନ୍ଧୁକ ଉଞ୍ଚେଇ ପୁଣି ଦି'ଥର ଢୋ ଢୋ । ବାଘଟା ଗୋଡ଼ ହାତ ଛାଟି ପାଖ ଅରାକ ଆମ୍ପୁଡ଼ି ପକାଇଲା, ତାପରେ ଛେଚା ହୋଇ ପଡ଼ିରହିଲା ।

ପିଲାଏ ପାଟି କଲେ, ''ଯିବା, ଯିବା-''

ଲକ୍ଷ୍ମୀନାରାୟଣ ସମସ୍ତିଙ୍କୁ ଅଟକିବାକୁ ନିର୍ଦ୍ଦେଶ ଦେଇ ବନ୍ଧୁକରେ ଗୁଳି ପୁରେଇ ଦଶହାତ ଆଗକୁ ଗଲା, ସିଧା ବାଘର ମୁଣ୍ଡକୁ ଲକ୍ଷ୍ୟ କରି ପୁଣି ଏକ ଗୁଳି ଛାଡ଼ିଲା, ବାଘର ଛଟପଟ ବି ନାହିଁ । ଏଥର ସେ ଆହୁରି ଆଗକୁ ଗଲା, ବାଘ ଉପରକୁ ଖଣ୍ଡେ ପଥର ଫୋପାଡ଼ିଲା, ତଥାପି ତାର ଉଁ ଚୁଁ ନାହିଁ । ଆଗକୁ ଯାଇ ପାଟିକଲା ''ମଲାଣି, ଆସନ୍ତୁ ସମସ୍ତେ ।''

ଏଥର ଉଲ୍ଲାସର ସୀମା ନାହିଁ । ଆଗେ ଆଗେ ଧାଇଁଯିବା ପାଇଁ ଶ୍ରୀଚରଣ ପିଲାଙ୍କ ସଙ୍ଗେ ବି ପ୍ରତିଦ୍ୱନ୍ଦିତା କଲା, ସମସ୍ତିଙ୍କର ଉଚ୍ଚାଟ କୁହାଟ, ଲକ୍ଷ୍ମୀନାରାୟଣ ବାଘର ଲାଙ୍ଗୁଡ଼ ଧରି ଘୋଷାରି ଘୋଷାରି ମଢ଼ଟାକୁ ଆଣୁଚି ମଟର ପାଖକୁ, ଏ ଯେପରିକି ତାର ସାଧାରଣ କାମ, ବୀରତ୍ୱ ସେ ପ୍ରକାଶ କରୁନାହିଁ । କହିଲା ''ବୃଥାଟାରେ ଚାରିଟା ଗୁଳି ଖର୍ଚ୍ଚ ହେଲା । ସେଇ ପ୍ରଥମ ଗୁଳିଟାରେ ହିଁ ଚଳିଥାନ୍ତା ଯେ, ଖାଲି ଟିକିଏ ଡେରି ହୋଇଥାନ୍ତା, ଭଲ କରି ମରିଚି କି ନାହିଁ ଜାଣିବାକୁ ଲାଗନ୍ତା ଘଣ୍ଟାଟିଏ, ନଇଲେ ବାଘ ଘାଉଡ଼ା ହୋଇ ଗାଳି ପାରି ଶୁଏ, ପାଖକୁ ଗଲେ ମାଡ଼ି ବସେ ।''

''ଭଲ ଲାଖ ଅଛି ତମର ଲକ୍ଷ୍ମୀନାରାୟଣ, ଅନ୍ଧାରେ ଅନ୍ଧାରେ ଲାଖ କରିନେଲ, ମୁଁ ଏମିତିକା ଖୁବ୍ କମ୍ ଦେଖିଛି ।'' ଶ୍ରୀଚରଣ ଅଭିନନ୍ଦନ ଜଣାଇଲା, କିନ୍ତୁ ଲକ୍ଷ୍ମୀନାରାୟଣ ତା'ର ସବୁ ବଳ ପ୍ରୟୋଗ କରି ସେହି ବାଘକୁ ଘୋଷାରି ଲାଗିଛି, ହାତ ଲଗେଇଲାଣି ଡ୍ରାଇଭର, କହିଲା, ''ଖୁବ୍ ବଡ଼ ଚିତାବାଘଟାଏ ଏଇଟା । ଲକ୍ଷ୍ମୀନାରାୟଣ ପୁରସ୍କାର କେତେ ଟଙ୍କା ପାଇବ ?''

ଲକ୍ଷ୍ମୀନାରାୟଣ କହିଲା, ''ଯେଡ଼େ ବଡ଼ ହେଲେ କ'ଣ ହେବ ? ଚିତାବାଘ ତ, କୋଉ ମହାବଳ ହେଇଚି ? ମହାବଳ ହେଲେ ସିନା ପୁରସ୍କାର ଶହେ ଟଙ୍କା, ଏଇଟା ପାଇଁ ମିଳିବ ମୋଟେ ପଇଁତ୍ରିଶ ଟଙ୍କା, କି ଆହୁରି କମ୍, କେତେ ଦେବେ କେଜାଣି ?''

''ନା ନା, ତୁମେ ପଇଁତ୍ରିଶରୁ କେବେ ଊଣା ପାଇବ ନାହିଁ'' ଶ୍ରୀଚରଣ କହିଲା, ''ଛାଲଟା ମୁଁ ନେବି ଟ୍ୟାନିଂ କରିବାକୁ ପଠେଇବି ।''

''ଛାଲ ତ ଆପଣଙ୍କର, ଆଉ କିଏ ନେବ ?''

ପିଲାଏ ନାନା ପ୍ରଶ୍ନ କଲେ, ଏ ମଣିଷ ଖାଇଛି ନା ନାହିଁ, ୟାଠୁ ଆଉ ବଡ଼ ବାଘ ଅଛି

କି ନାହିଁ, ଇତ୍ୟାଦି । ଆଉ ତାର ନିଶ, କାନ, ଲାଞ୍ଜ, ମୁଣ୍ଡ ସବୁ ଆଉଁସିବାକୁ ଲାଗିଲେ । ଦୁଇ ପିଲା ବୀରପରି ନାଚୁଥାନ୍ତି, ସେମାନେ ବି ଏ ଶିକାରରେ ଭାଗୀ । କୁନା କହିଲା, ''ନା, ମୁଁ ଆଗ ବାଘକୁ ଦେଖିଲି ।'' ମିନି କହିଲା, ''ନା, ମୁଁ ଆଗ ଦେଖିଲି ।'' ଦୁହିଁଙ୍କ ଭିତରେ ମାଡ଼ଗୋଳର ସୂତ୍ରପାତ ହେଲା । ଶ୍ରୀଚରଣ ଦୁହିଁଙ୍କୁ ଗାଳି ଦେଇ କହିଲା, ''ଚାଲ ଗାଡ଼ିକୁ ।''

କେବଳ ସେହି ବାଘ କଥା, ପ୍ରତ୍ୟେକ ଅନୁଭବ କଲେ ଯେପରିକି ସେ ନିଜେ ଏ ବାଘକୁ ମାରିଛନ୍ତି । ମହାସମାରୋହରେ ଟେକାଗଲା ସେ ବାଘ ମଟରର ହୁଡ୍ ଉପରକୁ, କାଠିକର ପାଠ, ଦଉଡ଼ି ବାନ୍ଧି ଟେକି ଥୋଇ ମୁଣ୍ଡେଇ କାଖେଇ ତିନିଜଣ ଲୋକ ଝାଳନାଳ । ଅବଶେଷରେ ସେ ହୁଡ୍ ଉପରେ ହିଁ ଅନ୍ତିମଶଯ୍ୟାରେ ଶୋଇରହିଲା, ଅବିକଳ ମାଡ଼ିବସିବା ଭଙ୍ଗୀରେ, ମୁଣ୍ଡ ରହିଲା ମଟରର କାଚ ଆଡ଼କୁ ।

ମଟର ଷ୍ଟାର୍ଟ ହେଲା, ଶୁଭିଲା ସତେକି ପଛରୁ କ'ଣ ମ୍ୟାଉଁ ମ୍ୟାଉଁ ବୋବାଳି । ମଟରର ଘଡ଼ଘଡ଼ରେ ସେ ବୁଡ଼ିଗଲା ।

କୁନା କହିଲା, ''କ'ଣ ଏମିତି ବୋବେଇଲା ବାପା, ଯେମିତି ବିଲେଇ ବୋବାଏ-''

ଶ୍ରୀଚରଣ କହିଲା, ''ଧେତ୍ ପାଗୁଳା ଟୋକା, ବାଘ ତ ମରିଚି ଆଉ ବୋବେଇବ କିଏ ?''

ମଟର ଚାଲିଲା, କାଚ ବାଟେ କୁନି ଟର୍ଚ୍ଚ ଆଲୁଅ ପକେଇଲା; ପାଟିକଲା ''ହେଇ ଦେଖ ପଛରେ ସେମିତି ଫେର୍ ଦି'ଟା ଆଖି ଦିଶୁଛି ।''

ଲକ୍ଷ୍ମୀନାରାୟଣ ଆଖି ପିଛୁଳାକେ ପଛକୁ ଅନେଇ ଦେଲା, ମଟର ଚାଲିଛି; ଦୂରେଇ ଯାଇଛି । କିଛି ନ ଦେଖିଲା ପରି ମୁହଁ ବୁଲେଇ ନେଲା ।

କୁନା କହିଲା, ''କାହିଁ କୋଉଠି କାହା ଆଖି ଦିଶୁଛି ?''

ମିନି କହିଲା, ''ମୁଁ ନିଜେ ଦେଖିଲି, ଟର୍ଚ୍ଚ ଆଲୁଅରେ ଜଳ ଜଳ ଦିଶିଲା ।''

ଶ୍ରୀଚରଣ କହିଲା, ''ଏଥର ତୁ କାନ୍ଥରେ ବାଡ଼ରେ ଖାଲି ବାଘ ଆଖି ଦେଖିବୁ ଯେ... ।''

ଲକ୍ଷ୍ମୀନାରାୟଣ ଅନ୍ଧକାରରେ ହସିଦେଲା । ଏମାନେ ଜାଣନ୍ତି ନାହିଁ, ସେ ଜାଣେ ।

ଗାଡ଼ି ବୁଲେଇବାକୁ କହି ଉତ୍‌କ୍ଷିପ୍ତା ବାଘୁଣୀର ମୁହାଁମୁହିଁ ହେବାକୁ ତାର ଇଚ୍ଛା ନାହିଁ । ଭାବିଲା ଆଜି ଏ ଗୋଟାକହିଁ ଯଥେଷ୍ଟ, ଫେର୍ ଆଉ ଦିନେ ।

ଶ୍ରୀଚରଣ ଜାଣିପାରିଲା ନାହିଁ । ଚାଲି ଯାଉଥିବା ମଟର ପିଠି ଆଡ଼ ଆଲୁଅକୁ ଅନାଇଁ ରାସ୍ତା ଉପରେ ବହୁତ ବେଳ ଠିଆ ହୋଇ ରହିଲା ଗୋଟିଏ ବାଘୁଣୀ; କୁଦି ବୁଲୁଥିଲେ ତା'ର ଛୁଆ ଯୋଡ଼ିକ, ତା'ପରେ ସେ ବାଘ ଘୋଷରା ହୋଇଥିବା ବାଟ ଶୁଙ୍ଘି ଶୁଙ୍ଘି ବାଘ ଗୁଳି ଖାଇଥିବା ସ୍ଥାନକୁ ଗଲା, ଟୋପା ଟୋପା ରକ୍ତରେ ଜିଭି ଲଗାଇଲା । ମୁହଁ ଟେକି ଗର୍ଜନ ଛାଡ଼ି ଧାଇଁଗଲା । ପୁଣି ରାସ୍ତା ଉପରକୁ, ସେଠୁ ପୁଣି ସେହି ଗୁଳିମାଡ଼ ଜାଗାକୁ, ପୁଣି ରାସ୍ତା ଉପରକୁ, ଦୁଃଖରେ ରାଗରେ ଗର୍ଜନ କରି କରି ସେହି ଅରାଜଯାକ ଖେଦି ବୁଲିଲା, ସେତେବେଳେ ମଟର ନାହିଁ, ମଣିଷ ନାହାନ୍ତି, ଠେକୁଆ କାହିଁ କେଉଁ ବୁଦା କନ୍ଦିରେ ଲୁଚିଲେଣି । ରହି ରହିକା ରଡ଼ି ରଡ଼ି ପିଲା ଦୁହିଁଙ୍କୁ ସଙ୍ଗରେ ଧରି ସେ ଏଥର ପର୍ବତଆଡ଼େ ଚାଲିଗଲା ।

ମଟର ଚାଲିଛି, ହୁଡ୍ ଉପରେ ନଡ଼ ନଡ଼ ହେଉଛି ବାଘର ଶବ ।

''ଓଃ ! ବାଘଟା ମଲା ତାହେଲେ !'' ଶ୍ରୀଚରଣ ଭାବିଲା । ବାରମ୍ବାର ସେହି ଶବ ଆଡ଼କୁ ଚାହିଁ ନିଜକୁ କହି ଲାଗିଲା, ''ଏ ମରିଚି, ଏ ମରିଚି ।'' ଏତେ ତା'ର ବଳ, ଏଡ଼େ ଭୟାନକ ସେ, ସେ ମରିଚି ।

କେତେ ଜନ୍ତୁ ଖାଇଥିବ, ହୁଏତ ମଣିଷ ଖାଇଥିବ, ଆଉ ସେ ଖାଇବ ନାହିଁ । ଏମିତି ମରିବେ ଯେତେ ହିଂସ୍ରକ ପ୍ରାଣୀ ସମସ୍ତେ; ତେବେ ପୃଥିବୀ ନିରାପଦ ହେବ ।

ସାମ୍ନାରେ ସେହି ଶବଟା ମୁଣ୍ଡ ହଲାଉଚି ।

ଶ୍ରୀଚରଣ ମନେ ମନେ ତା ବିରୁଦ୍ଧରେ ଗଢ଼ିଲାଗିଲା ଅଭିଯୋଗ ତାଲିକା- ଏ ବାଘ, କାଛନିକ ମଣିଷଖାଏ, ଯାକୁ ମାରିବାକୁ କାରଣ ରହିଚି । ସମାଜର ଶତ୍ରୁ, ମଣିଷର ଶତ୍ରୁ, ତାକୁ ମାରି ପକାଇବାହିଁ ଉଚିତ୍ ।

ମନ ଭିତରୁ ସା' ଦେଲା ବହି-ଘୋଷା ଦର୍ଶନ ଶାସ୍ତ୍ର-ମଣିଷ ଆବଶ୍ୟକ ଥିବାରୁ ମାରେ, ଭଗବାନ ନିଜେ ତ ଅର୍ଜୁନଙ୍କୁ ବୁଝାଇଛନ୍ତି-ସେଥିରେ ମାୟା ନାହିଁ, ମମତା ନାହିଁ, ପ୍ରୟୋଜନ ପଡ଼ିଲେ ମାରିବାହିଁ କର୍ତ୍ତବ୍ୟ ମନ ସକସକ ନାହିଁ । ଉପରୋଧ ନାହିଁ । ଶତ୍ରୁକୁ ମାରିବା ହିଁ କର୍ତ୍ତବ୍ୟ ।

ହିଂସା, ହିଂସା-ଭୂଇଁ ନାଲି ହୋଇଯାଇଛି ରକ୍ତରେ, ଆକାଶ ଭିଣିଭିଣା ହୋଇଯାଇଛି ଆର୍ତ୍ତଚିତ୍କାରରେ, ତଥାପି ହିଂସା ସରିନାହିଁ, ଯୁଦ୍ଧ ସରିନାହିଁ, ଯୁଗ ପରେ ଯୁଗ ବୋହିଯାଉଛି । ସେମାନେ ପଡ଼ିଛନ୍ତି ଝୁପାବାଇ ନାଳ ଭିତରେ, ସେହିମାନେ ଯେ ମାରି ପାରିନାହାନ୍ତି ମରିଛନ୍ତି ।

ଶ୍ରୀଚରଣ ଦାନ୍ତ ଚିପି ଚିପି ଗମ୍ଭୀର ହୋଇ ବସିଲା, ଶୋଷଣ ପୋଷଣ ଯୁଦ୍ଧ ଆକ୍ରମଣର ଐତିହାସିକ ତାଣ୍ଡବ ଲୀଳା ଯେପରିକି ତାର ଆଖି ଆଗେ ବୁଲି ଲାଗିଲା ବାଇସ୍କୋପ ପରି ।

ଆଉ ସାମ୍ନାରେ ସେ ଦେଖୁଥିଲା ସେଇ ମଲା ବାଘଟାକୁ । ଜଗତଯାକର ଅନ୍ୟାୟ, ଅସମତା, ଅବିଚାର ଓ ଅତ୍ୟାଚାର କଥା ଯେତେଥର ସେ ମନେପକାଉଛି, ଯେତେଥର ତାତି ଉଠୁଛି ଭାବି ଭାବି, ସେତେଥର ଯେପରିକି ନୂଆ ହୋଇ ପୁଣି ଥରେ ବାଘଟା ମରୁଛି, ଆଉ ତା ମନରେ ଉଲ୍ଲାସ ଆସୁଛି-ସେ ବିଜୟୀ । ହିଂସାର ପ୍ରତୀକ-ସେ ମରିଛି । କି ଉପାୟରେ ମଲା ସେ ଏତେ ଭାବୁନାହିଁ, ମରିଛି, ଉଦ୍ଦେଶ୍ୟ ପୂରଣ ହୋଇଛି, ଏହି ଯଥେଷ୍ଟ ।

ଚରମ ଶାନ୍ତି ପ୍ରତିଷ୍ଠା ପାଇଁ ଯୁଦ୍ଧ କରିବାକୁ ହିଁ ହେବ ବାରମ୍ବାର, ଶ୍ରୀଚରଣ ଭାବିଗଲା, ତାପରେ ଆଉ ଯୁଦ୍ଧ ହେବନାହିଁ । ଯେପରିକି ସେହି ଶେଷ ଯୁଦ୍ଧରୁ ସେ ଫେରୁଛି, ଏଥର ପୃଥିବୀ ନିରାପଦ, ଆଉ ସାମ୍ନାରେ ସେ ବାଘର ଶବ ।

ଅହିଂସା କଥା ଭାବୁଭାବୁ କେତେବେଳୁ ସେ ହିଂସାର ଉପାସକ ହୋଇ ସାରିଲାଣି, ଶାନ୍ତି ପ୍ରତିଷ୍ଠା କଥା ଭାବୁ ଭାବୁ ମନ ଭିତରେ ଛୁଟିଲାଣି ବିକ୍ଷୋଭ, ମନ ନୁଆଁଇ ଘାସ ପରି ହୋଇ ଅରକ୍ଷ ମଳିମୁଣ୍ଡିଆଙ୍କ ପାଇଁ ସହାନୁଭୂତିରେ ତରଳିବାକୁ ଆରମ୍ଭ କରି ସେ ହୋଇସାରିଲାଣି ଗର୍ବିତ, ମଦାନ୍ଧ; ସେହି ପତନରେ ତାର ମୁଁ' ପଣ ଦମ୍ଭ ମାଟି ପାଇ ସଳଖ ହୋଇ ଠିଆହେଲାଣି -ଆତ୍ମତୃପ୍ତି ପାଇଁ ସେ ମନେ ମନେ ହେଲାଣି ଦୁର୍ବଳର ରକ୍ଷାକର୍ତ୍ତା ଅଭିନୟରେ ଟିଣଖଣ୍ଡାଧରା ଲଢୁଆ ବୀର, ଗୋଡ଼ହାତ ଛାଟି ଚିତ୍କାର କରି ରଙ୍ଗମଞ୍ଚ କମ୍ପାଇ ଦେଉଛି ।

ଗାଡ଼ି ଚାଲିଛି । ପିଲାଏ ନାନା ପ୍ରକାର ମନ୍ତବ୍ୟ ଦେଉଛନ୍ତି, ଲକ୍ଷ୍ମୀନାରାୟଣ ତାଙ୍କ କୁତୂହଳ ମେଣ୍ଟାଉଛି ନ ହେଲେ ତୁନି ହୋଇ ବସି ରହୁଛି । ଶ୍ରୀଚରଣ ଦେଖୁଛି ଅନ୍ଧାର ଭିତରେ ସାମ୍ନାରେ ଗୋଟିଏ ବୋଲି ରାସ୍ତା, ଆଉ ହୁଡ୍ ଉପରେ ମଲା ବାଘ, ସେ ଆଉ ମଣିଷ ଖାଇବ ନାହିଁ ।

ବଣ ସରିଲା, ଖାଲ ଢ଼ିପ ପାହାଡ଼ିଆ ବାଟ ସରି ସରି ଆସିଲା, ଏଥର ସମତଳ ଉପରେ ସ୍ଥାନେ ସ୍ଥାନେ ଲୋକାଳୟ, ଦୂରରୁ ଟେଇଁଉଠେ ତାର ମିଞ୍ଜି ମିଞ୍ଜି ଆଲୁଅ, ପାଖ ହୁଏ, ଦିଶେ ଘର ବାରି ଆଉ ଏଠି ସେଠି ଦଳ ଦଳ ଲୋକ । ଶ୍ରୀଚରଣ ଖିଆଲ ପଡ଼ିଲା-ବିଜୟ ଖାଲି ହାସଲ କଲେ ଯଥେଷ୍ଟ ନୁହେଁ, ତାକୁ ପ୍ରଚାର କରିବାକୁ ପଡ଼ିବ । ଲୋକେ ଦୂରରୁ ଦେଖିବେ ମଟର ଗାଡ଼ିର ଆଲୁଅ, ବାଘକୁ ଦେଖି ପାରିବେ ନାହିଁ । ତେଣୁ ସେ ମଲା ବାଘ ଉପରକୁ ଟର୍ଚ୍ଚ ଆଲୁଅ ଟିପି ପୋପାଡ଼ିଲା । ପଛରୁ ପିଲା ଦୁହେଁ ଆନନ୍ଦରେ ତାଳି ମାରିଲେ, ଡ୍ରାଇଭର ତାର ଉଦ୍ଦେଶ୍ୟ ବୁଝି ଲୋକ ଦେଖି ଗାଡ଼ିର ବେଗ ଧିମେଇ ଦେଲା । ଲୋକେ ଦେଖିଲେ, ଆଁ କରି ଦେଖିଲେ, ଚମକିପଡ଼ି ଦେଖିଲେ, ଠେଲା ପେଲା ହୋଇ ପାଖକୁ ଆସି ବେକ ଉହୁଙ୍କେଇ ଦେଖିଲେ, ଜୀଅନ୍ତା ପରି ଦିଶୁଛି, ମରି ଶୋଇଛି ବାଘ । ଆଶ୍ଚର୍ଯ୍ୟ, ଭୟ, ଆପଦ କଟିବାର ସ୍ୱସ୍ତି-ନିଶ୍ୱାସ, ଆଲୋଚନା, ଶ୍ରୀଚରଣ ଅନ୍ଧାରରେ ମୁରୁକେଇ ହସିଲା, ସତେକି ନୀରବରେ ଅଭିନନ୍ଦନ ଗ୍ରହଣ କରୁଛି ।

ଏଥର ସହର, ତାର ବସା, ରାତି ଦଶ । ଗାଡ଼ି ଅଟକିବା ପୂର୍ବରୁ ପିଲା ଦୁହେଁ ପାଟିକରି ଉଠିଲେ । ଗାଡ଼ି ରହିଲା, ପିଲା ଦୁହେଁ ଦଉଡ଼ି ପଳେଇଲେ ଅନ୍ୟମାନଙ୍କୁ ଡାକିବାକୁ । ଲକ୍ଷ୍ମୀନାରାୟଣ ଓହ୍ଲେଇ ପଡ଼ି ଜିନିଷ ଓହ୍ଲେଇବାରେ ଲାଗିଲା । ଶ୍ରୀଚରଣ ଧୀରେ ଓହ୍ଲେଇଗଲା ।

ମୁହୂର୍ତ୍ତକେ ଲାଗିଗଲା କଳବର । ଘରର ସମସ୍ତେ ରୁଣ୍ଡହେଲେ, ଆସିଲେ ପାଖ ପଡ଼ିଶା । ବଣରୁ ମରି ବାଘ ଆସିଛି । ସମସ୍ତିଙ୍କ ଚେତନାରେ ବ୍ୟାପିଛି ସେ ।

''ଏଇ ତା ନିଶ ।''

''ଏଇ ତା ଲାଞ୍ଜ ।''

''କେଡ଼େ ବଡ଼ ବଡ଼ ତା ଦାନ୍ତ, ବାପରେ ଏଇଥିରେ ମଣିଷ ଖାଏ ।''

''ଦେହ କେଡ଼େ ପାଲିସ, ରକ୍ତ ପିଇ ମାଂସ ଖାଇ କେଡ଼େ ଡଉଲ ଡାଉଲ ହେଇଚି !''

''ଯା ଛାଲଟା ଟ୍ୟାନିଂ କରିବାକୁ ପଠେଇବା''

''ମୁଣ୍ଡଟା ବି ପଠେଇବା, ଅବିକଳ ଜଅନ୍ତା ବାଘ ପରି ଦିଶିବ ।'' ନାନା ପ୍ରକାର ମନ୍ତବ୍ୟ । କୁତୂହଳ ସମସ୍ତିଙ୍କର ।

'ସବା ସାନ ପିଲାଟି ଶୋଇପଡ଼ିଛି, ଦେଢ଼ବର୍ଷର ଛୁଆ । ଶ୍ରୀଚରଣ ସ୍ତ୍ରୀ ଆପେ ବାଘ ଦେଖିସାରି ସାନ ପୁଅକୁ ଉଠେଇ ନେଲେ, ଗୋଳମାଳରେ ବେଶୀ କଷ୍ଟ ପଡ଼ିଲା ନାହିଁ ତାର ନିଦ ଭାଙ୍ଗିବାକୁ ।

''ହେଇ ଦେଖ୍ରେ ବାବୁ ବାଘ, ମରି ଯାଇଛି, ଡର୍ ନାହିଁ ।'' ସାନ ପିଲା ମା' କାଖରୁ ଓହ୍ଲେଇବାକୁ ଡରୁଛି, ମୁହଁ ବୁଲେଇ ଦେଇ ଥରେ ଥରେ ଦେଖି ନେଉଛି ବାଘକୁ । ''ନାଇଁରେ ବାବୁ, ଡର୍ ନାହିଁ, ମରି ଯାଇଛି ।'' ତାର ଭାଇଭଉଣୀମାନେ ବାଘ ପାଖେ ବସିଛନ୍ତି, କିଏ ନିଶ ଓଟାରୁଛି, କିଏ ଲାଞ୍ଜଟାକୁ ଟେକି ଆପଣା ବେକରେ ଲଦୁଛି । ଚାରିଆଡ଼େ କେତେ ନଲ୍ଟଣ, କେତେ ଲୋକ ।

ଛୋଟ ପୁଅର ସାହସ ହେଲା । ବାଘ ପାଖେ ସେ ବି ବସିଲା । ଆସ୍ତେ ଆଖି ବୁଲେଇ ଆଣିଲା ତାର ଦେହ ଉପରେ, ଭରସି ଭରସି ହାତ ବଢ଼େଇଲା, ଆଉଁସିଲା ।

ତା ପରେ ଛୋଟ ପିଲା ତାର ଟିକି ମନ୍ତବ୍ୟ ଦେଲା-

''ମରିଗଲା ! ଆହା, -ଚୁ-ଚୁ-ଚୁ-''

ମୁଣ୍ଡକୁ ଝାଙ୍କି ଝାଙ୍କି ମଲା ବାଘ ପାଇଁ ବିଳାପ କଲା ନିଷ୍ପାପ ଶିଶୁ-

''ମରିଗଲା ! ଆହା ! ଆହା ! ଚୁ-ଚୁ-ଚୁ-''

ସମସ୍ତେ ହସି ଉଠିଲେ-

ଶ୍ରୀଚରଣ ପାଖରେ ଠିଆହୋଇଥିଲା, ଚମକି ଆସି ଥକ୍କା ହୋଇ ଅନାଇ ରହିଲା । ହିଂସା ଉପରେ ହିଂସାର ବିଜୟ ଭୁଷୁଡ଼ି ପଡ଼ିଲା ଟିକି ଛୁଆର ମନ୍ତବ୍ୟରେ । ବାଘ ଶିକାର ବେଳଠୁଁ ସେ ଝୁପାବାଇ ନାଳର କାହାଣୀ ଭୁଲିଯାଇଥିଲା, ଏଥର ମନେପଡ଼ିଲେ ସେମାନେ, ସେହି ଲହୁଲୁହାଣ କନ୍ଧ ଲୋକ, ସେହି ବିକଳାଙ୍ଗ ଶବ କୁଢ଼ କୁଢ଼, ସେଠୁ ପୁଣି ନୂଆ ହୋଇ ରକ୍ତଧାର ଛୁଟିଲା, ଧରଣୀ ତିନ୍ତିଲା, ମନ ଭିତରେ ହାହାକାର ପୂରିଗଲା, ମୃତ୍ୟୁର ପ୍ରତିକାର ନୁହେଁ ମୃତ୍ୟୁ, ଅତ୍ୟାଚାରର ବଦଳ ନୁହେଁ ଅତ୍ୟାଚାର, ମାରଣ ନୁହେଁ ମାରଣ ନିରୋଧର ବାଟ ।

ଏଥର ସେ ବିଜୟୀ ନୁହେଁ, ହତ୍ୟାକାରୀ ।

ବାଘ ଶିକାରର ନିଶା ଛାଡ଼ିଗଲା, ଶ୍ରୀଚରଣ ମୁଣ୍ଡପୋତି ଘର ଭିତରକୁ ଚାଲିଗଲା ।

# ଦୁଇ ବୀର

ଦୁହେଁ ଦୁହିଁଙ୍କୁ ଭାବୁଥିଲେ ବୀର ବୋଲି । ଜଗୁ ପରିଡ଼ା ଆଉ ଗୁମ୍ପା ସ୍ୱାମୀ । ପରସ୍ପରକୁ ବହୁତ ପ୍ରଶଂସା ସେମାନେ କରୁଥିଲେ । ଏକାଠି ମନଖୁସିରେ ସିଗାରେଟ୍ ଶୋଷି ଶୋଷି ନାନା କଥା ପକାଇ ସେମାନେ ଅଫିସରୁ ଫେରୁଥିଲେ ଗୁମ୍ପାସ୍ୱାମୀର ବସାଆଡ଼କୁ ।

ଜଣକର ଘର କୁଜଙ୍ଗ ଷଣ୍ଢକୁଦ ପାଖେ । ସେ କହୁଥିଲା, କେମିତି ମୁଢ଼ି ଚୋବେଇ ଚୋବେଇ ଦି'କୋଶ ବାଟ ଚାଲି ଚାଲି ଯାଇ ସେ ପିଲାଦିନେ ତାର ପ୍ରାଥମିକ ଶିକ୍ଷା ଶେଷ କରିଥିଲା । ତା'ପରେ କୁଜଙ୍ଗରେ ମ୍ୟାନେଜରବାବୁଙ୍କ ଘରେ ରୋଷେଇ କରି ହାଇସ୍କୁଲ ପାଠ ଶେଷ କଲା । ତା'ପରେ କଟକରେ ଟିଉସନ କରି ବି.ଏ. ଶେଷ ଯାକେ ପାଖେ ଜିଦ୍, ପାଖେ ପରିସ୍ଥିତି, ଏହିପରି ମହାଯୁଦ୍ଧ କରି ସେ ମଣିଷ ହୋଇ ଠିଆହେଲା । ଅଳ୍ପ ଖାଇ ଛିଣ୍ଡା ପିନ୍ଧି କେବେ ଉପାସ କେବେ ଭୋକ ଏହିପରି ହୋଇ ସେ ତା'ର ଟଳମଟଳ ନାହାଟି ବାହି ଚାଲିଛି । ଏହାରି ଭିତରେ ସେ ତା ସାନଭାଇକି ପାଠପଢ଼ାଇଛି, ଯୋଡ଼ିଏ ଭଉଣୀ ବିଭା କରିଛି । ବାପା ବେମାର ପଡ଼ିଲେ ଯେ ତାଙ୍କ ଚିକିତ୍ସାରେ ସାତଶ ସରିକି ଟଙ୍କା ଖର୍ଚ୍ଚ କଲା, ଯଦିଚ ଶେଷରେ ତାଙ୍କୁ ଅଟକାଇ ପାରିଲା ନାହିଁ, ସେ ଗଲେ । ଆଉ ଏଣେ ତା'ର ସଂସାର, ତିନୋଟି ଝିଅ, ଗୋଟିଏ ପୁଅ, ସେ ଓ ତା'ର ସ୍ତ୍ରୀ । ସଞ୍ଚୟ ନାହିଁ, କରଜ କିଛି ହୋଇଯାଇଛି, ତା ସେ ଶୁଝିଦେବ । ଘର ନ ଥିଲେ ବି ବସାଟିଏ ତ ଅଛି ନିଶ୍ଚୟ । ଜମି ନାହିଁ, କିନ୍ତୁ ଚାକିରୀ ଅଛି । ଆଉ ଅଛି, ଅଟଳ ଈଶ୍ୱର ବିଶ୍ୱାସ । ସେହି ତ ସମସ୍ତିଙ୍କି ସମ୍ଭାଳିଛନ୍ତି, ନହେଲେ ଆଉ କିଏ ?

ତା କଥା ଅମୃତ ପରି ଶୁଭୁଥିଲା ଗୁମ୍ପାସ୍ୱାମୀ କାନକୁ । ଧରୁ ହୋଇ ଦାଙ୍ଗର ହୋଇ ଲୋକଟିଏ ଯେ ମିଷ୍ଟର ପରିଡ଼ା, ଉଞ୍ଚରେ ତାର କାନ ଖାଇବ, ଆଖି ତଳେ ଦି ଗାଲର ହାଡ଼ କେମିତି ଟିକିଏ ଉଞ୍ଚା ଉଞ୍ଚା, ଥୋମଣିଟି କୋଡ଼ି ଫାଳ ପରି ଦାଢୁଆ, ସେମିତି ଚଉଖୁଣ୍ଟ ନାକ, ଅଗ ମୁନିଆ ହୋଇ ଚିକିଚିକି ଦିଶୁଛି, ଚାହିଁଲେ ଲାଗେ ଯେମିତିକି ଭାବପ୍ରବଣ ଅବସ୍ଥାରେ ଏ ନାକଟିବି ଥରି ଥରି ଉଠୁଥିବ, ସେମିତି ଭାବପ୍ରବଣ ହୋଇ ଥରିବାକୁ, ଥନଥନ ହେବାକୁ ତ ଏ ଆଖି, ଏ ନାକ, ଏ ମୁହଁର ଠାଣି । ସଫା ଖୋଲା ମୁହଁଟିଏ, ଅକପଟ ଏଇ ଅଳ୍ପ ମୋଟା ଓଠର ଠାଣି, ଯେମରିକି ସେ ସ୍ପଷ୍ଟ କଥା କହିବାକୁ ହିଁ ଅଭ୍ୟସ୍ତ । ଖଇରିଆ ଚମ, କିନ୍ତୁ ତା ଉପରେ ନିଶ୍ଚିନ୍ତପଣର ସ୍ୱାସ୍ଥ୍ୟ ଆଉ ଆଭା । ଯାହା କଥା ମନେ ପକାଇଦିଏ ଏ ମୁହଁ ଆଉ ମଝିରେ ମଝିରେ ଏଇ କାନ୍ଧର ଝାଂକ, କଥା କହୁ କହୁ ମଝିରେ ମଝିରେ ଯେମିତି ତା'ର କାନ୍ଧ ଦି'ଟା ନାଚିଉଠେ, ଆଖିରେ ପିଲାଳିଆ ହସ, କାହା କଥା ?

ହଁ, ଆପୁଦୋରାଇ ମନେ ପଡ଼େ ତ, ଆଉ କିଏ ? କଲେଜ ଜୀବନରେ ସେହି ଥିଲା ତାର ଅତି ଅନ୍ତରଙ୍ଗ ବନ୍ଧୁ, ଆପୁଦୋରାଇ ଆୟର୍ । ପାସ୍ କରିସାରି ସେ ଚାଲିଗଲା ମାଳୟ ସିଙ୍ଗାପୁର, ଆଉ ତା ସଙ୍ଗେ ଦେଖା ନାହିଁ । ତା'ର ବିଭାଘର ହେଲା, ଆପୁଦୋରାଇ ତା ସ୍ତ୍ରୀକୁ ଦେଖିପାରିଲା ନାହିଁ । ଅବିବାହିତ ଅବସ୍ଥାରେ ସେମାନେ ଯେତେବେଳେ ପରସ୍ପରଙ୍କ ଭାବୀ ପତ୍ନୀମାନଙ୍କ ବିଷୟରେ କଳ୍ପନା କରି ହସାହସି ହେଉଥିଲେ ସେତେବେଳେ ଆପୁଦୋରାଇ ତା ସ୍ତ୍ରୀର ଗୋଟାଏ ବର୍ଣ୍ଣନା ଦେଇଥିଲା । ଆଶ୍ଚର୍ଯ୍ୟ ପ୍ରକାରେ ପଛେ ତା ମିଳିଗଲା । କେମିତି ଜାଣିପାରିଥିଲା ସେ ? କେତେଥର ତା'ର ଇଚ୍ଛା ହୋଇଛି, ଆପୁଦୋରାଇକୁ ଆଣି ସେ ତା ସ୍ତ୍ରୀକୁ ଦେଖାନ୍ତା, କହନ୍ତା, ନେ ତୋ ଭାଉଜକୁ ଆପୁ, ଯାହାକୁ କଳ୍ପନା କରୁଥିଲେ, ପଡ଼ ତା ଗୋଡ଼ତଳେ । ତା ଆଉ ହୋଇପାରିଲା ନାହିଁ ।

ଆପୁ ତାଠୁଁ ବୟସରେ ଚାରିବର୍ଷ ସାନ, ସେହି କଥା ବି ତ ସେ କହିଥିଲା ପରିଡ଼ା ଆଗରେ । ବହୁତ ଡେରିରେ ସେ ପାଠ ପଢ଼ିଥିଲା । ଦୂର ତ୍ରିଚୂର ଜିଲ୍ଲାରେ ତା ଘର । ସାତବର୍ଷ ବେଳେ ବାପା ମରିଗଲେ । ମା ତାକୁହିଁ ସାଖୀ କରି ଗୋଟିଏ କଫି ଦୋକାନ ଖୋଲିଦେଲା । ତା ତଳେ ପାଞ୍ଚବର୍ଷର ଭାଇଟିଏ, ତିନିବର୍ଷର ଭାଇଟିଏ, ନଅମାସର ସାନ ଭଉଣୀଟିଏ । ରାତିରୁ ଉଠି ବିକ୍ରୀପାଇଁ ପିଠାପଣା କରିବାରେ ମା'କୁ ସାହାଯ୍ୟ କରିବାକୁ ପଡ଼େ । ଦିନରେ ତ ସହଜେ ସେ କାମରେ ଲୋଟେ । ଖଲିପତ୍ର ସିଇଁ ଶିଖିଗଲା, ପିଠା ବି କେଇଟା ଶିଖିଗଲା । ଆଉ ଶିଖିଥିଲା ଗୀତ ବୋଲା । ଜଣେ ଅନ୍ଧ ଭିକାରୀ ବୁଲି ବୁଲି ଆସି ତାଙ୍କରି ପିଣ୍ଡାରେ ଆଶ୍ରୟ ନିଏ । ସିଦ୍ଧକବି ସଙ୍ଗୀତକାର ମହାପୁରୁଷ ତ୍ୟାଗରାଜଙ୍କର ଅନେକ କୃତି ସେ ମନେ ରଖିଥିଲା, ଠିକଣା ରାଗରାଗିଣୀ ଦେଇ ବୋଲି ପାରୁଥିଲା । କେବଳ ଭିକାରୀର ଗଳାଟା ଥିଲା ଘାଗଡ଼ା ଆଉ ଫଟା, ସବୁବେଳେ କଫ ସଡ଼ସଡ଼ ବିଚରା, ନଟରା କାଶ ଉଠେ । କିନ୍ତୁ ଗୁମ୍ପାର ସ୍ୱରଟି ଭାରି ସୁନ୍ଦର ଥିଲା । ସେ ତ୍ୟାଗରାଜ ବୋଲିଲେ ଲୋକେ ଭାରି ପ୍ରଶଂସା କରୁଥିଲେ । କେତେ ଗରାଖି ତ ତାଠୁଁ ଗୀତ ଶୁଣିବାକୁ ଆସି ପେଟେ ପେଟେ ଜଳଖିଆ ଖାଇ ଯାଉଥିଲେ । ସଞ୍ଜବୁଡ଼େ ସେ ମନ ଖୋଲି ଗୀତ ବୋଲେ । ସେତିକିବେଳେ ଦୋକାନରେ ଭିଡ଼ ହୁଏ ।

ତା'ପରେ ସେହି ଗରାଖିଙ୍କ ଭିତରୁ ଜଣେ ତାକୁ ପାଠ ପଢ଼ାଇଲେ । ଜଣେ ମାଲୟାଲୀ ଭଦ୍ରଲୋକ, ନାଁଟି ବି ସେହିପରି-ଭଦ୍ରାପ୍ପା, ନୂଆ ଡାକବାବୁ । ତାଙ୍କରି ଯତ୍ନ, ଉତ୍ସାହ ଓ ସାହାଯ୍ୟ ପାଇ ସେଠି ଥିବାଯାକେ ଚାରି ବର୍ଷରେ ଚାରୋଟି ଶ୍ରେଣୀ ପାସ୍ କରି ବୃତ୍ତି ପାଇ ପାଇ ଆଉ ଚାରୋଟି ଶ୍ରେଣୀ ବି ଟପିଗଲା । ଆପେ ମାଷ୍ଟର ହେଲା । ଏଣେ କଫି ହୋଟେଲ ଖବର ବି ବୁଝେ, ଘରର କାମଦାମରେ ଭାଗ ନିଏ । ରାତି ଏଗାରଟାରୁ ଦୁଇଟାଯାକେ କଲେଜ ପାଠର ବହି ଘୋଷେ । ତାହାରି ଭିତରେ ପୁଣି ଅବସ୍ଥା ସହିତ ନାନା ଯୁଦ୍ଧ -ଶୀତଦିନେ ଶୀତ ଲୁଗା ନାହିଁ, ରାତିରେ ଦେହ କୋଲ ମାରିଯାଉଥିବ, ଆଖି ମାଡ଼ି ମାଡ଼ି ପଡୁଥିବ, ଘରଯାକ ବୁଲି ଦେହକୁ ହାତରେ ଘଷି, ବେଶି ବଳାଇଲେ ଦଣ୍ଡ ବୈଠକ କରି ଦେହକୁ ଉଷୁମେଇଁ ଚାଲିଥିବ ପୁଣି ପଢ଼ା କାମ । ମୋଟେ ଗୋଟିଏ ଉମ୍‌ହେଇଁ ଯେ ସେ ରହିଥିବ ଆଉ ତିନୋଟିଙ୍କ ଶୋଇଲା କତିରେ । ଖରାଦିନେ ଝୋଲା ମାରି ଯାଉଥିବ, ତାହାରି ଉପରେ ପଡୁଥିବ ଦେହ ପରିଶ୍ରମ । ଆଉ ଭୋକ ଉପାସ ତ ସହଜେ । ବି.ଏ.ପାସ୍ ସରିଲା । ଚାକିରୀ ଖଣ୍ଡେ ମିଳିଗଲା । ଚଳିଗଲା କୌଣସିମତେ, କିନ୍ତୁ ଅଭାବ ଘୁଞ୍ଚିଲା ନାହିଁ । ମା ମରିବା ସଙ୍ଗେ ସଙ୍ଗେ

କଫି ହୋଟେଲଟି ବି ଉଠିଯାଇଥିଲା । ତେବେ ସେ ତାର ଯୋଡ଼ିକଯାକ ଭାଇଙ୍କି ପାଠ ପଢ଼ାଇଛି । ସେମାନେ ସ୍ୱାବଲମ୍ବୀ ହେଲେଣି । ଗୋଟିକି ବିଭା ବି କରାଇଦେଇଛି । ଘରେ ସେ, ତାର ସ୍ତ୍ରୀ, ତାର ସାନଭଉଣୀ, ତାର ନିଜର ପାଞ୍ଚଟି ପୁଅ । ସଞ୍ଚୟ ନାହିଁ, ଘର ନାହିଁ କି ଜମିବାଡ଼ି ନାହିଁ । ଉପାସ ଭୋକରେ ଚଳିଯାଆନ୍ତି, କିନ୍ତୁ କରଜ ବି ନାହିଁ ।

ଜଗୁ ପରିଡ଼ା ବି ସ୍ନେହରେ ଅନାଇଁଥିଲା ତାକୁ । ଗୋଟାଏ ଲମ୍ବା ଚଉଡ଼ା ମଣିଷ, ଶ୍ୟାମଳ ବର୍ଣ୍ଣ, ବଳିଲା ବଳିଲା ଦେହ ହାତ, ବଡ଼ ମାଉଁସିଆ ମୁହଁ, ମୁଣ୍ଡବାଳ ସିଧା ଦି'ଭାଗ ହୋଇ ଫିରେଇ ହୋଇଛି ଯେ ଦି' ପାଖେ କୁଞ୍ଚକୁଞ୍ଚିଆ କଳା ବାଳ ମୋଡ଼ି ମୋଡ଼ି ହୋଇଛି । କପାଳରେ ସିନ୍ଦୂର ଟୋପାଟିଏ । ମୁହଁରେ ସବୁବେଳେ ହସ । ପ୍ରଶାନ୍ତ ମୁହଁରେ ଅଧା ବୁଜି ହେଲା ପରି ଆଖିଯୋଡ଼ିକ ବେଳେବେଳେ ଯେତେବେଳେ ଅଳ୍ପ ଢ଼ାଙ୍କି ହୋଇ ପଡ଼େ ସେତେବେଳେ ସେହି ଧନୁପରି ଭ୍ରୂଲତା ତଳେ ଯେଉଁ ଚାହାଣି ସେ ମୁହଁରେ ଫୁଟିଉଠେ ସେ ଗୋଟିଏ ଅତି ଉଦାର ସହାନୁଭୂତିର, ସେ ମୁହଁର ଶାନ୍ତ ସଂଯମ ତାକୁ ଆକୃଷ୍ଟ କରିଥିଲା । ମନ ଲୋଡ଼ିଥିଲା, ସବୁ କଥା ଖୋଲି ଏହାରି ଆଗରେ କହିଦେଲେ ହାଲୁକା ଲାଗନ୍ତା । ସବୁ ଶୁଣି ଶୁଣି ଆଖିକୁ ଢ଼ଳଢ଼ଳ କରି ସେ ଯେପରି କାନ୍ଧ ଉପରେ ବାଁକୁ ଡାହାଣକୁ ମୁଣ୍ଡଟି ଝାଙ୍କେ, ସେତିକିରେ ଯେପରିକି ଅଉଲପଣ ହସିଉଠେ ତାର ହସରେ ।

କିଏ କେଉଁଆଡ଼ର ସେମାନେ, ଚିହ୍ନା ମୋଟେ ପନ୍ଦର ଦିନର । ଅଫିସ ଭୁବନେଶ୍ୱରକୁ ଉଠିଆସିଛି, ଗୁମ୍ଫା ସ୍ୱାମୀ ଏଠିକି ବଦଳିହୋଇ ଆସିଛି । ଜଗୁ ତ ମୂଳ ଅଫିସରେହିଁ ଥିଲା, ଅଫିସ ସହିତ ଏକାଠି ଆସିଛି । ସାତ ଶହ ସହକର୍ମୀଙ୍କର ଗୋଟିଏ ଅଫିସ୍, ସେଠି କେଉଁ ଗାଁର କେଉଁ ସହରର ଲୋକ ଆସି ଏକାଠି କାମ କରନ୍ତି । ପାଞ୍ଚଟା ବାଜିଲେ ଏକାଠି ଗୋଛା ହୋଇ ବାହାରି କିଏ କେଉଁଆଡ଼େ ଚାଲିଯାଆନ୍ତି, ନାନା ଦିଗକୁ ମୁହେଁଇ ସାଇକଲ ଆଉ କଥା କୁହାକୋହି ହେଉଥିବା ମଣିଷଙ୍କ ସାନ ସାନ ଦଳ । ଝିଅ ପିଲାଏ ବି ସେ ଦଳଭିତରେ ବାହାରି ଚାଲିଯାଆନ୍ତି ।

ସାତ ଶହ ଲୋକଙ୍କର ଛୋଟିଆ ପୃଥିବୀ ଭିତରେ ଜଗୁ ପରିଡ଼ା ଆଉ ଗେଦେଲା ଗୁମ୍ଫା ସ୍ୱାମୀ ପରସ୍ପରକୁ ବାଛିନେଇଥିଲେ । ଗୋଟାଏ ଲମ୍ବ ଘରର ଦୁଇ ମୁଣ୍ଡରେ ସେମାନଙ୍କର ବସିବା ଜାଗା, ମଝିରେ ଧାଡ଼ି ଧାଡ଼ି ହୋଇ ଟେବୁଲ୍, ଚୌକି, ଆଲମାରି, ଫାଇଲ୍ ଗଦା; ଦୁଇ କରରେ ପାରାଖୋପ ପରି ସାନ ସାନ ବଖୁରି, ପୁଣି ଆଲମାରି ଘେର ଭିତରେ ଆହୁରି କେତେ । ମଝିରେ କେତେ ମୁହଁ, କେତେ ମୂର୍ତ୍ତିମନ୍ତ ଇତିହାସ । ତଥାପି ଏପାଖୁ ଏ ଯାଏ, ସେପାଖରୁ ସେ ଆସେ । ଲାଗେ, ସତେକି ଭାବିଚିନ୍ତି କଳି ଚୁଳି ଅନ୍ଧିସନ୍ଧି ଭିତରେ ବଛାବଛି କରି ସେମାନେ ପରସ୍ପରକୁ ଖୋଜି ବାହାର କରିଛନ୍ତି ।

ଅଥଚ ମୂଳର କଥା ଭାବିବସିଲେ ସେମିତି କିଛି ନୁହେଁ । ପଶ୍ଚିମ ଦୁଆରପାଖେ ପରିସ୍ରା କରିବା ବଖୁରି । ଖୋପ ଖୋପ ହୋଇ ପାଞ୍ଚ ଜଣଙ୍କ ପାଇଁ ଜାଗା ଥିଲେ ବି ସାଧାରଣତଃ ଯେ ପଶେ ସେ କବାଟ ଦିଏ । ସେହି ଦୁଆରମୁହଁଆଡ଼କୁ ଚରଚର ହୋଇ ଜଗୁ ପରିଡ଼ା ଚାଲିଥିଲା; ସିମେଣ୍ଟ ଗଳିରାସ୍ତା ଉପରେ ଠକ୍‌ଠାକ୍ ଶୁଭୁଥିଲା ତାର ଜୋତା ଶବ୍ଦ । ଅନ୍ୟମନସ୍କପଣ ଭାଙ୍ଗିଗଲା, ଆଗରେ ଅଛି ଆଉ ଜଣେ, ସେ ଆଗ ପଶିବ । କିନ୍ତୁ ସେ ଆଗ ଜଣକ ବୁଲିପଡ଼ି ଅନାଇଁଲା, ଦୁଆରମୁହଁକୁ ଚାଲି ନ ଯାଇ ଘୁଞ୍ଚିଯାଇ ଆଡ଼େଇ ଠିଆ ହେଲା । ସେତେବେଳେ ବି ଜଗୁ ପରିଡ଼ା ତା ମୁହଁଆଡ଼କୁ

ଭଲକରି ଚାହିଁ ନାହିଁ । ସେ ଭିତରେ ପଶି ନିଠେଇ ନିଠେଇ କବାଟ ବନ୍ଦ କଲା । ପଦାକୁ ବାହାରିଲା, ଦେଖିଲା, ସେହି ଆର ଜଣକ ସେମିତି ଅପେକ୍ଷା କରି ଠିଆ ହୋଇଛି; ମୁହଁକୁ ଚାହିଁଲା, ଆର ଜଣକ ଅଳ୍ପ ହସିଦେଲା; ଭିତରକୁ ଗଲା । ଏଇ ସାମାନ୍ୟ ଘଟଣାରେ ଯେପରିକି ଗୋଟାଏ ବଡ଼ ମଣିଷପଣିଆର ଘେନାଘେନି ଘଟିଯାଇଥିଲା । ଜଗୁ ପରିଡ଼ା ଚାଲିଗଲା ନାହିଁ । ଅପେକ୍ଷା କରି ଠିଆହେଲା । ଭିତରେ ଫିନାଇଲ୍ ଆଉ ଗନ୍ଧକର୍ପୂର ଗୁଳି ପଡ଼ିଛି । ସବୁ ମିଶି ଗୋଟାଏ ଉତ୍କଟ କଡ଼ା ଗନ୍ଧ ନାକରେ ବାଜୁଛି । ଠିଆ ହେବା ଜାଗା ସେ ନୁହଁ । ଜଗୁ ପରିଡ଼ା ଟହଲିଲା । ସେପାଖେ ବଡ଼ ମେଲା ଦୁଆରମୁହଁବାଟେ ଖୋଲା ଆକାଶଟା ଦିଶୁଛି । କୋଠାବାଡ଼ି, ଗୋଟିଗୋଟିକିଆ ଗଛ, ଡ଼ାଳୁଆ ଟାଙ୍ଗି ତଳକୁ ତଳ ଖସିଛି; କେତେ ଦୂରରେ ଗୋଟାଏ ଗାଁର ଗଛଗହଳି ଟାଣ ହୋଇ ଧାଡ଼ି ବାନ୍ଧିଛି । ହୁଙ୍କା ଚାରି କରେ ବୁଦାଭିତରେ ଛେଳିପଲ ଚରୁଛନ୍ତି । ଧଳା ଧଳା ହୋଇ ଇଲେକ୍‌ଟ୍ରିକ୍ ଲାଇନ୍‌ର ଖୁଣ୍ଟ ଠିଆ ହୋଇଛି । ଖରା ପଡ଼ିଛି । ଚଢ଼େଇ ଉଡ଼ୁଛନ୍ତି । ପଦାକୁ ମୁହଁ କରି ସେହିଆଡ଼େ ଦୃଷ୍ଟି ଥାପିଲାତକ ଜଗୁ ପରିଡ଼ାର ମନ ଭିତରେ ଉଙ୍କି ମାରୁଥିଲା ସେହି ଅଜଣା ଲୋକର ମୁହଁଟି, ସେହି ଯେ ତାର କିଛି ନୁହେଁ, ଯାହା ସଙ୍ଗେ ତା'ର କିଛି ସମ୍ବନ୍ଧ ନାହିଁ । ମନ ହେଉଥିଲା, ଆଗ ସେ ଭିତରକୁ ନ ପଶି ଆଗରେ ଥିବା ସେହି ଜଣକୁ ବାଟ ଛାଡ଼ିଦେଇଥିଲେ ଭଲ ହୋଇଥାନ୍ତା ପରା !

କବାଟ ଖୋଲିଲା, ଆରକ ବାହାରିଲା । ପୁଣି ତାକୁ ଦେଖିପକାଇଲା ମାତ୍ରେ ଧଳା ଦାନ୍ତ ଉପରୁ ଅଳ୍ପକେ ଓଠ ଉଠିଗଲା ।

ତା'ପରେ ଆଳାପ ଆରମ୍ଭ ହୋଇଗଲା, ଅତି ଧିରେ ଧିରେ । ଶବ୍ଦ ବେଶି ନୁହେଁ; ଭାବ ବେଶି । ତାର ମାଧ୍ୟମ ଓଡ଼ିଆ ନୁହେଁ, ତେଲୁଗୁ ନୁହେଁ, ଇଂରେଜି । ଉଚ୍ଚାରଣ ଶୁଣି ଚିହ୍ନରା କେହି ହୋଇଥିଲେ ବାରିପାରିଥାନ୍ତେ ପରା, ଜଗୁ ପରିଡ଼ାର ଇଂରେଜିରେ ଓଡ଼ିଆ ଉଚ୍ଚାରଣ, ଗୁମ୍ମା ସ୍ୱାମୀର କହିବା ଭଙ୍ଗୀରେ ବିଶୁଦ୍ଧ ତେଲୁଗୁ ଉଚ୍ଚାରଣ । ସେମାନେ ଆଦୌ ପରିଶ୍ରମ କରିନାହାନ୍ତି ସାହେବ ପରି ଇଂରେଜି କୁହାକୋହି ହେବାକୁ । ପରସ୍ପରର କଥା ବୁଝିଥିଲେ ସେମାନେ, ଆଉ କିଛି ଲୋଡ଼ୁ ନଥିଲେ । ଗପୁ ଗପୁ ଦୁହେଁ ପଦାକୁ ବାହାରିଗଲେ । ଖଣ୍ଡେଦୂରରେ ହତା ଫାଟକପାଖେ ରାସ୍ତା କରରେ ଗୋଟିଏ ପାନ ଦୋକାନ । ଗୁମ୍ମା ସ୍ୱାମୀ ସିଗାରେଟ୍ କିଣି ଜଗୁ ପରିଡ଼ାକୁ ଦେଇଥିଲା, ଜଗୁ ପରିଡ଼ା ତାକୁ ଦେଇଥିଲା ପାନ । ଗୋଟାଏ ନୂଆ ସମ୍ବନ୍ଧ ଆରମ୍ଭ ହୋଇଥିଲା ।

ତା'ପରେ ପ୍ରତିଦିନ ଦେଖାଚାହାଁ, କଥାଭାଷା, ଦୁଃଖସୁଖ । ବଡ଼ ଚଞ୍ଚଳ ଘନିଷ୍ଠତା ବଢ଼ିଉଠିଥିଲା । ପରସ୍ପରର ଜୀବନସଂଗ୍ରାମ ଆଉ ଦୁଃଖଜଞ୍ଜାଳ କଥା କୁହାକୋହି ହୋଇ ସେମାନେ ସତେକି ଛାତି ହାଲୁକା କରିବା ସଙ୍ଗେ ସଙ୍ଗେ କତିକି କତିକି ଆଉଜି ଆସୁଥିଲେ । ସେମାନେ ବୁଝିଥିଲେ, ସେମାନେ ଏକାଶ୍ରେଣୀର, ସେହି ଜଗତଯାକର ଖଟିଖିଆ ମଣିଷ, ଖଟି ଖଟି ଅତି କଷ୍ଟରେ ଟାଣି ଟାଣି ସଂସାର ଚଳାଇହୁଏ, ନାହା ବୁଡୁ ବୁଡୁ ହେଉଥାଏ, ବୁଡ଼େ ନାହିଁ । ସଞ୍ଚୟ ନାହିଁ, ଜମିବାଡ଼ି କି ଆପଣାର ମୋହର ମରା ଘର ନାହିଁ । ଅଭାବ ଖାଇଗୋଡ଼ାଏ, ଦାରିଦ୍ର୍ୟ ଆଖି ତରାଟେ, ବେଳେବେଳେ ରୋଗ ଆସି ଘରକରଣାର ସାଧାରଣ ଗତିକୁ ଦିଏ ଓଲଟାଇ, ଭୋକ ଆଉ ଶୀତ କାଟେ, ପରିଶ୍ରମ ବାଧେ, କେବେ କରଜ ପାଇଁ ତହଲ ବିକଳ ହୋଇ ବୁଲିବାକୁ ପଡ଼େ । ତଥାପି ତାହାରି ଭିତରେ ଘରକରଣା ଚାଲେ, ଚୁଲି ଜଳେ, ପିଲାଙ୍କୁ ମଣିଷ କରିବାକୁ ହୁଏ, ବାହା ନିମିତ୍ତ

ପୁଆଣି ପର୍ବ କରିବାକୁ ପଡ଼େ । ବେଳେବେଳେ କେଉଁଟା ଅଟକିଗଲା ପରି ଲାଗେ, କିଛି ଅଟକେ ନାହିଁ ।

ତାହାରି ଭିତରେ ସାଇତି ରଖିବାକୁ ହୁଏ ସାମାଜିକ ଶିଷ୍ଟାଚାର ଆଉ ଭଦ୍ରତା ଓ ତାଆର ଭେକ । ଆଉ ସମ୍ଭାଳିବାକୁ ହୁଏ ଆଶା, ସ୍ୱପ୍ନ, ସ୍ନେହ ଓ ବିଶ୍ୱାସ ସହିତ ସମୁଦାୟ ମଣିଷପଣିଆ ।

ଆପଣା ଘରେ ବି ସେମାନେ ପରସ୍ପର କଥା ପକାଉଥିଲେ, କେଉଁ ବିଷୟରେ କିଏ କଣ କହୁଥିଲା ବର୍ଣ୍ଣନା କରିବାକୁ ଯାଇ ପରସ୍ପରକୁ ରୂପ ଦେଉଥିଲେ ।

ଦିନେ ସାଢ଼େ ପାଞ୍ଚଟାବେଳେ ଅଫିସ୍ ଫେରନ୍ତି ଗୁମ୍ପାସ୍ୱାମୀ ଜଗୁର ହାତ ଧରିପକାଇ କହିଥିଲା, ''ଚାଲ, ଆଜି ଆମ ବସାକୁ ଯିବ । ବହୁତଦିନୁ ଯିବ ଯିବ କହୁଛ, ଆସୁନାହଁ କେବେ, ଆଜି ଛାଡ଼ିବି ନାହିଁ ।'' ଜଗୁ ହସି ହସି ମଙ୍ଗିଥିଲା ।

ଧାଡ଼ି ଧାଡ଼ି ହୋଇ ସାନ ସାନ କୋଠାଘରଟିମାନ, ସବୁ ଘର ଏକାପରି, ସବୁ ଘର ସାମନାରେ ଏକା ପରିସରର ସାନ ସାନ ବାରି, ଲୁହାତାରର ବାଡ଼, କାଠ ଫାଟକ । ସେହି ବାରି ଘେନି ଘରମାନଙ୍କ ବିଶିଷ୍ଟତା, କେଉଁଟା ଘାସ ଅରମା ହୋଇ ପୁଙ୍ଗା ପଡ଼ିଛି, କେଉଁଠି ଗହଳି ବଗିଚା, କେଉଁଠାରେ ଚିତ୍ର କାଟିଲା ପରି ନାନା ବର୍ଣ୍ଣର ଫୁଲଗଛ ସଜା ହୋଇଛି, କେଉଁଟା ପରିବା ବଗିଚା, କେଉଁଠି ପନିପରିବା ଓ ଫୁଲଗଛ ମିଶାମିଶି । ଗୁମ୍ପାସ୍ୱାମୀର ବାରିର ଡାହାଣ କରରେ କଦଳୀଗଛ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଛି, କେତେଟାରେ କାନ୍ଦି ଓହଳିଛି, ବାଁ କରରେ ଦୁଇଧାଡ଼ି ଅମୃତଭଣ୍ଡା ଗଛ, ଦୁଇଟା ଗଛରେ ଫଳ ଲଦିହୋଇଛି, ଅରାଏ ବିଲାତି ବାଇଗଣ, ଅରାଏ ବାଇଗଣ । ଛୋଟ ଛୋଟ ଭାଡ଼ିରେ ବହଳ ହୋଇ ଲାଉ କଖାରୁ ଲଟେଇଛି, ଛୋଟ ଛୋଟ ଭାଡ଼ିରେ ବହଳ ହୋଇ ଲାଉ କଖାରୁ ଲଟେଇଛି, ଛୋଟ ଛୋଟ ପଟାଳିରେ ଛନଛନିଆ ହୋଇ ଶାଗ ବଢ଼ିଛି । ଘର ସାମନାରେ ଗୋଲ ହୋଇ ଅରାଏ ଜାଗା ଯେ, ସେଠି ସେହି ସନ୍ଧ୍ୟା ପୂର୍ବରୁ ସତେ ଅବା ଚନ୍ଦ୍ରକିରଣ ଲୋଟୁଛି, କେବଳ ହଳଦୀ ଗରଗର ସେବତୀ ଫୁଲ । ସେତିକି ତା ବାରିର ବିଶେଷତ୍ୱ, ଜଗୁ ପରିଢ଼ା ମନେ ମନେ ହେଜା କଲା, ନହେଲେ କଦଳୀ ଅମୃତଭଣ୍ଡା ଲାଉ କଖାରୁ ପ୍ରାୟ ସବୁଠି । ବାରବର୍ଷର ପିଲାଟିଏ କୋଡ଼ି ଧରି ମାଟି ହାଣୁଛି । ବି ବି ବର୍ଷ ଏପାଖ ସେପାଖ ଯୋଡ଼ିଏ ଟୋକା ଗୋଟିଏ ଗୋଟିଏ ବାଲ୍ଟି ଧରି ବାରିର ଦୁଇପଟେ ଗଛରେ ପାଣି ଦେଉଛନ୍ତି । ଏକା ପରି ଗଢ଼ଣ ତିନିଜଣଯାକ, ଦେହ ଖୋଲା ଅଛି, କେବଳ ଖଣ୍ଡେ ଲେଖାଁ ହାଫ୍ ପ୍ୟାଣ୍ଟ ।

''ଏଇ ମୋ ଘର'', ଗୁମ୍ପାସ୍ୱାମୀ କହିଲା, ''ବିଜେ କରନ୍ତୁ ।'' ସେ ଫାଟକ ଖୋଲିଲା । ପିଲା ତିନୋଟି ଆପଣା ଆପଣା କାମ ଉପରୁ ନ ଆସି ଠିଆ ହୋଇ ହସିଲେ । ଗୁମ୍ପାସ୍ୱାମୀ ସେମାନଙ୍କୁ ହସି ହସି ଉତ୍ସାହିତ କଲା । ତା'ପରେ କହିଲା, ''ଆରେ, ମଉସା ଆସିଛନ୍ତି, ଦଣ୍ଡବତ କର ।'' ପିଲା ତିନିହେଁ ପାଖକୁ ଆସି ତାକୁ ଦଣ୍ଡବତ କଲେ । ଜଗୁ ପରିଡ଼ା ଠିଆ ଠିଆ ସେମାନଙ୍କ ସଙ୍ଗେ ଦୁଃଖସୁଖ ହେବାକୁ ଆରମ୍ଭ କରିଦେଲା । ''କାହା ନାଁ କଣ, କିଏ କେଉଁ କ୍ଲାସରେ ପଢ଼େ, ବାଇଗଣ କେମିତି ଫଳୁଛି, ବଗିଚାରେ ପାଣି ମଡ଼ାଇବାପାଇଁ କଳରୁ ଯଥେଷ୍ଟ ପାଣି ମିଳୁଛି କି ନାହିଁ,'' ଏହିପରି ନାନା କଥା । ଗୁମ୍ପାସ୍ୱାମୀ ପଚାରିଲା, ଆମୀ କୁଆଡ଼େ ଯାଇଛି ? ଆମୀ ତାର ସାନ ଭଉଣୀ । ଆମୀ ପଡ଼ିଶାଘରକୁ ବୁଲିଯାଇଛି । ହଠାତ୍ ତରତର ହୋଇ ଗୁମ୍ପାସ୍ୱାମୀ ତା ଘରଭିତରକୁ ପଶିଗଲା, ଯେପରି

ସେ ତାର କୁଣିଆଚର୍ଚ୍ଚା କଥା ଭୁଲିଯାଇଥିଲା, ହଠାତ୍ ମନେପଡ଼ିଗଲା, ସେହିପରି । ଦାଣ୍ଡଘର ଦୁଆରମୁହଁରୁ ବହୁତ ଆଦର ଦେଖାଇ ତାକୁ ଘରଭିତରକୁ ଡାକିନେଲା । ଘରେ ବସାଇଦେଇ ପୁଣି ଭିତରକୁ ଚାଲିଗଲା । ତା' ପରେ ଆସିଲେ ସେ, ତା ସ୍ତ୍ରୀ ଓ ତାର ଚାରି ବର୍ଷର, ଛ ବର୍ଷର ପୁଅ ଯୋଡ଼ିଏ । ଗୁମ୍ପାସ୍ୱାମୀ ଚିହ୍ନା କରାଇଦେଲା । ଜଗୁ ଠିଆ ହୋଇପଡ଼ି ତା ସ୍ତ୍ରୀକୁ ଦଣ୍ଡବତ ହେଲା । ସମସ୍ତେ ବସିପଡ଼ିଲେ । ଆଳାପ ଆରମ୍ଭ ହେଲା ।

ଜଗୁ ଭୁଲିଯାଇଥାଏ, ଏ ଘରେ ଏହି ତାର ପ୍ରଥମ ପ୍ରବେଶ । ଖାଲି ଏମାନଙ୍କ କଥାଭାଷା କି ବାହାର ବ୍ୟବହାରରୁ ନୁହେଁ, କେମିତି କଣ ହୋଇ ସବୁ ତାକୁ ଲାଗୁଥାଏ ଆପଣାର ଆପଣାର ପରି, ଯେପରି ବହୁଦିନୁଁ ସେମାନଙ୍କ ସଙ୍ଗେ ତାର ଘନିଷ୍ଠତା । ତାଙ୍କର ଆଡମ୍ବର ନାହିଁ, ତା ପ୍ରତି ବିଶିଷ୍ଟ କୁତୂହଳ ନାହିଁ, ଯେପରି ସେ ଏଠି ଥିଲା, ଏଠି ଅଛି, ସହଜ ହୋଇ ସେମାନେ ତାକୁ ଗ୍ରହଣ କରିନେଇଛନ୍ତି । ଅନ୍ତର ଭିତରର ଆଲୁଅ ମୁହଁ ଉପରେ ପଡ଼ିଛି, ତା' ପ୍ରତି ଏମାନଙ୍କର ସ୍ନେହ ଆପେ ଫୁଟିଉଠୁଛି ।

ଗୁମ୍ପାସ୍ୱାମୀର ସ୍ତ୍ରୀ, -ଜଗୁ ଅନାଇଁ ଦେଖିଲା, ସତେକି ସେ ତାକୁ ଚିହ୍ନିଛି । ହାଡୁଆ ଧାର ମୁହଁଟି, ଟିକିଏ ଲମ୍ବା, ନାନା ଚିନ୍ତା ଦକ ଆଶା ଉଚ୍ଛ୍ୱାସରେ ସେ ପାକଳ ହୋଇଛି । ପାଞ୍ଚଟି ପିଲାଙ୍କ ଜଞ୍ଜାଳ, ସତର୍କ କି ପରିଶ୍ରମ, ଏତେ ସମସ୍ୟା ଭିତରେ ନିଜକୁ ଘୋରି ଘୋରି ଦେଇ ଦେଇ ଗୋଟିଏ ପରିବାରକୁ ବଞ୍ଚାଇ ରଖି ଚଳାଇବାକୁ ପ୍ରାଣପଣେ ଚେଷ୍ଟା, କେତେ ଅଲେଖା ଦିନ ଦିନକର ନାନା ଦୁଃଖକଷ୍ଟର ଅନିଭା ଛାପା, ସବୁ ଏକାଠି ହୋଇଛି ତାର ସେ ବ୍ୟକ୍ତିତ୍ୱର ଛବିରେ । ଅନୁମାନ କରିହେଉଛି, ଏଇ ସବୁ ଅଣ୍ଟାରେ ଲୁଗାକାନି ଗୁରେଇଦେଇ ସେ ଛାଞ୍ଚୁଣୀ ଧରି ନଇଁପଡ଼ି ଘରଯାକ ଅଳିଆ ସଫା କରୁଥିବ, ମାଜୁଥିବ, କାଚୁଥିବ, ରାନ୍ଧୁଥିବ, ପରଷୁଥିବ । କେତେବେଳେ କାହାକୁ ଧରିଛି ଝାଡ଼ା ରୋଗ, କେତେବେଳେ କାହାକୁ ଜର, କାଶ, ଦିନରାତି ଆଖି କସରା ପଡ଼ିନାହିଁ, ଜଗି ବସିଥିବ ସେ, କଳପରି ସେବାକାର୍ଯ୍ୟ କରି ଯାଉଥିବ । ଆପେ ରୋଗରେ ପଡ଼ି ରହିଥିବ କେତେ ଥର । ଆପତ୍ତି ନାହିଁ କି ଫରମାସି ନାହିଁ, ଖାଲି ସହିଥିବ, ଅପେକ୍ଷା କରିଥିବ, ସେମିତି ସେ ବେମାରିରେ ଘୁଷୁରି ଘୁଷୁରି ଉଠିଯାଇ ଚୁଲି ଲଗାଇଥିବ, ପିଲାଙ୍କ ଖାଇବା ଖବର ବୁଝିଥିବ । କେତେବେଳେ ସବୁ ଦୁଃଖଶୋକ ମନେ ପକାଇ ସଂସାରର ଗରଳରେ ଜରଜର ହୋଇ ଫଁଫଁ କରି ତତଲା ଦୀର୍ଘଶ୍ୱାସ ପକାଇଥିବ, ଠାକୁରଙ୍କୁ ଡାକିଥିବ ଯେଉଁ ନାଁରେ ତାଙ୍କୁ ସେ ଚିହ୍ନେ ସେହି ନାଁରେ, କେତେବେଳେ ଭାବିଥିବ, ଆଉ ସହିହେଉନାହିଁ । ସେତେବେଳେ ସେ ଝର ଝର ହୋଇ କାନ୍ଦି କାନ୍ଦି ମନର ବୋଝ ହାଲୁକା କରିଥିବ, ଦେହର ସ୍ନାୟୁକୁ ସୁଷମ ଓ ସହଜ କରିଥିବ । ଆଉ,ହସିଥିବ ବି କେତେ କେତେବେଳେ ସେ, ମନ ଖୁସିରେ ଢିକି ଢିକି ଆଖିରେ ବିଞ୍ଚିଦେଇଥିବ ଆଶା ଓ ଆନନ୍ଦର ହସ ।

ଗୋରା ପାତଳ ଡେଙ୍ଗା ବୋହୂଟିଏ, ପାଦଯୋଡ଼ିକ ବଡ଼ ବଡ଼, ନାକଟି ଚେପ୍‌ଟା, ଦେହ ଅନୁପାତରେ ଦେଖିଲେ ବଳିଲା ପରି ବାହାଯୋଡ଼ିକ, ହାତପାପୁଲି ଫରଚା, ମୋଟା ମୋଟା ଗଣ୍ଠିଗଣ୍ଠିଆ ଆଙ୍ଗୁଠି, ଅଗ ଚେପ୍‌ଟା । ପାଟି ଟିକିଏ ବଡ଼, ଅଳ୍ପ ମୋଟା ମୋଟା ଓଠ, ଢଳ ଢଳ ଆଖିରେ ଗଭୀର ଚାହାଣୀ, ଡିମା ଡିମା ଭ୍ରୂ, ବହଳ କଳା ଭୂଲତା ।

ସେ ଦେହର ସୌନ୍ଦର୍ଯ୍ୟ ସୁଠାମ ରୂପର ନୁହେଁ, ଯେପରି ଦିଶେ ବିଜ୍ଞାପନର ଛବିରେ ।

ସେ ନୁହେଁ ସୁନ୍ଦର ପ୍ରତିମାର ସୌନ୍ଦର୍ଯ୍ୟ, ସୁଠାମ, ନିଟୋପ, ପୂରିଲା ପୂରିଲା ଦେହର ସୌନ୍ଦର୍ଯ୍ୟ ସେ ନୁହେଁ, ତଥାପି ସେ ଅତି ଆପଣାର ଅତି ବିଶ୍ୱାସୀ ହୋଇ ସୁନ୍ଦର, ଦେଖିଲେ ଆଖି ଶାନ୍ତ ହୁଏ, ସ୍ନାୟୁ ଶାନ୍ତ ହୁଏ, ବୁଦ୍ଧି ସ୍ଥିର ହୁଏ, ଆତ୍ମା ଶୀତଳ ହୁଏ । ସୁଖ ଦୁଃଖର ଆଶା ନିରାଶାର ନାନା ଅନୁଭୂତିରେ ପାଗ ହୋଇ ହୋଇ ସେ ରୂପର ପ୍ରତି ଅଂଶ ସେହି ଜୀବନ ଅନୁଭୂତିର ଦ୍ୟୋତନା କରେ, ଆପେ ଅଙ୍ଗେ ନିଭେଇଥିବା ଜୀବନ, ସେଥିରେ ଦିନ ଦିନକର କେତେ ଜୟ ପରାଜୟର ରହସ୍ୟମୟ ଛପିଲା କାହାଣୀ, ଜଗୁ ପରିଡ଼ା ତାଙ୍କୁ ଦେଖି ସେହି କଥା ହେତୁ କଲା । ସାଧାରଣ ଶିଷ୍ଟାଚାର ପ୍ରକାରେ ତାଙ୍କୁ ଦଣ୍ଡବତ କରିସାରିଲା ପରେ ସେ ତାଙ୍କୁ ବାରମ୍ବାର ନମସ୍କାର କଲା ତାର ଆଖିର ଚାହାଣୀରେ, ଯେପରିକି ସେ ଚାହାଣୀ କହିଲା, ମୁଁ ଚିହ୍ନିଛି ଆପଣଙ୍କୁ, ମାସକୁ ଶହେ ଟଙ୍କା ଆୟରେ ଦୁଇଶ ଟଙ୍କାର ଆବଶ୍ୟକତା କେଉଁ କିମିଆ ବଳରେ ତୁଲାଇହୁଏ, ସଂସାରର ସବୁ ଶକ୍ତି ସବୁଆଡୁ ଓଟାରି ଓଟାରି ପରିବାରଟିକୁ ମାଟିରେ ମିଶାଇବାକୁ ଚେଷ୍ଟା କରୁଥିଲାବେଳେ କେଉଁ ଆହୁରି ବଡ଼ ଶକ୍ତି ବଳରେ ଧ୍ୱଂସକୁ ନିରୋଧ କରି ଜୀବନକୁ ବିକାଶ କରିହୁଏ, ତାହାରି ଆପଣ ପ୍ରତୀକ । ଏ ଦେହ ମାଟିର ମୂର୍ତ୍ତି ନୁହେଁ, ଏ ଜୀବନ୍ତ ଇତିହାସ ।

ସେ ଭଙ୍ଗା ଭଙ୍ଗା ଇଂରେଜୀରେ ହିଁ କଥା କହିଲେ, ସେଥିରେ ଥିଲା ଦକ୍ଷିଣୀ ବୋଲିର ଉଚ୍ଚାରଣ । ଜଗୁ ବି ଇଂରେଜିରେ କଥା କହୁଥାଏ, ସେ ବି ଓଡ଼ିଆ ଟୁଣ୍ଡର ଇଂରେଜୀ । ତାଙ୍କର ଲମ୍ବା ନେଳିଆ ଶାଢ଼ୀ, ଦକ୍ଷିଣୀ ପିନ୍ଧା, ଖୋଲା ମୁଣ୍ଡରେ ଦକ୍ଷିଣୀ ଖୋଷା, ସେଥିରେ ସେବତୀଫୁଲ ଗୁଞ୍ଜା ହୋଇଥିଲା । ନାକରେ କାନରେ ହାତରେ ବେକରେ ହୋଇ ସାମାନ୍ୟ ଅଳଙ୍କାର, ସେଥିରେ ବି ଦକ୍ଷିଣରହିଁ ଶୈଳୀ । କିନ୍ତୁ ତାଙ୍କ ବେଶ କି ଭାଷାର ବିଭିନ୍ନତା ଜଗୁର ମନକୁ ଆଦୌ ସ୍ପର୍ଶ କଲା ନାହିଁ । ମନେ ମନେ ସେହି ଗୋଟିଏ ଧାରଣା ଯେ ସେ ଆପଣାର, ତା ନିଜ ସମାଜରେ ଯେପରି ସେ ଦେଖିଆସିଛି ସେମାନଙ୍କୁ, ମା ଖୁଡ଼େଇ ଭଉଣୀ ଭାଉଜମାନେ, ଯେପରି ତାର ନିଜର ଘରଣୀ, ସେହି ଶ୍ରେଣୀର, ସେହି ରୂପର, ଦାୟିତ୍ୱ ଓ କର୍ତ୍ତବ୍ୟ ଉପରେ ପ୍ରତିଷ୍ଠିତା ନାରୀମୂର୍ତ୍ତି, ଗଢ଼ିବା ଓ ପାଳିବାହିଁ ତାର କାମ ।

ଅଳ୍ପ କଥାଭାଷା ପରେ ଗୁମ୍ପା ସ୍ୱାମୀର ସ୍ତ୍ରୀ ଉଠିପଡ଼ି ଭିତରକୁ ଗଲେ, କଫି ଓ ଜଳଖିଆ ଆଣିବେ ବୋଲି ।

ତା'ପରେ ଜଗୁ ଓ ଗୁମ୍ପା ସ୍ୱାମୀ ଦୁହେଁ କଥାଭାଷା ଆରମ୍ଭ କରିଦେଲେ । ପରସ୍ପରକୁ ସ୍ନେହ ଶ୍ରଦ୍ଧା କରୁଥିବା ଯୋଡ଼ିଏ ମଣିଷ ପରସ୍ପରର ନୂଆ ନୂଆ ଦିଗ ଆବିଷ୍କାର କରିବାକୁ ଇଚ୍ଛୁକ । ପୁରୁଣା କଥାରେ ପ୍ରୟୋଜନ ନାହିଁ, ତା ତ ସେମାନେ ଆଗରୁ ଜାଣିଛନ୍ତି । ଚାକିରୀ ଜୀବନର କାହାଣୀ ଆଲୋଚନା କରିବା କାହାରି ଇଚ୍ଛା ନଥିଲା । ପଡ଼ିଲା ତାହାରି କଥା, ମଣିଷର ପିଠିପଟେ ସେହି ଯେଉଁ ଥାଏ ମାଟି ଆଉ ମଣିଷ, ମଣିଷର ସମାଜ ଆଉ ତାର ଚଳଣିଭଙ୍ଗୀ, ଆଉ ତାର ପରମ୍ପରାଗତ ବିଚାରଧାରା । ଏଇଥିରୁ ନାନା କଥା, କୁଜଙ୍ଗରୁ ତ୍ରିଚୁରଯାକେ । ଆସିଲା ରାଜନୀତି, ସ୍ୱାଧୀନତା ପୂର୍ବର କାହାଣୀ, ପୁଣି ସ୍ୱାଧୀନତା ଉତ୍ତାରୁ ଜଗୁ ପରିଡ଼ା ଓ ଗୁମ୍ପାସ୍ୱାମୀ ଦେଖିଲେ ଯେ ନାନା ବିଷୟରେ ସେମାନଙ୍କ ମତ ଓ ଅଭିଜ୍ଞତା ଏକାଠି ମିଳିଯାଉଛି । ଯେଉଁଠି ନ ମିଳୁଛି ସେଠି ବି ପରସ୍ପରକୁ ଆମୋଦ ଦେଉଛି ।

ଗପୁଗପୁ କଫି ଆସିଲା, ଜଳଖିଆ ଆସିଲା-ଇଡ୍‌ଲି, ଉପମା, ଦୋଷା, ଚଟଣି, ତରକାରି, ପାମ୍ପଡ଼ । ଗୁମ୍ମା ସ୍ୱାମୀର ସ୍ତ୍ରୀ ଟିକିଏ ବସି କଥାଭାଷାରେ ଯୋଗ ଦେଇ ପୁଣି ଘରକାମ କରିବାକୁ ଚାଲିଗଲେ । ଆଳୁଅ ଲାଗିଲା, ପିଲାଏ ଘରଭିତରକୁ ଆସିଲେ, ଜଳଖିଆ ସାରି ପଢ଼ାଘରକୁ ଗଲେ । ଏଣେ ଆଲୋଚନା ଲାଗିରହିଲା । ଦୁଇଜଣ ସାଧାରଣ ଲୋକ ଯାହାଙ୍କ ନାଁ ଖବରକାଗଜରେ ବାହାରେ ନାହିଁ, କେଉଁ ନାଁ ଡାକ ପଙ୍ଗତରେ ପଡ଼େ ନାହିଁ, ଯାହାଙ୍କ ମତାମତ ପହଞ୍ଚେ ନାହିଁ କ୍ଷମତାର ଅଧିକାରୀମାନଙ୍କ କାନରେ, ପହଞ୍ଚିଲେ ବି କଡ଼ାକର ମୂଲକୁ ଆସନ୍ତା ନାହିଁ, ସେମାନେ ସ୍ୱଚ୍ଛ କଥା କହି ଆଲୋଚନା କରିବାକୁ ଲାଗିଲେ ରାଷ୍ଟ୍ରଭାଷା ବିଷୟରେ, ଭାରତର ବୈଦେଶିକ ନୀତି, ଅର୍ଥନୀତି, ପଞ୍ଚବାର୍ଷିକ ଯୋଜନା, ଶାସନ ନୀତି, ଆଶ୍ରୟପ୍ରାର୍ଥୀ ସମସ୍ୟା ଓ ବିଭିନ୍ନ ସମସ୍ୟା ବିଷୟରେ । ଆମେରିକା, ରୁଷ, ଚୀନ, ପାରସ୍ୟ କିଛି ବାକି ରହିଲା ନାହିଁ । କଫି ଉଡ଼ାଉ ସିଗାରେଟ୍ ଚାଲିଲା, ଆଲୋଚନା ଚାଲିଲା । ମନ ଖୋଲା ଗପ, ଚାକିରୀ କଟକଣା ଆଇନ୍‌ର ଡୁମ୍ମା ମୁହଁରେ ନ ଥିଲା । କିଏ ଶୁଣିବ ପୁଣି ଆଉ କାହାକୁ କହିବ କି ଲେଖିବ ବୋଲି ଯେଉଁ ସଂକୋଚ ଥାଏ, ତା ବି ନ ଥିଲା; ଥିଲା, ଘରର ନିହିତ ସ୍ୱାଧୀନତା, ସ୍ୱାଧୀନ ମତାମତ ।

ଦୁହେଁ ଦୁହିଁଙ୍କ କଥାରେ ଉତ୍ସାହିତ ହୋଇ ଗପିଯାଉଥିଲେ । ମୁହଁ ଆହୁରି ଆହୁରି ଖୋଲିଯାଉଥିଲା । ତା'ପରେ କିପରି କଣ ହେଲା କହିହେବ ନାହିଁ, ହଠାତ୍ ଦେଖାଗଲା, ସେମାନଙ୍କ ମୁହଁ ଆଖି ଝଲସି ଉଠୁଛି, ହାବଭାବରେ ଖେଳି ଉଠୁଛି ଅସ୍ଥିରତା । ସ୍ୱର ଚଢ଼ିଚଢ଼ିକା ଯାଉଛି । ସେମାନଙ୍କ ଉତ୍ତେଜିତ କଥାଭାଷା ଶୁଣି ପିଲାଏ ପଢ଼ା ବନ୍ଦ କରି କବାଟ ସେପାଖେ ଗହଳି କରି ଠିଆହେଲେ । ଗୁମ୍ମାସ୍ୱାମୀର ସ୍ତ୍ରୀ ରୋଷେଇଘର ଚୁଲିମୁଣ୍ଡରୁ ସେକଥା ଶୁଣିପାରି କାମ ବନ୍ଦ କରି ନିଶ୍ୱାସ ରୋକି ରୋକି କାନେଇ ରହିଲେ । ଦୋ ଦୋ ପାଞ୍ଚ ହେଉଥାନ୍ତି ଯେ ଡିଙ୍ଗେ ଯାଇ ମଝିରେ ଠିଆହେବେ କି ନାହିଁ । ତାଙ୍କ ମୁହଁରୁ ପ୍ରଫୁଲ୍ଲତା ଉଭେଇ ଯାଇଥାଏ, ବିଦ୍ୟୁତ ଭଙ୍ଗୀ ସହିତ ଫୁଟିଉଠୁଥାଏ ଆଶଙ୍କାର ଛବି । ପ୍ରତି ମୁହୂର୍ତ୍ତରେ ଭାବୁଥାନ୍ତି, ''କଣ ହେଲା ? କଣ ହେଉଛି ? କଣ ହେବ ଯା ପରେ ?''

ଦୁଇ ବନ୍ଧୁ କଥା କହୁ କହୁ ପାଲଟି ଯାଇଥିଲେ ସତେକି ଦୁଇ ବିରୋଧୀ ପକ୍ଷର ଦୁଇ ଯୋଦ୍ଧା, ପୁରୀ, କୋଣାରକ, ଭୁବନେଶ୍ୱର, ସୀମାଚଳ, ତିରୁପତି ଦେଉଳମାନଙ୍କରୁ ଓହ୍ଲାଇପଡ଼ିଥିଲେ ଇତିହାସକୁ, ପାଖ ପାଖ ହୋଇ ଯୋଡ଼ିଏ ରାଜ୍ୟ, ଓଡ଼ିଶା ଓ ଆନ୍ଧ୍ର, ଅତୀତରେ ତା'ର ବିବଦମାନ ଇତିହାସର କାହାଣୀ, ସେଇଠିଥିଲେ ସେମାନେ ।

''ଏ ସମଗ୍ର ଦେଶଟା ଥିଲା ଯୋଦ୍ଧାମାନଙ୍କ ଦେଶ,'' ଜଗୁ ପରିଡ଼ା କହୁଥାଏ, ''ଓଡ଼ିଶାର ଚାଷୀସୈନ୍ୟ ଭାରତ ବିଖ୍ୟାତ । 'ଖଣ୍ଡା' ଶବ୍ଦରୁ 'ଖଣ୍ଡାଏତ'ର ଉତ୍ପତ୍ତି । ବିଚିତ୍ର ସେ ଖଣ୍ଡାଏତ ଜାତି ।''

''ଅବିକଳ ସେମିତି ଆନ୍ଧ୍ର ଦେଶରେ, ତେଲାଗା ବା ନାଇଡୁ ଜାତି, ଆଉ ରାଜୁଲୁ, ସେମାନେ ତ ପ୍ରସିଦ୍ଧ ଯୋଦ୍ଧା, ଇତିହାସରେ ଆପଣା ରକ୍ତରେ ସତେକି ଅମର ଅକ୍ଷର ଲେଖିଯାଇଛନ୍ତି ।'' ଗୁମ୍ମା ସ୍ୱାମୀ କହିଲା ।

''କୃଷ୍ଣା କାବେରୀ ଦୁଇ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ବି ଓଡ଼ିଶାର ମାଟି ହୋଇଥିଲା, ଓଡ଼ିଆ

ସେଠି ଘରଦ୍ୱାର କରି ରହିଥିଲେ, ସେ ଅଞ୍ଚଳକୁ ଶାସନ କରୁଥିଲେ ।''

''ଅସମ୍ଭବ,''ଗୁମ୍ମା ସ୍ୱାମୀ ଜୋର୍‌ରେ ମୁଣ୍ଡ ହଲେଇ କହିଲା, ''ଓଡିଶା, ଆମେ ଜାଣୁ, ଚିଲିକା ଶେଷଯାକେ ହିଁ ଥିଲା, ତା'ପରେ ସେଠୁ ବି ଓଡିଆ ଚାଲିଗଲେ,ଋଷିକୁଲ୍ୟା ଉତ୍ତରପଟଟା ଓଡିଶା, ଦକ୍ଷିଣକୁ ତେଣିକି ଆନ୍ଧ୍ର ।''

''ଆପଣ ଇତିହାସକୁ ଅସ୍ୱୀକାର କରିବେ ? ପୁରୁଷୋତ୍ତମ ନିଜେ ମଲେ କୃଷ୍ଣା ନଦୀ କୂଳରେ । ପ୍ରତାପରୁଦ୍ରଙ୍କ ସମୟରେ ରାୟ ରାମାନନ୍ଦଙ୍କ ରାଜଧାନୀ ହୋଇଥିଲା ରାଜମହେନ୍ଦ୍ର ।''

ଗୁମ୍ମାସ୍ୱାମୀ କହିଲା, ''ସେସବୁ ସାମୟିକ ଯୁଦ୍ଧ-ବିଜୟ । ଗୋଟାଏ ଜାତି ଯେତେବେଳେ ଦୈବୀ ଯୋଗକୁ ଦୁର୍ବଳ ଅବସ୍ଥାରେ ଥାଏ, ଆଉ ଗୋଟାଏ ଜାତିର ଲୋକେ କିଛି ଦିନ ପାଇଁ ତା ଦେଶକୁ ଅଧିକାର କରି ଖଜଣା ଅସୁଲ କରନ୍ତି; ତା ବୋଲି ସେ ମାଟିର ମଣିଷ ତ ଆଉ ତାଙ୍କ ଭାଷା ଛାଡନ୍ତି ନାହିଁ ।''

ଜଗୁ ପରିଡା କହିଲା, ''ଯୁଆଡେ ଦେଖିବେ, ଓଡିଆ ନାଁ, କଳିଙ୍ଗ ନଗର, କଳିଙ୍ଗ ପାଟଣା, ଓଡବାଡି, ବିଶାଖା ପାଟଣା, ବିଜୟ ବାହୁଡା- ଇଂରେଜ ଆସିଲା ପରେ ସେ ନାଁକୁ ତେଲୁଗୁ କରାହୋଇଛି, ଯେମିତି ଜେମାଦେଇପୁରରୁ ଜିମିଡିପେଟା, କଙ୍କଡା ପାହାଡକୁ ଏଣ୍ଡ୍ରକା, 'ଗଡ ଗୁଡା 'କୁ 'ଗେଦ୍‌ଡା' । ଦୁର୍ଗରେ, ଦେଉଳରେ ଅସଂଖ୍ୟ ଓଡିଆ ଶିଳାଲିପି, ଦାନପତ୍ର ଓଡିଆରେ ଲେଖା, ତା'ପରେ ତ ଛପାଇତିହାସ, ଖାଲି ତୁଚ୍ଛା ତୁଣ୍ଡକଥାରେ କିଏ ଯାକୁ ଉଡେଇଦେଇପାରିବ ? ଏ ଜାତିର ତଣ୍ଟି ଚିପାହୋଇଛି, ଆଜ୍ଞା, ଗଲା ମେଦିନୀପୁର, ସିଂହଭୂମି ଗଲା, ରାୟପୁର, ଫୁଲଝର, ବସ୍ତର କେତେ କଣ ଗଲା, ଗଲା ଇଚ୍ଛାପୁର, ଜଳନ୍ତର, ବୁଡାରସିଂହ, ମଞ୍ଜୁଷା, ଟେକାଲି, ଗଙ୍ଗରାଜ, ମାଡଗୋଳ, ଦକ୍ଷିଣପ୍ରାନ୍ତର ସବୁ ଦେଶ । କାଲିକା କଥା , ଷଢେଇକଳା ଖରସୁଆଁ ବି ନେଇଗଲେ ।'' ତା'ର ସ୍ୱରରେ ଆହତ ଆର୍ତ୍ତ ଅଭିମାନର ଚିତ୍କାର ଫୁଟିଉଠିଲା ।

ଗୁମ୍ମାସ୍ୱାମୀ କହିଲା,''କୁଆଡେ କଣ ଯାଇଥିବ, ଦକ୍ଷିଣରେ ଓଡିଶାର କିଛି ଯାଇନାହିଁ, ବରଂ ଆନ୍ଧ୍ରର ସବୁ ଯାଇଛି । ଏଇ ଦେଖନ୍ତୁ ପାରଳାଖେମୁଣ୍ଡିଟା, କେଉଁ ଯୁକ୍ତିରେ ସେଇଟା ଓଡିଶାରେ ରଖାହୋଇଛି ? କୋରାପୁଟ ଜିଲ୍ଲାର ରାୟଗଡା, ଗୁଣୁପୁର ତାଲୁକମାନ, କିଏ ସେଠି ବୁଝେ ଓଡିଆ କଥା ? ତଣ୍ଟି ଚିପା ହେଲା ଆନ୍ଧ୍ରର, ବିନା କାରଣରେ ଲକ୍ଷ ଲକ୍ଷ ନିରୀହ ଆନ୍ଧ୍ରଙ୍କ ଉପରେ ଓଡିଶାର ଶାସନ ଲଦିଦିଆହେଲା ।''

''କଣ କହୁଛନ୍ତି ଆପଣ ! ପାରଳା-ରାୟଗଡା-ଗୁଣୁପୁର ! ସେ ଅଞ୍ଚଳରେ କେଇ ଜଣ ବା ତେଲୁଗୁ ? କେବେ ସେମାନେ ଆସିଲେ ସେଠିକି ? ଆପଣ ଦେଖିଛନ୍ତି ସେ ଜାଗା ସବୁ ?''

''ଦେଖିଲେ କଣ ଅଧିକା ହେବ, ଆଜ୍ଞା, କେତେ ଲୋକ ତ ଦେଖିଛନ୍ତି, ଜାଣିଛନ୍ତି, ଲେଖିଛନ୍ତି । ଆପଣ ଏ ଯେତେ ଯେତେ ଜାଗା ନାଁ କହୁଛନ୍ତି, କେତେଟା ଦେଖିଛନ୍ତି ସେଥିରୁ ?''

''ପ୍ରତି ଗେଜେଟିଅର ଦେଖନ୍ତୁ, କମିଶନ ଉତ୍ତାରୁ କମିଶନ ବସିଲା, ତା'ର ରିପୋର୍ଟ ଦେଖନ୍ତୁ, ଆଉ ଦେଖନ୍ତୁ ଇତିହାସ,ଚୋଡଗଙ୍ଗ,ନରସିଂହଙ୍କଠାରୁ ଯେ ମୁକୁନ୍ଦଦେବଙ୍କ ଯାକେ-''

''ଦେଖିଛି, ମୁଁ ବି ଇତିହାସର ଛାତ୍ର । ଆପଣ ପ୍ରତାପରୁଦ୍ରଙ୍କ କଥା କହିଲେ; କୃଷ୍ଣଦେବ ରାୟଙ୍କୁ ଭୁଲିଯାଆନ୍ତୁ ନାହିଁ । ପଣ୍ଡିତ, ସଂଗୀତଜ୍ଞ, ମହାଯୋଦ୍ଧା, ଉଦାରଚେତା; ଭାରତରେ କେତେଜଣ

ରାଜା ଥିଲେ ତାଙ୍କ ପରି ? ତାଙ୍କ ରାଜସଭା ସାକ୍ଷାତ୍ ବିକ୍ରମାଦିତ୍ୟଙ୍କ ରାଜସଭା ପରି । କୃଷ୍ଣଦେବ ରାଏଲୁ ଆନ୍ଧ୍ରଦେଶର ଗୌରବ, ଐତିହାସିକ ଆନ୍ଧ୍ର ସାତବାହନ ଚକ୍ରବର୍ତ୍ତୀଙ୍କ କୀର୍ତ୍ତିକୁ ତାଙ୍କ କାର୍ଯ୍ୟକଳାପ ସ୍ମରଣ କରାଇଦେଉଥାଏ । ଅନ୍ୟାୟରେ ଓଡିଶା ରାଜା ଆନ୍ଧ୍ରଦେଶର ମସ୍ତବଡ ଅଞ୍ଚଳ ଉପରେ ଶାସନ କରିଆସୁଥିଲେ । କୃଷ୍ଣଦେବ ରାଏ ସେ ଅନ୍ୟାୟର ପ୍ରତିକାର କଲେ । ଆଗ ମୁକ୍ତ କଲେ ଉଦୟଗିରି ଦୁର୍ଗକୁ, ପ୍ରତାପରୁଦ୍ରଙ୍କ କକେଇ ତିରୁମଲାଇ ରାଉତରାଏଙ୍କୁ ବନ୍ଦୀ କଲେ । ତା'ପରେ କୃଷ୍ଣାନଦୀ ମୁହାଣ ପାଖର ପ୍ରସିଦ୍ଧ କୋଣ୍ଡାଭିଡ ଦୁର୍ଗ ଅଧିକାର କଲେ । ସେଠି ବନ୍ଦୀ ହେଲେ ପ୍ରତାପରୁଦ୍ରଙ୍କ ପୁଅ ବୀରଭଦ୍ର । ତା'ପରେ ଅନ୍ୟାନ୍ୟ ଦୁର୍ଗ ଦଖଲ କଲେ । ବିଣୁକୋଣ୍ଡା, ବାଲାକୋଣ୍ଡା ଦୁଇ ଦୁର୍ଗ ଅଧିକାର କଲେ, ତା'ପରେ ନେଲେ ପ୍ରସିଦ୍ଧ କୋଣ୍ଡାପଲ୍ଲି ଦୁର୍ଗ । ପ୍ରତାପରୁଦ୍ରଙ୍କର ଏକ ରାଣୀ, ଦୁଇ ପୁଅ, ସାତ ଅମାତ୍ୟ ବନ୍ଦୀ ହେଲେ । ସେଇଠୁ ଗଲେ ସୀମାଚଳମ୍ । ସେଠି ବିଜୟସ୍ତମ୍ଭ ଗଢ଼ିଲେ, ତା'ପରେ ଉତ୍ତରକୁ ଯାଇ ସମୁଦାୟ ସମୁଦ୍ରକୂଳ ଅଞ୍ଚଳ ମୁକ୍ତ କଲେ । ପ୍ରତାପରୁଦ୍ର କି ସର୍ତ୍ତରେ ସନ୍ଧି କଲେ ଜାଣିଥିବେ ତ ଆପଣ-'' ହସିଦେଇ ଗୁମ୍ମାସ୍ୱାମୀ କହିଲା, ''ପ୍ରତାପରୁଦ୍ର ତାଙ୍କୁ ଜୋଇଁ କଲେ, ଆଜ୍ଞା, ତାଙ୍କ କନ୍ୟା ତୁକ୍କାଙ୍କୁ ତାଙ୍କୁ ବିଭା ଦେଲେ । ତାପରେ ମୁକୁନ୍ଦଦେବଙ୍କ କଥା କହୁଛନ୍ତି ନା, ମୁକୁନ୍ଦ ତ ନିଜେ ତେଲଙ୍ଗା ଲୋକ, ରାଜୁ କି ତେଲଙ୍ଗା ସେ ଓଡିଶା ସିଂହାସନ ଦଖଲ କଲେ । ଏଇ ତ ଇତିହାସ ।''

''ନୁହେଁ, ନୁହେଁ, ନୁହେଁ,'' ଜଗୁ ପରିଡା ଚିତ୍କାର କଲା, ''ଏଥିରେ ଅନେକ ମନଗଢ଼ା କଥା ରହିଗଲା । ମୁକୁନ୍ଦ ବି ତେଲଙ୍ଗା ନ ଥିଲେ, ସେ ଦକ୍ଷିଣ ଅଞ୍ଚଳର ଲୋକ, ତାଙ୍କ ଆଚାର ବ୍ୟବହାର ପାଇଁ ତାଙ୍କୁ ତେଲଙ୍ଗା କୁହାଯାଉଥିଲା-''

କଥାକୁହା ଜାହାଜଟା ତଳେ ଲାଗିଯାଇ ଅଟକିଯାଇଥାଏ, ଖାଲି ଲାଗି ଯାଇ ନ ଥାଏ, ତା'ର ତଳି ଉଡିଯାଇଥାଏ, ସେଇଟା ଧୀରେ ଧୀରେ ବୁଡୁଥାଏ । ଗୁମ୍ମାସ୍ୱାମୀର ନିମନ୍ତ୍ରଣର ଆବେଗ, ଜଗୁ ପରିଡାର ଉଚ୍ଛୁଳା ସ୍ନେହ, ଗୁମ୍ମାସ୍ୱାମୀର ସ୍ତ୍ରୀର ଯତ୍ନ ଓ ପରିଶ୍ରମ, ସଞ୍ଜ ଗୋଟାକର ଘର ଘର ଆପଣା ଆପଣା ଭାବ, ଏସବୁ କୁଆଡେ ଉଭେଇ ଯାଇଥାଏ । ଦୁଇ ବନ୍ଧୁ ନୁହନ୍ତି, ଯେପରିକି ଅଚିହ୍ନା ଶତ୍ରୁ ଦୁଇଜଣ ହଠାତ୍ ହାବୁଡା ହାବୋଡି ହୋଇ ଚିହ୍ନାଚିହ୍ନି ହୋଇ ତା ଉତ୍ତାରୁ ଯାହାହେବ ସେଥିପାଇଁ ନିଜକୁ ପ୍ରସ୍ତୁତ କରୁଥାନ୍ତି ।

ଏତିକିବେଳେ କବାଟ ଖୋଲିଗଲା, ପଶିଆସିଲେ ଗୁମ୍ମାସ୍ୱାମୀର ସ୍ତ୍ରୀ ଓ ତାଙ୍କ ପଛେ ପଛେ ପିଲାଗୁଡିକ । ଗୁମ୍ମାସ୍ୱାମୀର ସ୍ତ୍ରୀ ଭୟର ଭାବ ଉପରେ ହସ ଢାଙ୍କିଦେଇ କହିଲେ:

''ଯେ କେଉଁ କଥା ପଡିଛି ଆଜି ? ରାଜା ମହାରାଜାମାନଙ୍କ କାହାଣୀ ପରା ! ସେ ବିଷୟରେ ଯୋଗୀ ଗୀତ ବୋଲନ୍ତି ।''

ଗୁମ୍ମାସ୍ୱାମୀ ଗମ୍ଭୀର ହୋଇ କହିଲା, ''ଏ ଇତିହାସ ।''

ତାର ସ୍ତ୍ରୀ କହିଲେ, ''ରଖ ତମର ଇତିହାସ । ମହାଭାରତ ପଢ଼ିଲେ ସେଦିନ ଘରେ କଳି ଲାଗେ ବୋଲି ଲୋକେ କହନ୍ତି । ତୁମର କୃଷ୍ଣଦେବ ରାଏଲୁ ଥିଲେ ତୁମକୁ ସେ ମନ୍ତ୍ରୀ କରିଥାନ୍ତେ, ଭାବିଚ, ନା ପ୍ରତାପରୁଦ୍ର ପୁରୁଷୋତ୍ତମ ଥିଲେ ଏ ଭଦ୍ରଲୋକ ହୋଇଥାନ୍ତେ ତାଙ୍କ ଅମାତ୍ୟ ? ଗରିବ ଲୋକେ ସେତେବେଳେ ବି ପେଟ ପାଇଁ କାମ କରୁଥିଲେ, ବୁଲୁଥିଲେ ବାବୁ, ମାଇପେ ଘର ଚଳେଇବାକୁ ଧନ୍ଦି

ହେଉଥିଲେ, କେମିତି ହାଣ୍ଡିଟା ଚୁଲି ଉପରେ ବସିବ, ଦିଟା ଫୁଟିଲେ ପିଲାଏ ଖାଇବେ, ବଞ୍ଚିବେ । ତୁମ କୃଷ୍ଣଦେବ ରାୟ ପ୍ରତାପରୁଦ୍ରଙ୍କ ଯୁଦ୍ଧର ପାହାର ସେଇ ଗରିବଙ୍କ ମୁଣ୍ଡ ଉପରେ, ଘର ଉପରେ, ହାଣ୍ଡି ଉପରେ ବି ପଡିଥିବ, ମୁଣ୍ଡ କୁଢ଼ ଉପରେ ତୋଳା ହୋଇଥିବ ବିଜୟସ୍ତମ୍ଭ ।''

ତାଙ୍କର ଉତ୍ତେଜିତ ଲୁହ ଛଳ ଛଳ ମୁହଁକୁ ଦେଖି ଦୁଇ ବନ୍ଧୁ ଚମକିପଡି ଠିଆ ହୋଇପଡିଲେ । ସେ କହିଗଲେ, ''ଆଜି କୋଉ ଇତିହାସ ତମ ପିଲାଙ୍କ ମୁହଁରେ ଆଧାର ଦେଉଛି ? କାମ କର, ଦାନାକନା ଯୋଗାଡ କର, ନ ହେଲେ ସରିଲା । ଖଟିଲ ,ଘର ସମ୍ଭାଳିଲ, ତେଣିକି ଯୋଉ ବୋଲିରେ ଇଚ୍ଛା, ସେ ବୋଲିରେ କଥା କହ । ତାମିଲ କି ତେଲଗୁ କି ଓଡିଆ  କି ବଙ୍ଗାଳି କି ପଞ୍ଜାବି, ଯୋଉ ପୋଷାକ ମନ ସେ ପୋଷାକ ପିନ୍ଧି, ଭଗବାନଙ୍କୁ ଆଶ୍ରା କଲ, ସତରେ ଚଳିଲ, ତୁମେ ମଣିଷ ହୋଇ ସଂସାରରେ ରହିବ ! ଆଃ ! ତୁମେ ପୁରୁଷଗୁଡାକ । ମାଇପେ କେତେ କଷ୍ଟ ପଡି ସାଇତନ୍ତି,ସମ୍ଭାଳନ୍ତି, ସବୁ ଏକାଠି କରି ଗଢ଼ନ୍ତି, ଆଉ ତମକୁ କେଉଁ ଭୂତ ଲାଗେ ଯେ ଦୁନିଆକୁ ଭାଙ୍ଗିରୁଜି ଭସ୍ମ କରିଦେବାକୁ ତମକୁ ତର ସହେ ନାହିଁ !''

''ନାହିଁ - ନାହିଁ, କିଛି ନାହିଁ, କିଛି ନାହିଁ, ଖାଲି ଗପ ହେଉଥିଲା,''ଦୁଇ ବନ୍ଧୁ ଏକାଠି କହିହେଉଥିଲେ । ଅତୀତ  କାହିଁ କୁଆଡେ ଉଭେଇଯାଇଛି । ପୁଣି ଲେଉଟି ଆସିଛି ସହଜ ଆବେଗ ।

ଗୁମ୍ମା ସ୍ୱାମୀ ହସୁଛି, ଜଗୁ ପରିଡ଼ା ହସୁଛି ।

ଜଗୁ ନିମନ୍ତ୍ରଣ କଲା, ''କାଲି ସଞ୍ଜରେ ସପରିବାରେ ଆମ ଘରେ- । ମୁଁ ଆସି ନେଇଯିବି ।

''ନିଶ୍ଚୟ, ନିଶ୍ଚୟ'' ଗୁମ୍ମା ସ୍ୱାମୀ କହିଲା । ଖାଲି ମୁଣ୍ଡ ହଲାଇ ନୁହେଁ, ତା'ର ଦେହ ଗୋଟାକଯାକ  ଝାଙ୍କି ହୋଇ ଯାଉଥାଏ ।

ଆନନ୍ଦରେ ଗଦ୍‌ଗଦ ହୋଇ ଜଗୁ ପରିଡ଼ା ବିଦା ହୋଇ ଯିବାକୁ ବାହାରିଲାବେଳେ ତା ହାତ ପାପୁଲିକି ବଜ୍ରମୁଠାରେ ଚିପିଧରି ଗୁମ୍ମାସ୍ୱାମୀ ତା'ର କାନପାଖେ ମୁହଁ ଲଗାଇ କହିଲା, ''ଆମେ ଦୁଇ ଭାଇ ।'' ଜଗୁ ପରିଡ଼ା ତା'ର ଅଣ୍ଟାରେ ହାତ ଗୁରେଇଦେଇ ତାକୁ କୁଣ୍ଢେଇ ପକାଇ କହିଲା, ''ଖାଲି ଏ ଜନ୍ମର ନୁହେଁ, ଜନ୍ମଜନ୍ମାନ୍ତରର ।''

# ସାତପାଞ୍ଚ

''ତଥାପି ଦେଶଟା ଖୁବ୍ ଆଗେଇଛି'' ନଅ ମାହାଲା କୋଠା ହୋଟେଲର ଆଠତାଲାରେ ନିଜର ନିବୁଜା କୋଠରୀରେ ଆରାମ ଚୌକିରେ ନରମ ଗଦି ଉପରେ ଆଉଜି ବସି ଦଧିସାହୁ ସେହି ପରିଚିତ ଆଶା ବିଶ୍ୱାସର କଥା ମନ ଭିତରେ କହି ହେଉଥିଲେ-

''ଯେ ଆଗପଛ ଦୁଇଟା ଦେଖିଛି ସେ କେମିତି ସ୍ୱୀକାର ନ କରିବ ଦେଶ ଆଗେଇଛି ବୋଲି ? ଗାଁ ଗାଁକୁ ରାସ୍ତା ଗଲାଣି, ଯାଉଛି, ବିଜୁଳି ଗଲାଣି, ଯାଉଛି, ଥିଲା ମେଣ୍ଟାକୁଡ଼ିଆ, ଏବେ ଭଲ ଘର, କେତେଠି କୋଠା, କେତେ ସୁଖ ସୁବିଧା ଖେଳେଇ ହୋଇ ପଡ଼ିଲାଣି, କେତେ ଯାନବାହାନ, ଯନ୍ତ୍ରପାତି, ବେପାର ବଣିଜ, କାମ ଧନ୍ଦା, ରୋଜଗାର କରିବାକୁ ନୂଆ ନୂଆ ବାଟ । ଚାଷ ବେଉଷା କେତେ କେତେ ବଢ଼ିଗଲାଣି । ଶିକ୍ଷା କେତେ ବ୍ୟାପିଲାଣି । ସହର ସବୁ କେତେ କେତେ ହେଲାଣି, କେଡ଼େ କେଡ଼େ ବଢ଼ିଲାଣି, ଆହୁରି ବଢୁଛି, କଳକାରଖାନା କେତେ କେତେ ହେଲାଣି, ଆହୁରି ବ୍ୟାପୁଛି । ଅଥଚ କିଛି ହେଉନାହିଁ; ସବୁ ବିଗିଡ଼ି ଯାଉଛି ବୋଲି ଏତେ ପାଟିତୁଣ୍ଡ । ମଝିରେ ମଝିରେ ଏତେ ଏତେ ସମସ୍ୟା ଯେ ସେଥିରୁ ଦେଶ କେମିତି ଉଧୁରିବ ବୋଲି ବାଟ ଦିଶେ ନାହିଁ, କିନ୍ତୁ ତଥାପି ତ ଦେଶ ଆଗୋଉଛି, ଆଗେଇବ । ବିଶ୍ୱାସ କଲେ ସିନା ମନ ଶାନ୍ତି ହେବ; ଅଧୀର ହୋଇ କି ଲାଭ ?''

ଦ୍ୱିପ୍ରହର ଗଡ଼ି ଯାଉଥାଏ । ଗୋଟିଏ ମନ୍ତ୍ରଣା ସଭାରେ ଯୋଗ ଦେବେ ବୋଲି ସେ ତା ପୂର୍ବଦିନ ସଞ୍ଜରେ ଉଡ଼ାଜାହାଜରେ ଆସି ପହଞ୍ଚିଥାନ୍ତି । ଆଉ ଅଧଘଣ୍ଟାଏ ପରେ ସେ ସଭାରେ ବସିବାକୁ ବାହାରିବେ । ଭାବୁଭାବୁ ମନେମନେ ଚାଲିଥାଏ ଅଭ୍ୟସ୍ତ ବକ୍ତୃତା; ସତେ ଯେପରିକି ଜନତା ଶୁଣୁଛନ୍ତି, ସେ ବକ୍ତୃତା ଦେଉଛନ୍ତି ।

''ଦରଦାମ ଆଗଠୁଁ ବହୁଗୁଣ ବଢ଼ିଛି ସତ, ଟଙ୍କାର ଦାମ୍ କମିଛି । କିନ୍ତୁ ସେଇଟା କଣ ଖାଲି ଆମ ଦେଶରେ ନା଼ ଅଇଛା ଜଗତସାରା ? ମଣିଷଙ୍କ ସଂଖ୍ୟା କେତେ ବଢ଼ିଲାଣି , ଆହୁରି ବଢୁଛି, ସେହି ଅନୁସାରେ ଜିନିଷ ଉତ୍ପାଦନ କାହିଁ ? ଖାଲି କଣ ସେତିକି କାରଣ ? ଦେଖ ଯେ ଆଗେ ଯେତେବେଳେ ଦୁଧମହୁ ଭାସୁଥିଲା କେଉଁ ଅମଳରେ ବୋଲି କହୁଥିଲ, ସେଇଟା ଭାସୁଥିଲା ଗାଁ ଗୋଟିକେ ତିନି ଚାରିଜଣ ବଡ଼ବଡ଼ିଆ ସାଆଁତିଆଙ୍କ ଘରେ, ଅନ୍ୟମାନେ ଲେଙ୍ଗୁଡ଼ି ପିନ୍ଧି ଅଧା ଉପାସ ରହି ଚଳୁଥିଲେ, ସେମାନେ ଭଲ ଖାଇବାକୁ ପିନ୍ଧିବାକୁ, ଭଲରେ ଚଳିବାକୁ ଆଶା ଛାଡ଼ି ଦେଇଥିଲେ, ତେଣୁ ଛଡ଼ାଛଡ଼ି ଲଗୋଉନଥିଲେ କି ପାଟି କରୁନଥିଲେ, ଯେତେ ଧର୍ମବିଶ୍ୱାସ, ଯେତେ ନ୍ୟାୟ ନୀତି କଣ୍ଟ ସବୁ ତିଆରି ହୋଇଥିଲା ସେହି ଗରିବ ଲୋକମାନଙ୍କୁ ସେମିତି ସେହି ଅବସ୍ଥାରେ ରଖିବା ପାଇଁ,

ଉଁ ଚୁଁ ହେଲେ ପାପ, ଅନ୍ୟାୟ, ଅନୀତି କୁହାଯାଉଥିଲା । ଏବେ ଦେଶର ଲୋକେ ତା ମାନିବାକୁ ରାଜି ନୁହଁନ୍ତି, ସବୁ ଭୋଗ ଭାଗ୍ୟ ସମସ୍ତେ ଲୋଡ଼ୁଛନ୍ତି, ଯାହା ଦାମ୍ ପଡୁ, ଯେଉଁ ଉପାୟରେ ପଇସା ମିଳୁ, ତାଙ୍କର ଦରକାର ହିଁ । ତେଣୁ ଆଗଠୁଁ ମଣିଷ ବେଶି ସେତିକି ଖାଲି ନୁହେଁ, ଖରିଦ୍‌ଦାର ବହୁଗୁଣ ବେଶି । ଦାମ୍ ବଢ଼ନ୍ତା ତ' ।''

''ଦୁର୍ନୀତି ବ୍ୟାପୁଛି ସବୁ କହୁଛନ୍ତି, ଲାଞ୍ଚ, ମିଛ, ଆପଣା ସାର୍ଥକାପଣ, ନିଜ ବେଳକୁ ଲାଭ, ଲୋଭ, ପରବେଳକୁ ଶୋଷଣ, ଚିତାକଟା, ତଣ୍ଟିକଟା, ନିଜ ଲାଭ ପାଇଁ ବ୍ୟବସାୟୀ ଖାଦ୍ୟରେ ବି ବିଷ ମିଶାଇ ବିକେ, ସବୁଥିରେ ମିଶାଏ ଭେଜାଲ୍, କଳାବଜାର କରେ । କିନ୍ତୁ କେଉଁକାଳେ ମଣିଷ ନିଜ ସ୍ୱାର୍ଥ ନିଜ ଲାଭ ନ ଖୋଜୁଥିଲା ? ଧନ, କ୍ଷମତା, ସଂସାରୀ ସୁଖ ଖୋଜୁ ନଥିଲା ? କଳେବଳେ କୌଶଳେ ସେତକ ପାଇବାକୁ, ବଢ଼ି ବଢ଼ି ପାଇବାକୁ, ନିଜ ବାଟରୁ କଣ୍ଟା ଆଡ଼େଇ ଦେଉନଥିଲା ? ପର ଉପରେ ଚଢ଼ୋଉ କରୁନଥିଲା ? ଫନ୍ଦି ଫିକର, ହିଂସା ନିଷ୍ଠୁରତା, ପରକୁ କାବୁ କରି ଜଖମ୍ କରି ଧ୍ୱଂସ କରି ନିଜ ବଢ଼ତି କରିବା ଚେଷ୍ଟା ସବୁଦିନେ ଥିଲା, ମଣିଷ ମଣିଷ ହୋଇ ରହିଥିବାଯାକେ ଥିବ । ପରର ବଳ ବେଶି ଥିଲେ, ନିଜ ବଳ ଊଣା ଥିଲେ ସେସବୁ ଖୋଇ ଡ଼ରି ଡ଼ରି ତୁନି ପଡ଼ି ରହେ । ଏବେ ଲୋକଙ୍କ ଡ଼ର ଛାଡ଼ିଛି, ବେକ ଖୋଲା, ସେ ବେକ କାହା ଯୁଆଳୀ ବୋହିବ ନାହିଁ । ସେମିତି ନହେଲେ ସେମାନେ ଆଉ ସ୍ୱାଧୀନ ହେଲେଣି କଣ ? ଏବେ ଲୋକଙ୍କ ତୁଣ୍ଡ ଫିଟିଛି, ସେମାନେ ନିଜ ଅସନ୍ତୋଷ ବଡ଼ ପାଟିରେ କହି ପାରୁଛନ୍ତି । ଆଗେବି ଏଇଆ ଏଇଆ ଥିଲା, କିନ୍ତୁ ଆଗେ କେହି ପାଟି ଫିଟେଇବାକୁ ସାହସ କରୁନଥିଲେ, ସେମାନଙ୍କ ମନକୁ ନାନା ପ୍ରକାର ଭୟ ଗ୍ରାସିଥିଲା, ତେଣୁ ତ,- ଏତେ ଏତେ ଅତ୍ୟାଚାରୀ ରାଜା ଥିଲେ, କିନ୍ତୁ ସେମାନଙ୍କର ବି ପ୍ରଶସ୍ତି କି ଯଶୋଗାଥା ଲେଖା ହୋଇ ନରହିଛି ! ସ୍ତାବକମାନେ ଡ଼ରି ଡ଼ରି ଲେଖିଛନ୍ତି ସିନା, ଆଉ କଣ ସତରେ ?''

ଦଧି ସାହୁ ମନେ ମନେ ନିଜ ଯୁକ୍ତିରେ ନିଜ ବିଶ୍ୱାସ ଜନ୍ମାଇ ପ୍ରସନ୍ନ ମୁହଁ କରି ଅଟକିଲେ । ସତେକି ଜନତା ତାଙ୍କ ମୁହଁକୁ ଚାହିଁ ରହିଛନ୍ତି । ପୁଣି ମନେ ମନେ କହିଗଲେ, ''ସବୁଦିନେ ସବୁ ବିଷୟରେ ବଳୁଆ ଲୋକ ହିଁ ନିର୍ବଳୁଆକୁ ମାଡ଼ିଦଳି ଚଳି ଆହୁରି ବଳୁଆ ହେଉଥିଲା । ଯେତେ ଯାହା ଅନ୍ୟାୟ ଅନୀତି ପାପ ବୋଲି କହୁଛ ସବୁକାଳେ ଥିଲା । ସବୁକାଳେ ଥିଲା ଯେ ପାରିଲା ଲୋକ ହିଁ ଜିତିବ, ନିର୍ବଳୁଆଙ୍କୁ ଦୁହିଁବ, ଅମଳ କରିବ, ନିଜେ ଘର କରିବେ, ଧନ ସମ୍ପାଦି ଯିବେ ପୁତ୍ର ପୌତ୍ର ପ୍ରପୌତ୍ରଙ୍କ ପାଇଁ, ନପାରିଲା ଲୋକ ତାଙ୍କ ନାଁରେ କଳଙ୍କ ଗାଉଥିବେ, ତାଙ୍କ ଗରମ ପାଣିରେ କାହାରି ଚାଳ ପୋଡ଼ିବ ନାହିଁ ।''

''ନ୍ୟାୟ, ନୀତି, ଶାସ୍ତ୍ରର ଉପଦେଶମାନ, ଏଗୁଡ଼ାକ କ'ଣ ସଂସାରୀ ଜୀବନରେ କେବେ କାଟୁ କରିଥିଲା ନା କରେ ? ଏଇ ସବୁ ଶିଖି, ଏମିତି କାମ କରି ଦୁନିଆରେ କେହି ଚଳି ପାରିବ ନା କଣ ? ତୁମେ, ଯଦି ଏସବୁ ମାନୁଥାଅ, ସେମିତି ଚଳୁଥାଅ, କଟାକଟି ଛଡ଼ାଛଡ଼ି ଦୁନିଆଁରେ ତୁମେ ମଣିଷଙ୍କ ମଳି ହୋଇ ପଡ଼ି ରହିଥିବ, ସମସ୍ତିଙ୍କଠୁଁ ଗୋଇଠା ଖାଇବ, ଖାଇବାକୁ ନପାଇ ଶୁଖିଶୁଖି ମରିଯିବ । ନା ନା ନା, ମଣିଷଙ୍କ ସଙ୍ଗରେ ରହି ତାଙ୍କ ସମାଜରେ ଉଚ୍ଚ ସ୍ଥାନ, ଖାତିରି, ଧନରତ୍ନ, ସୁଖ ସମୃଦ୍ଧି ପାଇବାକୁ ମନ ଥିଲେ ତୁମକୁ ବଙ୍କା ଆଙ୍ଗୁଠିରେ ଘିଅ ଉଠେଇବାକୁ ପଡ଼ିବ, ନଖ ଦାନ୍ତ ଲଗେଇ ସୁଦ୍ଧା ଯୁଦ୍ଧ କରିବାକୁ ପଡ଼ିବ । ନୀତି, ଆଦର୍ଶ, ବହିର ଉପଦେଶ- ଏଗୁଡ଼ାକ ଫାନ୍ଦି ଫାନ୍ଦି

ରଖା ହୋଇଛି ନପାରିଲା ଦୁର୍ବଳ ନିକମା ପଛୁଆ ଲୋକଙ୍କ ପାଇଁ, ଯେ ଦୂରବସ୍ଥାରେ ସବୁକାଳେ ପଡ଼ିଥାନ୍ତି । ଏଗୁଡ଼ାକରେ ବିଶ୍ୱାସ ଥିଲେ ସେମାନେ ଆପଣାକୁ ବୋଧ ଦେଇ ପାରିବେ ଯେ ଆମର ତା' ନଥିଲେ ଚିନ୍ତା ନାହିଁ, ଯା' ତ ଅଛି, ଏ ଜନ୍ମରେ ସିନା ଦୁଃଖୀ ହେଲୁଁ, ମଲାପରେ ଲୋକେ ଆମ ନାଁ ପଡ଼ିଲେ ଦଣ୍ଡବତ କରି ଜେ ଜେ କହିବେ, ଇହ କାଳ ନଷ୍ଟ ହେଉ, ପରକାଳରେ ମହାସୁଖରେ ମହାଐଶ୍ୱର୍ଯ୍ୟରେ ଆମେ ସ୍ୱର୍ଗରେ ବସିଥିବୁଁ । ପ୍ରକୃତରେ କେଉଁ କନ୍ଦରରେ କେଉଁ ବାଗରେ ଚଳିଲେ ନିଜର ସବୁ ଉଦ୍ଦେଶ୍ୟ ଅବଶ୍ୟ ଫଳିବ ତାକୁ ସବୁ ଏକାଠି କରି ପୋଥି ଲେଖା ହୋଇନାହିଁ, ଲେଖା ହେବା ଉଚିତ୍ ଥିଲା । ସେହି ହୋଇଥାନ୍ତା ବ୍ୟବହାରିକ ନୀତିଶାସ୍ତ୍ର, ଅଭ୍ୟାସ କଲେ ସଙ୍ଗେ ସଙ୍ଗେ ସିଦ୍ଧି । ନିଜ ସଂସାରୀ ଅଭିଜ୍ଞତାରୁ, ନିଜ ସାଧାରଣ ବୁଦ୍ଧିରୁ ଲୋକେ ସବୁକାଳେ ଜାଣିଥିଲେ ସେ ବାଟଟା କେଉଁଟା, ଜାଣି ସେଇଆକୁ ଧରୁଥିଲେ । ଏବେ ବି ବୁଦ୍ଧିଆ ଲୋକେ, ହିସାବୀ ଲୋକେ ସେଇଆ କରନ୍ତି, ଜିତନ୍ତି, ନପାରିଲା ଲୋକ, ଓଲା ଲୋକ, ଦୁର୍ବଳିଆ ଲୋକ ହାରିଯାଇ ଲେଙ୍ଗୁଟି ମାରି ଘରେ ବସନ୍ତି, ଆଉ ଶାସ୍ତ୍ର ଉପଦେଶ ଗାଆନ୍ତି, ମାଳି ଗଡ଼ାନ୍ତି । ତାଙ୍କ ଭିତରେ କେତେ ଜଣ ଅଛନ୍ତି ଯାହାଙ୍କୁ ଭୋଗଭାଗ୍ୟ ମିଳିଲେ ସେମାନେ ନେବାକୁ ମନା କରି ଦିଅନ୍ତି, ଆସୁ ପଛେ ସେହି ଅନ୍ୟମାନଙ୍କ ହାତରୁ, ଯେଉଁମାନଙ୍କୁ ଅସାଧୁ ଅସତ୍ ଦୁର୍ନୀତିପରାୟଣ ବୋଲି ସେମାନେ ସମାଲୋଚନା କରନ୍ତି । ମିଳିଲେ ଛାଡ଼େ କିଏ ? ନା କଣ ?''

ଆଃ ! ସୁନ୍ଦର ଯୁକ୍ତି; ଦଧି ସାହୁ ନିଜ ମନକୁ ମନ କହିହେଲେ । ସ୍ମରଣ ପଡ଼ିଗଲା, ଏସବୁ ଖାଣ୍ଟି କଥା, ନିଜ ଜୀବନକୁ ଚିପୁଡ଼ି ଚିପୁଡ଼ି ସଂଗ୍ରହ କରିଥିବା ସତ ଅଭିଜ୍ଞତା । ଗଣ୍ଡ ମଫସଲରେ ପିଲାଦିନର କୁଡ଼ିଆ ଖଣ୍ଡିକ, ଦି'ମାଣ ଚାଷ, ହସି ଖେଳି ବୁଲି ପିଲାଙ୍କିଆ ନାନା ଚଗଲାମିରେ ନାନା ଦୁର୍ଦ୍ଦଙ୍ଗାପଣରେ ବେଳ କଟେଇ କେମିତି କେଜାଣି ମ୍ୟାଟ୍ରିକୁଲେସନ୍ ଥାର୍ଡ୍‌କ୍ଲାସ୍‌ଯାକେ ପାଠପଢ଼ା ଚାଲିଯାଇଥିଲା । ବଳ ବଢ଼ିଲା, ସାହସ ବଢ଼ିଲା, ସେହି ବୁଦ୍ଧି ଯେ ଉପସ୍ଥିତ ସମୟ ଭିତରୁ ସୁବିଧା ସୁଯୋଗ ନେବାକୁ ବାଟ ବତାଏ, ସତେ ଯେମିତି କାନରେ କହିଦିଏ । ସେତେବେଳେ କେତେ ଲୋକ କହିଥିଲେ ଏଇଟା ବାକୁଙ୍ଗା ହୋଇଗଲା, ବାଇ ବିଛୁଆତି, ଅପଦାର୍ଥ । ସେ ହସୁଥିଲେ, ମନ ଯୁଆଡ଼େ ହେଲା ସେହିବାଟେ ଚାଲିଥିଲେ । ଉପରେ ପଡ଼ି ନଫରନଫର, ଗାଁ ଗାଁ ଘର ଘର ବୁଲି ଲୋକଙ୍କ ସଙ୍ଗେ ଚିହ୍ନାଜଣା, ଲୋକଙ୍କୁ ପଟାପଟି, କ୍ରମେ ଗାଁରୁ ସହରକୁ ବୋଲି ପ୍ରସାର ହେଲା । ଟାଉଟରି, ନଇବନ୍ଧ କାନ୍ତରାଟିର କୁଲି ସର୍ଦ୍ଦାରି, କଣ୍ଟ୍ରୋଲ ଦୋକାନ, ଦଶଲୋକଙ୍କ ନେତାଗିରି, କାହାକୁ ମାରି କାହାକୁ ତାଡ଼ି, ନାନା ବ୍ୟବସାୟ, ନାନା କ୍ଷେତ୍ରରେ ପତିପତ୍ତି, ପାହାଚେ ପାହାଚେ ଉପରକୁ ଉପରକୁ, ଅଇଛାତ ନାଁ ଡ଼ାକ୍, ଅଛପା କାହାକୁ ? ପଚାର ଲୋକଙ୍କୁ, ଦଧି ସାହୁ କିପରି ଲୋକ ? ସେମାନେ କହିବେ ମାନେ; ଅସଲ ଲୋକେ କହିବେ, କି ବିଚକ୍ଷଣ ବୁଦ୍ଧି ! କି କାର୍ଯ୍ୟକାରୀ ଶକ୍ତି ! ସେ ତ ନହେଲେ ନଚଳେ, ଦେଶର ଏକ ଟାଣୁଆ ଖୁଣ୍ଟ, ମଣିଷ ପରି ମଣିଷ । ଦଧି ସାହୁ ନିଜକୁ ନିଜେ ସାର୍ଟିଫିକେଟ୍ ଦେଇ ଖୁସି ହେଲେ । ହାତ ଘଣ୍ଟା ଦେଖିଲେ । ଭାବିଲେ ''ନାଃ; ଯାଉ ଆଉ ପନ୍ଦର ମିନିଟ୍ । ଦାମିକା ଲୋକ ଡ଼େରିରେ ପହଞ୍ଚେ ନାହିଁ ସତ, ଆଗରୁ ବି ପହଞ୍ଚେ ନାହିଁ; ଲୋକେ ବୁଝନ୍ତୁ ତାଙ୍କର ସମୟର ମୂଲ୍ୟ ଅଛି ।''

ମନେ ପଡ଼ିଗଲା, ମନେ ମନେ ଯେଉଁ ଭାଷଣଟି ସେ ଦେଉଥିଲେ ତାହା ସରିବାକୁ ଆଉ

କିଛି ବାକି ରହିଗଲା । ସେତକ ବି ଏଇଠି ନ ସରିଲେ ଅଶାନ୍ତି ଅଶାନ୍ତି ଅଶାନ୍ତି ଲାଗିବ । ଭାଷଣ । ଭାଷଣ । ଭାଷଣ ଦେଇ ଏପରି ଅଭ୍ୟାସ ହୋଇଗଲାଣି ଯେ ଖାଲିଟାରେ ବସିଥିଲେ ବି ମନେ ମନେ ଚାଲିଥାଏ ଭାଷଣ । ନିଶ୍ୱାସ ନେଲା ପରି ଛାଡ଼ିଲା ପରି ଆସେ ଯାଏ । ସୁଯୋଗ ମିଳିଲା ମାତ୍ରେ ତୁଣ୍ଡରେ ଫୁଟେ । କମି ତାର ଉପକାର ? ବନ୍ଧୁମାନଙ୍କ ଆଶା ଉତ୍ସାହ ଆନନ୍ଦ ବଢ଼ାଏ । ଶତ୍ରୁମାନଙ୍କ ଯୁକ୍ତିକୁ କାଟେ, ଭୟକୁ ବଢ଼ାଏ । ଶତ୍ରୁ, ମିତ୍ର, ଉଦାସୀନ ସମସ୍ତିଙ୍କ ଆଗରେ ବିଞ୍ଚି ଦେଇଯାଏ ଦାମୀ ବୁଦ୍ଧିର କଥା । ବହୁମୂଲ୍ୟ ଅବଦାନ- ଭାଷଣ ।

"ଏଇ ଯାହା କହିଯାଉଛି, ଅଳ୍ପ ସମୟ ପରେ ମନ୍ତ୍ରଣା ସଭାରେ ବସିଲାବେଳେ ତାହାରି ଭିତରୁ ବାଛି ବାଛି କେତେ କଥା କହିଦେବାକୁ ମନେ ପଡ଼ିବ ଓ ସେମାନେ ନିଶ୍ଚୟ ମୋର ବୁଦ୍ଧିକୁ ଅନ୍ତତଃ ମନେ ମନେ ପ୍ରଶଂସା କରିବେ । ଏଇଥିରୁ ସେମାନେ ମୌଳିକ ଦିଗ୍‌ଦର୍ଶନ ପାଇବେ ପଦାରେ ବଖାଣିବାକୁ, ସେ କଣ କମ୍ କଥା ? ସେମାନେ କହିବେ ଲୋକଦେଖାଣିଆ ନକଲି ସ୍ୱର ଏ ନୁହେଁ, ଏ ଖାଣ୍ଟି, ଏ ମାଟିର ସ୍ୱର, ଯେ ସବୁ ବୁଝେ ସବୁ ଦେଖେ ସବୁ ଅନୁଭବ କରେ ସେହି ଜୀଅନ୍ତା ସାଧାରଣ ମଣିଷର ସ୍ୱର ।"

"ହଁ, ସେହି ଯାହା ବାକି ରହିଯାଇଥିଲା- ଆଉ ଗୋଟାଏ ଅଭିଯୋଗ ଉଠୁଛି ଯେ ଏବେ ଚାରିଆଡ଼େ ଉଚ୍ଛୃଙ୍ଖଳତା, ହିଂସା, ଅଶାନ୍ତି, ଧନଜୀବନକୁ ବିପଦ, ଅନିଶ୍ଚିତ ବିପଦର ଆଶଙ୍କା, କାହା ଯୋଗୁଁ କାହାଦ୍ୱାରା କେତେବେଳେ କାହା ପ୍ରାଣ ଯିବ ଠିକ୍ ନାହିଁ । ମୁଁ ମନା କରୁନାହିଁ, ଯେ ଏପରି ଘଟଣା ଘଟିବାର ସମ୍ବାଦ ଆମେ ପାଉଛୁଁ । ପୂର୍ବକାଳରେ ଏପରି ଯେତେ ଯାହା ଘଟୁଥିଲା ତା ସମ୍ବାଦ ଚାରିଆଡ଼େ ବ୍ୟାପୁନଥିଲା, ଏବେ ସମ୍ବାଦ ବ୍ୟାପିଯିବା ଲାଗି ନାନା ଉପାୟ ହେଲାଣି, କେଉଁଠି ଟିକିଏ କିଛି ହେଲେ ସଙ୍ଗେ ସଙ୍ଗେ ଚାରିଆଡ଼େ ପ୍ରଚାର ହୋଇଯାଉଛି । ଖବରକାଗଜମାନେ ଏଇଆକୁ ବଡ଼ ବଡ଼ ଅକ୍ଷରରେ ଛାପନ୍ତି, ପଢ଼ିଲେ ଲାଗିବ ଦେଶରେ ଏପରି କାଁ ଭାଁ ଘଟଣା ଘଟୁଛି ତା ନୁହେଁ, ଚାରିଆଡ଼େ ଏଇ ଭୟାବହ ଘଟଣା । ତା ନୁହେଁ । ଏତେ ବଡ଼ ଦେଶ, ଦେଶ ନୁହେଁ ଯେ ମହାଦେଶ, ତହିଁରେ କୋଟି କୋଟି ଲୋକ ଚଳନ୍ତି, କେଉଁଠି ନା କେଉଁଠି କିଛି ବିଗିଡ଼େ କିଛି ହିଂସା ତ ହେବହିଁ । ଲୋକଙ୍କ ନିଦ ଭାଙ୍ଗିଛି, ଡ଼ର ଭାଙ୍ଗିଛି, ସାହସ ଓ ଆଶା ବଢ଼ିଛି, ଯେ କେବେ କିଛି ପାଉ ନଥିଲେ ସେ କହୁଛନ୍ତି ରାତିକା ରାତି ଆମର ସବୁ ଦରକାର, ତାଙ୍କର ପେଟ ଭୋକ ମୁହଁ ଲାଜ ନାହିଁ, ବାଛ ବିଚାର ନାହିଁ, ତର ସହୁନାହିଁ । ଏମାନେ ଆଗ ପରି ମୁର୍ଦ୍ଦାରିଆ ନୁହଁନ୍ତି, ଏମାନେ ଜୀଅନ୍ତା, ବଳୁଆ, ଅଣଉପରୋଧୀ । ଏପରି କୋଟି କୋଟି ଲୋକ ଠେଲାପେଲା ହେଲେ ହେବତ ଟିକିଏ ବିଶୃଙ୍ଖଳା । ଅଭ୍ୟାସ ପଡ଼ିଗଲେ ତା'ରି ଭିତରେ ଲୋକେ ନିରୁଦ୍‌ବେଗ ହୋଇ ଚଳିଶିଖିବେ ।

ବିଜୁଳି ଶକ୍ତି, କଳକାରଖାନା, ଯାନବାହାନ, ଶିଳ୍ପ ବାଣିଜ୍ୟର ତରତର ଯନ୍ତ୍ରଯୁଗ ଯେ, ଯେ ନୂଆ ସଭ୍ୟତା, ଏଇତ ଆମ୍ଭକୁ ସେଡ଼େତକୁ ଏତେ ଉପରକୁ ଉଠେଇବାରେ ଲାଗିଛି । କିନ୍ତୁ କେଉଁଥିରେ ବିପଦ ନଥାଏ ? ଭିନେଭିନେ ପ୍ରକାର ପ୍ରକାର ବ୍ୟବସ୍ଥାରେ ତାର ଅଲଗା ଅଲଗା ବିପଦର ବି କିଛି ଆଶଙ୍କା ଥାଏ । ବିଜୁଳିରେ ଶକ୍ ଲାଗିପାରେ । ରେଳ ମଟରରେ ଦୁର୍ଘଟଣା ଘଟିପାରେ, ଯନ୍ତ୍ରପାତି ସଙ୍ଗେ କାମ କରୁ କରୁ କେତେବେଳେ କଣ ଘଟିପାରେ । ସେଥିପାଇଁ ଛାନିଆ ହୋଇ କ'ଣ ଯାଇ ପାହାଡ଼ ଗୁମ୍ଫାରେ ରହିବା, ବଣରୁ ଫଳମୂଳ ଗୋଟେଇ ଚଳିବା ? ସେଠିବି କେଉଁ ବିପଦ କମ୍

ନା କତରା ଘୋରିହେଲେ ଯମ ଛାଡ଼ିବ ? ତା ନୁହେଁ, ଧୈର୍ଯ୍ୟ ଦରକାର, ସମୟ ଦରକାର, ଏ ନୂଆ ପରିସ୍ଥିତିରେ କେମିତି ଚଳିଲେ ନିରାପଦରେ ସବୁ ହେବ ବଳେ ସେ ବାଗ ଆୟତ୍ତ ହେବ, ଅଧୀର ହେଲେ ଚଳିବ ନାହିଁ ।

"ଅପେକ୍ଷା କର ଦେଖିବ । ବିଶ୍ୱାସ ରଖ ।"

ହେଲା । ଉଠେଁ ଏଥର । ଯାଏଁ ।

ମୁଁ-ମୁଁ-ମୁଁ-ମୁଁ ।

ବୟସ ଅଣଚାଳିଶି । ଦେହରେ ପୂରା ବଳ, ପୂରା ସ୍ୱାସ୍ଥ୍ୟ, ତଥାପି ଅଭିଜ୍ଞ ବିଶେଷଜ୍ଞ ଡ଼ାକ୍ତରମାନେ ଆସି ମଝିରେ ମଝିରେ ଦେଖିଯାଆନ୍ତି, ଆହୁରି ଭଲ ଲାଗି ପରାମର୍ଶ ଦିଅନ୍ତି । ଏମିତି ଚାଲିଯିବ ଆହୁରି ଚାଳିଶି ବର୍ଷ, ଆହୁରି ବଢ଼ତି ହୋଇଥିବ କାହିଁକା କାହିଁ । ଏବେ ବି କାହିଁରେ କଣ । ସବୁ ବଢ଼ିଯାଉଛି । ହାତ ଛୁଆଁଇ ଦେଲେ ସବୁ ସୁନା । ଟିପ ଛୁଆଁଇ ଦେଲେ ଯେ କୌଣସି କବାଟ ଖୋଲିଯାଏ । ପୁଅମାନଙ୍କ କପାଳ, ଝିଅମାନଙ୍କ କପାଳ ବି ସେହିପରି ।

ଯେ' ଆତ୍ମବିଶ୍ୱାସରେ ନିଦା ପାହୁଣ୍ଡ ପକାଇ ପକାଇ ଦଧି ସାହୁ ଆଟାଚି ବାକ୍ସଟି ହାତରେ ଧରି କବାଟ ଆଡ଼କୁ ଚାଲିଲେ । ତାପରେ ସିଧା ନଯାଇ ହଠାତ୍ ବାଁହାତି ବାଥ୍ରୁମ୍ ଭିତରେ ପଶିଯାଇ ମୁହଁଧୁଆ କୁଣ୍ଡ ଉପରେ ଓ ତା ଦୁଇ କରରେ ସଜା ହୋଇ ମରା ହୋଇଥିବା ବଡ଼ ବଡ଼ ଆଇନା ଆଡ଼କୁ ଅନାଇଲେ । ସାମ୍ନାରେ ଗୋଟିଏ ଦଧି ସାହୁ ସତ; କିନ୍ତୁ ଦି କରର ସମାନ୍ତରାଳ ଆଇନା ଯୋଡ଼ିକରେ ଅସଂଖ୍ୟ ଦଧି ସାହୁ । କଳା ଦେହକୁ ବାସି ଧୋବ ଲୁଗା, ପଞ୍ଜାବୀ, ଚଦ୍ଦର ଭଲ ମାନୁଛି । ଯେଉଁଠି ଯେ ମନ ସେ ପିନ୍ଧିଲେଣି ପ୍ୟାଣ୍ଟ, ହାଓ୍ୱାଇନ୍- କାରଣ ଲୁଗା ପଞ୍ଜାବୀଠୁ ସେ ଶସ୍ତା; ବେଶୀ ଦିନ ଯାଏ, ସେଠି ଏ ଦେଶର ମର୍ଯ୍ୟାଦା ଜାଣିବା ଲୋକେ ବୁଝନ୍ତି- ସେ ଭାବିନେଲେ । ତାଙ୍କର ଗୋଲଗାଲ ଦେହକୁ ଯେ' ମାନେବି ଭଲ । ତଅାତଅ ହୋଇ ବଡ଼ ଓ ଚେକା ମୁହଁ, ଓସାର ଫ୍ରେମ୍‌ର ଚଷମା ଉହାଡ଼ରୁ ସାନ ସାନ ଗୋଲ୍‌ଗାଲ୍ ଛଡ଼ାଛଡ଼ା ଆଖି ସତେକି ଦପ୍‌ଦପ୍ ଜଳୁଛି । ଥୋମଣି ପଟେ ଟିକିଏ କଠୋରତା, ମେଞ୍ଚାଏ ଉଞ୍ଚ, ମୁଣ୍ଡାଗେଣ୍ଡାନାକ, କପାଳ ଉପରୁ ବାଳ ଉପୁଡ଼ି ଯାଇ ମୁଣ୍ଡବାଳର ଧଡ଼ି ଖଣ୍ଡେ ବାଟ ପଛକୁ ହଟିଯାଇଥିବାରୁ ମେଲା ଫରଚା ଦିଶୁଥିବା କପାଳ, ଦୁଇକାନ ଉପରେ ବାଳରେ ଅରାଏ ଲେଖାଏଁ ରୂପା ପାଣି, ସବୁ ମିଶି ମୁହଁଟିକୁ ଶକ୍ତି, ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦାର ଭଙ୍ଗୀ ଦେଉଛି, ଏଇ ମୁହଁ ଅପରକୁ ଦବାଏ, ଡ଼ରାଏ, ପୁଣି ଆକର୍ଷଣ କରେ- ସେ ହସି ଦେଲେ- ଠିକ୍ ଏଇ ହସ, ଏଇ ଠାଣି- ଭାବିଲେ, ଏଇ ପୁଣି ବିନୟର ଅବତାର- ସଙ୍ଗେ ସଙ୍ଗେ ବେକକୁ ଅଳ୍ପ ଢ଼ଳେଇ ଦେଇ ଦର୍‌ହଫୁଟା ସ୍ମିତ ହସଟିଏ ଓଠଟି ପିନ୍ଧି ତାଙ୍କ ଆଡ଼କୁ ଅନାଇ ରହିଲେ ଅନେକ ଦଧି ସାହୁ- ଅସଂଖ୍ୟ ଲୋକଙ୍କ ବିଶ୍ୱାସ ଉପୁଯାଏ ଏଇ ମୁହଁଟି । ସେଠୁ ବାହାରି ଆସିଲେ । କବାଟ ଖୋଲିଲେ । ଚାବିକୁ ପାକେଟ୍‌ରେ ରଖିଲେ । ଆଠ ମାହାଲାର ଗଦି ପଡ଼ିଥିବା ଆଲୁଅ ଦାଉ ଦାଉ ଚଲାବାଟରେ ଗୋଟିଏ ଗୋଟିଏ ହୋଇ ଚାଲିଲେ ଲିଫ୍‌ଟ ପାଖକୁ । ବୋତାମ ଚିପିଲେ, ପିଞ୍ଜରାଘର ପରି ଲିଫ୍‌ଟ ବଖରାଟି ତଳ ମାହାଲାରୁ ଉଠି ଆସି ତାଙ୍କ ସାମ୍ନାରେ ଅଟକିଲା । ସେ ଭିତରେ ପଶିଲେ । ପୁଣି ଯୋଡ଼ିଏ ବୋତାମ ଚିପିଲେ । ଆପେ ଆପେ ଲିଫ୍‌ଟର କବାଟ ବନ୍ଦ ହେଲା । ଲିଫ୍‌ଟ ତଳକୁ ଚାଲିଲା ।

ଛୋଟ ହେଲେ ବି ସେଇଟି ନିବୁଜ ବଖରାଟିଏ, ଚାରିଆଡ଼ୁ ବନ୍ଦ, ଉପର, ତଳ, ଚାରିକର । ଆଲୁଅ ଜଳୁଛି । ମଣିଷ କିଲିବିଲି ହାଉଯାଉ ମହାନଗରୀ ଭିତରେ ଏମିତି ନିବୁଜ ବଖୁରି ଭିତରେ ଦାମୀ ଲୋକେ ଚଳପ୍ରଚଳ ହୁଅନ୍ତି, ଯେମିତି ନିଜେ ସେମାନେ ନ ଚାହିଁଲେ ଆଉ କେହି ତାଙ୍କ ପାଖ ପଶି ପାରିବେ ନାହିଁ, ତାଙ୍କ ଚିନ୍ତା ତାଙ୍କ ସ୍ୱତନ୍ତ୍ରତାକୁ ବ୍ୟାଘାତ କରିପାରିବେ ନାହିଁ । ତଳେ ଅପେକ୍ଷା କରି ରହିଛି ତାଙ୍କ ପାଇଁ କାର୍, ଶୀତ-ତାପ-ନିୟନ୍ତ୍ରିତ ବଡ଼ ଗାଡ଼ି, ଚାରିଆଡ଼ୁ ବନ୍ଦ, କବାଟ ଖୋଲିବ, ସେ ପଶିବେ, କବାଟ ବନ୍ଦ ହେବ, ଗାଡ଼ି ଚାଲିବ । ଗାଡ଼ି ପହଞ୍ଚିବ ଗନ୍ତବ୍ୟ ସ୍ଥାନରେ । କବାଟ ଫିଟିବ । ପାଛୋଟି ନେବାକୁ ଲୋକ ଜଗିଥିବେ । ପୁଣି ଲିଫ୍‌ଟ ପୁଣି ବୋତାମ ଚିପା, ସଟ୍ କରି ଲିଫ୍‌ଟ ଉଠିଯିବ, ଅଟକିବ, ସେ ବାହାରିବେ । ଆଉ କେତେ ପାହୁଣ୍ଡ ଗଲେ ସେ ଭିତରେ ପଶିବେ । କବାଟ ବନ୍ଦ ହେବ । ହେଇ ଆଇଲେ, ଆଇଲେ । ନମସ୍କାର । ନମସ୍କାର । କାନ୍ଥରେ ବଡ଼ ଚିହ୍ନା ଛବି । ଆଲୋଚନା ଆରମ୍ଭ ହେବ । ତାଙ୍କ ତୁଣ୍ଡରୁ ପଦେ ପଦେ କଥା । ସେଇତ' କେଡ଼େ ଜରୁରୀ କେଡ଼େ ମୂଲ୍ୟବାନ । ସେମାନେ ପରସ୍ପରଙ୍କୁ ଅନୁପ୍ରାଣିତ କରିବେ, ପରସ୍ପରଙ୍କ ବିଶ୍ୱାସ ବଢ଼ାଇବେ । ସବୁ ଜଳଜଳ ଦିଶିଯାଉଛି ଯାହା ଯାହା ହେବ । ଲିଫ୍‌ଟ ତଳକୁ ଚାଲିଛି ।

ହଠାତ୍ ଆଲୁଅ ଲିଭିଗଲା । ଲିଫ୍‌ଟ ଆଉ ତଳକୁ ଖସିଲା ନାହିଁ, ଉପରକୁ ବି ଉଠିଲା ନାହିଁ । ସେହି ଅନ୍ଧାରରେ ସେ ହାତରେ ଅଣ୍ଡାଳି ଅଣ୍ଡାଳି ସବୁ ବୋତାମ ଚିପିଲେ । କିଛି ହେଲା ନାହିଁ । କବାଟକୁ ପ୍ରାଣପଣେ ଓଟାରିଲେ । କିଛି ହେଲା ନାହିଁ । କବାଟରେ ବାଡ଼େଇଲେ । କିଛି ହେଲା ନାହିଁ । ପାଟି କଲେ, ରଡ଼ିଲେ, ସବୁ ବଳ ଖର୍ଚ୍ଚ କରି ଦୁମ୍‌ଦାମ୍ ବାଡ଼େଇ ଲାଗିଲେ । କିଛି ହେଲା ନାହିଁ । କପାଳରୁ ଦେହରୁ ଝାଳ ଫିଟିଗଲା । ରୁମାଲ୍ ଅଛି ଭୁଲିଯାଇ ଚାଦରରେ ପୋଛିଲେ । ଝାଳ ଅଟକିଲା ନାହିଁ । ଛାନିଆଁ ଘୋଟିଲା । ମୁଣ୍ଡ ବୁଲେଇଲା । ଛାତି ଥରିଲା । ଟଳି ଟଳି ନଥିକିନା ବସି ପଡ଼ି ଧକେଇ ହେଲେ । ପାଟି ଅଠା ଅଠା ହୋଇଗଲା ।

"କଣ ହେଲା ? କଣ ହେଲା ? କେମିତି ମୁଁ ଉଦ୍ଧାର ପାଇବି ? ନା ଅନ୍ଧାରି ଯନ୍ତା ଭିତରେ ଏଇଠି ମୋର ଶେଷ ! କେହି ଜାଣିବେ ନାହିଁ, କେହି ଆସିବେ ନାହିଁ, ଏଇଠି ପଡ଼ି ମୁଁ ମରିଯିବି ! ଏଇ କଣ ସତେ ମୃତ୍ୟୁ ଆସିଗଲା ? ନା ଭାଙ୍ଗିପଡ଼ି ଦୁମ୍‌କିନା ଲିଫ୍‌ଟଟା ତଳେ ପଡ଼ିବ ଆଉ ତା ଭିତରେ ଛିଟ୍‌କି ଛିଟ୍‌କି ପଟି ହୋଇ ଗୁଣ୍ଡା ହୋଇ ଯନ୍ତ୍ରଣାରେ ମୋର ପ୍ରାଣ ଯିବ ? ଓଃ କେଡ଼େ ଭୟଙ୍କର !"

"ମରନ୍ତି ତ ! କେତେ ପ୍ରକାରେ ନାନା ଦୁର୍ଘଟଣାରେ ଲୋକେ ପଟୋ ପଟୋ ମରିଯାଆନ୍ତି । ରାସ୍ତାରେ ଆକ୍‌ସିଡ଼େଣ୍ଟ, ରେଳ ଆକ୍‌ସିଡ଼େଣ୍ଟ, ଉଡ଼ାଜାହାଜ ଆକ୍‌ସିଡ଼େଣ୍ଟ, କାରଖାନାରେ, ଖଣିରେ, ଘରେ, ବାହାରେ,- ଓଃ ! କି ସେସବୁ ଦୃଶ୍ୟ ! ଖବରକାଗଜରେ ତାର ଛବି ! ଭଲା ଏ ଯନ୍ତ୍ରଯୁଗ ! ଭଲା ଏ ଚଳଣି, ଏ ସଭ୍ୟତା ! କାହିଁ ସ୍ଥିରତା ! ଶାନ୍ତି ! ନିରାପତ୍ତା ! ଜୀବନର ନିଶ୍ଚିତତା !"

"ତାହେଲେ ସତରେ କଣ ଏଇ ଶେଷ ! ମୃତ୍ୟୁ ଆସିଗଲା ! ଏ ଅନ୍ଧାର ! ଏ ନିର୍ଜନତା !"

"ଭଗବାନ ! ଯେତେ ଦେବାଦେବୀ ! ସାଧୁ ମହାତ୍ମା ! କିଏ କୋଉଠି ଅଛ ? ରକ୍ଷାକର, ରକ୍ଷାକର, ଦୟାକର, ଉଦ୍ଧାର କର ।"

"କୁଆଡ଼େ ରହିଲ ସୁଲକ୍ଷଣା ! ତୁମେ ବୋଧହୁଏ ବସି ବସି ବଡ଼ି ପାରୁଥିବ, ସେଇ

ଘରକରଣା କାମହିଁ ତ ତୁମର ପ୍ରଧାନ ସଉକ । ଆଉ ତୁମ ହାତର ପାନ ଖଣ୍ଡେ ଖାଇବାକୁ ଯୋଗ ନାହିଁ । ଆଉ ପିଲାଟି ମାନେରେ । ଗୋଟି ଗୋଟି ହୋଇ ମୁହଁ ଦିଶିଯାଉଛି । ମୋ ପୁଅମାନେ, ବୋହୂମାନେ, ଝିଅମାନେ, ଜ୍ୱାଇଁମାନେ, ନାତିନାତୁଣୀ ପାଞ୍ଚୋଟି, ତୁମେ କେଉଁଠି ଅଛରେ !''

ତରତର ହୋଇ ମୁଣ୍ଡ ଭିତରେ ଅତୀତର ସବୁ ସ୍ନେହ ବନ୍ଧନର ଦୃଶ୍ୟ ଚହଲି ଯାଉଛି, ଖେଳିଯାଉଛି, ଗୋଳମାଳ ହୋଇ ଗୋଳି ହୋଇଯାଉଛି ।

''ମୁଁଟା କେହି ନୁହେଁ, କିଛି ନୁହେଁ, ଛାର ଦୁର୍ବଳ ମଣିଷଟାଏ, କେଉଁ ଗାଈର ଗୋବରରେ ଲେଖା ମୁଁ । ପୋକଟାଏ, ମାଛିଟାଏ । ମତେ ସେମିତି ହେଲେ ବଞ୍ଚିବାକୁ ଦିଅ ଭଗବାନ, ମୁଁ ଆଉ କିଛି ଲୋଡ଼ୁ ନାହିଁ ।''

କେରାକେରା ଲୁହ ବୋହି ଯାଉଥାଏ ।

ତାପରେ, କେତେବେଳେ- ସବୁ ଚୁପ୍ ।

ସେମାନେ ତାଙ୍କୁ ଉଦ୍ଧାର କଲାବେଳକୁ ଘଣ୍ଟାଏ ବିତିଯାଇଥାଏ, ସେତେବେଳେ ସେ ଅଚେତ ହୋଇ ତଳେ ପଡ଼ିଥାନ୍ତି । ଉଦ୍ଧାର କାର୍ଯ୍ୟ ଆଦୌ ସହଜ ହୋଇନଥିଲା, ଅଖଞ୍ଜ ଯନ୍ତ୍ରକୁ ନାନା ବୁଦ୍ଧି କୌଶଳ ଖଟାଇ ଏକପ୍ରକାର ଆସ୍ତେ ଆସ୍ତେ ଢ଼ିଲିଢ଼ିଲି ନାନା ନିରାପଦ ବ୍ୟବସ୍ଥା ଆୟୋଜନ କରି ଖୁବ୍ ଧୀରେ ଧୀରେ ଲିଫ୍‌ଟଟାକୁ ସବାତଳକୁ ଓହ୍ଲାଇ ତା ପରେ ନାନା ଠୁକ୍‌ଠାକ୍ ମୋଡ଼ାମୋଡ଼ି କରି କବାଟଟାକୁ ଖୋଲି ତାଙ୍କୁ ବାହାର କରାଗଲା । ଡ଼ାକ୍ତର ଓ ଶୁଶ୍ରୂଷାକାରୀମାନେ ଅପେକ୍ଷା କରି ରହିଥିଲେ ।

ଦଧି ସାହୁଙ୍କର ଚେତା ଫେରିଲାକ୍ଷଣି ସେ ପ୍ରଥମ ବାକ୍ୟ କହିଲେ, ''ମୁଁ ଘରକୁ ଯିବି ।''

ତାଙ୍କର ଫଟୋ ଉଠୁଥାଏ । କେତେଜଣ ସମ୍ବାଦଦାତା ଖାତା ପେନ୍‌ସିଲ ଧରି ଠିଆ ହୋଇଥାନ୍ତି । ଜଣେ ପଚାରିଲେ, ''ଆପଣ କିଛି ବିବୃତି ଦିଅନ୍ତୁ ।''

ଦଧି ସାହୁ ତାଙ୍କ ମୁହଁକୁ ଅନାଇ ରହିଲେ ।

''ମୁଁ ଘରକୁ ଯିବି ।''

# ଲେଖକଙ୍କ ସମ୍ପର୍କରେ

ଗୋପୀନାଥ ମହାନ୍ତି (1914-91) କଟକ ଜିଲ୍ଲାର ନାଗବାଲି ଗାଆଁରେ 20 ଏପ୍ରିଲ 1914 ରେ ଜନ୍ମଗ୍ରହଣ କରିଥିଲେ । ପାଟଣା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ 1936 ମସିହାରେ ଏମ୍.ଏ. ପାଶ୍ କରି 1938ରେ ଓଡ଼ିଶା ଆଡ୍‌ମିନିଷ୍ଟ୍ରେଟିଭ୍ ସର୍ଭିସ୍‌ରେ ଯୋଗ ଦେଇଥିଲେ । ଚାକିରୀ ଜୀବନରେ ଆଦିବାସୀ-ଅଧ୍ୟୁଷିତ କୋରାପୁଟ ଜିଲ୍ଲାରେ ସେ ଦୀର୍ଘଦିନ କାର୍ଯ୍ୟ କରିଥିଲେ ଏବଂ ଆଦିବାସୀ ଜୀବନ ଧାରା ସହିତ ଅନ୍ତରଙ୍ଗ ଓ ଗଭୀର ସମ୍ପର୍କରେ ଆସିପାରିଥିଲେ । ଏହି ଅନୁଭୂତି ପରବର୍ତ୍ତୀ କାଳରେ ତାଙ୍କର ସୁପ୍ରସିଦ୍ଧ ଉପନ୍ୟାସ ପରଜା, ଅମୃତର ସନ୍ତାନ ଓ ଦାଦିବୁଢ଼ା ରେ ପ୍ରତିଫଳିତ ହୋଇଥିଲା । ହରିଜନ (1948), ଦାନାପାଣି (1955) ଓ ଲୟବିଲୟ (1961) ତାଙ୍କର ଆଉ ତିନୋଟି ପ୍ରସିଦ୍ଧ ଉପନ୍ୟାସ ।

ଗୋପୀନାଥ ଫକୀରମୋହନ ସେନାପତି (1843-1918)ଙ୍କ ପରେ ଓଡ଼ିଆର ସର୍ବଶ୍ରେଷ୍ଠ ଔପନ୍ୟାସିକ । ସେ ଓ ତାଙ୍କ ବଡ଼ଭାଇ ଶ୍ରୀ କାହ୍ନୁଚରଣ ମହାନ୍ତି ପ୍ରାୟ ତିରିଶ ବର୍ଷକାଳ ଆଧୁନିକ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ପ୍ରଭାବ ବିସ୍ତାର କରି ଯୁବଲେଖକମାନଙ୍କୁ ପ୍ରଭାବିତ କରିଥିଲେ । ତାଙ୍କର ପ୍ରଥମ ପ୍ରକାଶିତ ଉପନ୍ୟାସ ଥିଲା 'ମନ ଗହୀରର ଚାଷ' (1940) । ପରେ ପରେ 'ଦାଦିବୁଢ଼ା' (1944), 'ପରଜା' (1945) ଓ 'ଅମୃତର ସନ୍ତାନ' (1947) ପ୍ରକାଶ ପାଇଥିଲା । 'ଅମୃତର ସନ୍ତାନ' 1955ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା । 1974 ମସିହାରେ ତାଙ୍କର ଉପନ୍ୟାସ 'ମାଟିମଟାଳ' (1964) ଭାରତୀୟ ଜ୍ଞାନପୀଠ ପୁରସ୍କାର ପାଇଲା । ଗର୍କିଙ୍କ 'My Universities'ର ଓଡ଼ିଆ ଅନୁବାଦ ପାଇଁ ସେ 1970ରେ ସୋଭିଏତ୍ ଦେଶ ନେହେରୁ ପୁରସ୍କାର ପାଇଥିଲେ ।

ଗୋପୀନାଥଙ୍କ କ୍ଷୁଦ୍ରଗଳ୍ପ ଓଡ଼ିଆ ଆଧୁନିକ ସାହିତ୍ୟର ଅମୂଲ୍ୟ ସମ୍ପଦ । 24ଟି ଉପନ୍ୟାସ ସମେତ ତାଙ୍କର 10ଟି ଗଳ୍ପ ସଂକଳନ ପ୍ରକାଶିତ । ତା' ବ୍ୟତୀତ ଦୁଇଟି ଜୀବନ-ବୃତ୍ତାନ୍ତ, ଗୋଟିଏ କବିତା ପୁସ୍ତକ, ଗୋଟିଏ ନାଟକ, ଦୁଇଟି ପ୍ରବନ୍ଧ ସଂକଳନ ଏବଂ କନ୍ଧ, ଗଦବା ଓ ସଓରା ଆଦିବାସୀ ଶିକ୍ଷା ପାଇଁ 5ଟି ଭାଷା-ପୁସ୍ତକର ମଧ୍ୟ ସେ ରଚୟିତା । ଟଲଷ୍ଟୟଙ୍କ 'ଯୁଦ୍ଧ ଓ ଶାନ୍ତି' ଓ ରବିନ୍ଦ୍ରନାଥଙ୍କ 'ଯୋଗାଯୋଗ' ତାଙ୍କଦ୍ୱାରା କୃତ ଅନ୍ୟ ଦୁଇଟି ଉଲ୍ଲେଖଯୋଗ୍ୟ ଅନୁବାଦ । ତାଙ୍କ ଅସମାପ୍ତ ଆତ୍ମଜୀବନୀ 'ସ୍ରୋତସ୍ୱତୀ'ର ପ୍ରଥମ ଭାଗ ମୃତ୍ୟୁପରେ ପ୍ରକାଶିତ । ଏହା ବ୍ୟତୀତ ସେ 1976 ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡ଼ି.ଲିଟ୍. ସମ୍ମାନ ଏବଂ 1981ରେ ପଦ୍ମଭୂଷଣ ଉପାଧି ପାଇଥିଲେ ।

ଓଡ଼ିଶାର ଗ୍ରାମ୍ୟଜୀବନର ଅଭୁଲା ଛନ୍ଦ, ଆଦିବାସୀ ଓ ଅନ୍ୟ ନିଷ୍ପେଷିତବର୍ଗଙ୍କ ଜୀବନର ନିଖୁଣ ଛବି ତାଙ୍କ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ଶକ୍ତିର ଉତ୍ସ । ତାଙ୍କ ଭାଷା ଅନେକତ୍ର କାବ୍ୟଭାଷା, ଯେଉଁଥିରେ ସାଧାରଣ ମଣିଷଙ୍କ କଥିତ ଭାଷାର ବ୍ୟବହାର ମଧ୍ୟ ଉଲ୍ଲେଖନୀୟ ।

---

Laser typeset at Subhadra Mudrani, Puri and printed at
Gayatri Offset works, Noida.